# ଅଗତିର ଗତି

ବିନୋଦ ରାଉତରାୟ



ଓଡ଼ିଶା ବୁକ୍ ଷ୍ଟୋର

# ଅଗତିର ଗତି


ଲେଖକ :

**ବିନୋଦ ରାଉତରାୟ**

ପ୍ରକାଶକ :

ଶ୍ରୀ ଗୋବର୍ଦ୍ଧନ ଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରଥମ ପ୍ରକାଶ—୧୯୯୨

ମୁଦ୍ରଣ :

**ତାକତ୍ ପବ୍ଲିକେଶନ,** ସୂର୍ଯ୍ୟବିହାର,
ଲିଙ୍କ୍ ରୋଡ଼, କଟକ-୭୫୩ ୦୧୨

ମୂଲ୍ୟ-ସାଧାରଣ—ଷୋଳ ଟଙ୍କା
ଶୋଭନ—କୋଡ଼ିଏ ଟଙ୍କା

**AGATIRA GATI**

*Written by*
**Binod Routray**

*Published by*
**Sri G. C. Patra**
ORISSA BOOK STORE
Binod Behari, Cuttack-753 002

*First Edition—1992*

*Printed at*
**Takat Publication,** Surya Vihar,
Link Road, Cuttack-753 012

Price : Rs. 20.00

# ସୂଚୀ

# କଳ୍ପନା ପୁରୁଷ

"ନିରନ୍ନ ମଣିଷର ପ୍ରାଣଧାରଣ ନିମନ୍ତେ ଅପ୍ରାଣ ଉଦ୍ୟମର ଚିରସ୍ଥାୟୀ ବିଭୀଷିକା-ମୟ ଛବି ଯଦି କେଉଁଠି ଦେଖିବାକୁ ମିଳେ, ତେବେ ତାହା ହେଉଛି ବର୍ତ୍ତମାନର ସରକାରୀ ଓ ବେସରକାରୀ ଦପ୍ତରଗୁଡ଼ିକ । ପ୍ରତି ନଗରୀ ଓ ମହାନଗରୀ ରାଜପଥରେ ବହିର୍ଗତ ଶହ ଶହ ଯୁବକଶ୍ରେଣୀ ବେକାର ମଣିଷର ଯେଉଁ ଚୂଡ଼ାନ୍ତ ବ୍ୟାକୁଳତା, ତାହା ଯେକୌଣସି ଜଳଖିଆ ଦୋକାନର କାଚଭଙ୍ଗା ଆଲମାରୀ ଆଡ଼ରେ ସଜ୍ଜିତ ରସଗୋଲା କଡ଼େଇ ଭିତରେ ଲୋଭାତୁର ମାଛିଦଳର ଉତ୍କଟ ପଟୁଆରଠାରୁ ନ୍ୟୂନ ନୁହେଁ । ମାସଶେଷରେ କେତୋଟି ଟଙ୍କା ପାଇବା ପାଇଁ ଯେଉଁ ଉଦଗ୍ର ବାସନା, ତାହା ବ୍ୟାକୁଳ ମଣିଷକୁ ଯେଉଁପରି ଭାବରେ ଗ୍ଲାନି, ଅପମାନ, ଅବସାଦ ମଧ୍ୟରେ ଘାଣ୍ଟି-ଚକଟି ଦେଉଛି ଓ ସେଥିପାଇଁ ଯେଉଁ ଶୋଚନୀୟ ପରିବେଶ ଓ ପରିସ୍ଥିତି ସୃଷ୍ଟି କରୁଛି; ତାହା ଗୋଟିଏ ଶବ୍ଦରେ ପ୍ରକାଶ କଲେ ହେବ 'ନାରକୀୟ' କିମ୍ବା କବି କଳ୍ପନା ଓ ପୁରାଣ ବର୍ଣ୍ଣିତ ନରକ ବୋଧହୁଏ ଏତେଦୂର ନାରକୀୟ ହୋଇ ନ ଥିବ ।

ଏହି ଯୁବକମାନଙ୍କର ଧୈର୍ଯ୍ୟ ଓ ପ୍ରାଣଶକ୍ତିର ପ୍ରଶଂସା କରିବାକୁ ବେଳେ-ବେଳେ ମନ ହୁଏ । ଦୁର୍ନୀତି, ସାମାଜିକ ଅନ୍ୟାୟ ଓ ରାଜନୀତିକ ସୁବିଧାବାଦର ବାର-ମ୍ବାର ଶିକାର ହୋଇ ମଧ୍ୟ ସେମାନେ ଚୂଡ଼ାନ୍ତ ରୂପେ ସ୍ୱୈରିସ୍ୱସ ହୋଇପାରୁ ନାହାନ୍ତି କିମ୍ବା ଜୁଆଖେଳ, ଠକେଇ, ହତାଶା ଓ ବିଷଣ୍ଣତାରେ ଭାଙ୍ଗିପଡ଼ୁ ନାହାନ୍ତି । ସମସ୍ତ ପ୍ରକାର ପ୍ରତିକୂଳ ପରିସ୍ଥିତି ସେମାନଙ୍କୁ କେବେହେଲେ ଉଦ୍ୟମ ରହିତ କରାଇ ପାରି-ନାହିଁ । ସେମାନେ ପ୍ରଚଣ୍ଡ ଉତ୍ସାହୀ । ସାଙ୍ଘାତିକ ଭାବରେ ଆଶାବାଦୀ"—ଏତିକି କହି-ବନ୍ଧୁ ବନବିହାରୀ ନୀରବ ହେଲେ ।

ଏତେବଡ଼ ଦୀର୍ଘ ଶୌର ଚନ୍ଦ୍ରିକାର ପୃଷ୍ଠପଟରେ କ'ଣ ଅଛି, ଯାହାକି ବନ୍ଧୁ ବନବିହାରୀଙ୍କର ଅନ୍ତରକୁ ଜ୍ୱାଳା-ଯନ୍ତ୍ରଣାରେ ଅସ୍ଥିର କରି ପକାଉଛି—ସେ ସମ୍ବନ୍ଧରେ ଅଣୁମାତ୍ର କଳନା କରି ପାରିଲି ନାହିଁ । ବରଂ ଅତ୍ୟନ୍ତ ବେକୁବ୍ ଭଳି ଅନାଇ ରହିଲି ତାଙ୍କ ମୁହଁକୁ । କେବଳ କହିଲେ—"ଯେଉଁଠି ଉତ୍ସାହ ନାହିଁ, ଆଶା ନାହିଁ, ସେଠାରେ ଭବିଷ୍ୟତ ନାହିଁ, ସେଠାରେ ଜୀବନ ନାହିଁ ।"

ସଙ୍ଗେ ସଙ୍ଗେ ସେ ବିସ୍ଫୋରଣ କରି ଉଠିଲେ—"ଏହାକୁ କଣ କହନ୍ତି ଜୀବନ ? ଏହା କଣ ଆମର ଭବିଷ୍ୟତ ? ତେବେ ଶୁଣନ୍ତୁ !"

ଏଥର ସେ ଶାନ୍ତ ଭାବରେ ସ୍ପଷ୍ଟ ବ୍ୟାଖ୍ୟା ଆରମ୍ଭ କରିଦେଲେ—

"ପ୍ରତିଷ୍ଠିତ ଡାକ୍ତର ବିପୁଳ କେଶରୀଙ୍କ ଖ୍ୟାତି ବହୁ ମୁହଁରେ ପ୍ରକୀର୍ତ୍ତିତ ଓ ପ୍ରସାରିତ । ତାଙ୍କ ନିକଟକୁ ଯାଇଥିଲେ ନାତି ନିମନ୍ତେ ଗୋଟିଏ ଉପଯୁକ୍ତ ବ୍ୟବସ୍ଥାପତ୍ର ଆଣିବା ପାଇଁ । ନାତିର ପେଟରେ ପ୍ରଚୁର କୃମି, ଶୁଖିଲା ହାଡ଼ ଗଣି ହୋଇଯାଉଛି, ପେଟଟି ଏଣ୍ଡୁଲିଆ ହୋଇ ବାହାରି ପଡ଼ୁଛି, ଆଖି ଦୁଇଟି ଶେତାଳିଆ, ଗୋଡ଼ହାତ ସରୁସରୁ । ବ୍ୟବସ୍ଥାପତ୍ର ସୁରୁଖୁରୁରେ ମିଳିଗଲା; କିନ୍ତୁ ସେଠାରେ ସେ ଦେଖିଲେ ତାଙ୍କ ପରିଚିତ ସ୍ୱନାମଧନ୍ୟ ସାହୁକାର ନାରାୟଣଙ୍କୁ ଓ ତାଙ୍କ ସହିତ ସ୍ଥାନୀୟ ତହସିଲ ଅଫିସ୍‌ର ପିଅନ ଗୋଲଖାକୁ । ଗୋଲଖା ଓ ନାରାୟଣବାବୁ ଡାକ୍ତରଙ୍କ ରୋଗୀମାନେ ବସୁଥିବା ବେଞ୍ଚ୍‌ର ଖଣ୍ଡେ ଦୂରରେ ବସିଥାନ୍ତି । ବନବିହାରୀବାବୁଙ୍କୁ ଦେଖୁ ଦେଖୁ କଳା ମୁରୁ ମୁରୁ ନାରାୟଣ ମହାଜନେ ବେଞ୍ଚ ଉପରୁ ଉଠି ଆସିଲେ ପାଖକୁ । ହାତର ବିଡ଼ିଟା ସଙ୍ଗେ ସଙ୍ଗେ ରାସ୍ତା ଉପରକୁ ଫିଙ୍ଗିଦେଇ ଅମାୟିକ ହସରୁ ଚେନାଏ ବୁଣିଦେଲେ ଈଷତ ଅନ୍ଧକାର ମଧ୍ୟରେ । ଅନ୍ଧକାରର ଅଦ୍ଭୁତ କ୍ଷମତା ଅଛି ବୈଷମ୍ୟ ଦୂର କରିଦେଲ ଭଳି । ଗୋଲଖାର ମୁହଁରେ ଉତ୍କଣ୍ଠାର କଳାଛାୟା ।

ଖବର ନେବାରେ ଜଣାଗଲା ଯେ ଗୋଲଖା ଗୋଟିଏ ଡାକ୍ତର ସାର୍ଟିଫିକେଟ ଯୋଗାଡ଼ରେ ଆସିଛି । ତାହାରି ବଳରେ ସେ ଚାକିରିରୁ ଅବସର ଗ୍ରହଣ କରିପାରିବ । ଗୋଲଖାର ଆଉ ଚାକିରିକାଳ ଅଛି ମାତ୍ର ଆଠମାସ । ଏହି ଆଠମାସ ପୂର୍ବରୁ ସେ ଯଦି ସ୍ୱାସ୍ଥ୍ୟଗତ କାରଣ ଦର୍ଶାଇ ଅବସର ଗ୍ରହଣ କରେ, ତେବେ ତାର ନିକଟତମ ଆତ୍ମୀୟଙ୍କୁ ସୁରୁଖୁରୁରେ ତାରି ଚାକିରିଟି ମିଳି ପାରିବ । ଗୋଲଖା ସହିତ ନାରାୟଣ ମହାଜନେ ଆସିଛନ୍ତି ସୁବିଧାରେ ସୁପାରିସ କରି ଡାକ୍ତରବାବୁଙ୍କ ଠାରୁ ସାର୍ଟିଫିକେଟ ଖଣ୍ଡେ ଯୋଗାଡ଼ କରାଇ ଦେବା ପାଇଁ ।

ଖୁବ୍ ଭଲ ଭାବରେ ନାରାୟଣ ମହାଜନଙ୍କୁ ସେ ଜାଣନ୍ତି । ମହା ଧୁରନ୍ଧର ବ୍ୟକ୍ତି, ଶୁଖିଲାରେ ବାଳିଆ ପିଟି ପାରିବେ । ଏହି ଶ୍ରେଷ୍ଠ ସହରର ତଳିଆ କର୍ମଚାରୀମାନେ ଅଶିକ୍ଷିତ, ଧୂର୍ତ୍ତ, ଚତୁର, ବିବେକ-ବର୍ଜିତ ଓ ନୀତିଜ୍ଞାନହୀନ ନାରାୟଣବାବୁଙ୍କ ସିରସ୍ତାରେ ବନ୍ଧା । ସକାଳେ ଓ ସନ୍ଧ୍ୟାରେ ପିମ୍ପୁଡ଼ି ଧାର ଭଳି ଚାକିରିଆମାନେ ଧାଉଡ଼ି ଲଗାଇଥାନ୍ତି ମହାଜନଙ୍କ ଦାଣ୍ଡକୁ । ବଡ଼ ବଡ଼ ବାବୁ ମାନଙ୍କ ପାଦ ବେଳେବେଳେ ଯେ ନ ପଡ଼େ, ସେ କଥା କୁହାଯାଇ ପାରିବ ନାହିଁ । ସମସ୍ତଙ୍କର ସବୁବେଳେ ଅଭାବ ଲାଗି-ରହିଛି । ଏହା ଯେମିତି ନିୟମସିଦ୍ଧ । ମହାଜନେ ସମସ୍ତଙ୍କ ଅଭିଳାଷ ପୂର୍ଣ୍ଣ କରନ୍ତି, ଫଳେ ପୁଣି ସମସ୍ତଙ୍କୁ ସନ୍ତୁଷ୍ଟ କରନ୍ତି । ହାତ ଚିଠା ନେଇ, ଟିପଚିହ୍ନ ଦେଇ ସମସ୍ତେ

କରଜ କରନ୍ତି ଗୁଜୁରାଣ ମେଣ୍ଟାଇବା ପାଇଁ । ମହାଜନଙ୍କ କାରବାରରେ ମଧ୍ୟ ମଳାଧିକ୍ୟ ନ ଥାଏ । ଯିଏ ଶହେଟଙ୍କା କରଜ କରେ, ତାହାକୁ ଧରାଇ ଦିଅନ୍ତି ନବେଟଙ୍କା । କାଟି ରଖନ୍ତି ଦଶ, ସେହି ମାସର ସୁଧବାବଦକୁ । ଏହି ଅନୁପାତରେ ଯିଏ ହଜାରେ ଟଙ୍କା କରଜ କରେ, ତା'ର ହାତକୁ ଆସେ ମାତ୍ର ନଅ ଶହ ।

ମାସ ଶେଷକୁ ମହାଜନଙ୍କ ଚଠା ଯାଇ ପହଞ୍ଚିଯାଏ ଅଫିସ୍‌ର ବଡ଼ବାବୁଙ୍କ ଟେବୁଲ୍ ଉପରେ । ମହାଜନଙ୍କ ଭଳି ସେ ମଧ୍ୟ ସମାନ ଧୂର୍ତ୍ତ ଓ ସମାନ ବିଚକ୍ଷଣ । ପୁରା ଟଙ୍କାର ସମୁଦାୟଟା କରାଇ ନେଇ ତାହାପରେ ଆବଶ୍ୟକ ମୁତାବକ ମହାଜନଙ୍କ ସୁଧ ବାବଦ ଟଙ୍କାଟା କାଟିରଖି ଅବଶିଷ୍ଟାଂଶ ଧରାଇ ଦିଅନ୍ତି କର୍ମଚାରୀମାନଙ୍କୁ । ପାଟି ଫିଟାଇ ପ୍ରତିବାଦ କରିବାର ସୁ' ନ ଥାଏ । କାରଣ ସମସ୍ତଙ୍କ କାମ ହୋଇଛି ଦୋଷପୂର୍ଣ୍ଣ ଓ ଛିଦ୍ରମୟ । ସେସବୁକୁ ବଡ଼ବାବୁ ଆପଣାର ପାଞ୍ଚଳ ପଣିଆ ଦ୍ୱାରା ଘୋଡ଼ାଇ ରଖି-ଥା'ନ୍ତି । ଜଣଜଣଙ୍କର ଏହି ସୁଧର ମାତ୍ରା ଏତେ ଅଧିକ ହୋଇଯାଏ ଯେ ସେମାନେ ମୂଳ ପ୍ରାପ୍ୟର ଅର୍ଦ୍ଧେକ ସୁଦ୍ଧା ପାଆନ୍ତି ନାହିଁ । ଖସ୍‌ଖସିଆ ନୂଆନୋଟର ଗଣାଗଣି ଗୀତ ଗୋଟାଏ ଶକ୍ତିଶାଳୀ ଯନ୍ତ୍ର ଯନ୍ତ୍ର ପରି । ଏତେ ଟିକେ ହେଲେ କେଉଁଠି ଭୁଲ ହୁଏ-ନାହିଁ କି ମିନିଟିଏ ବି ବଡ଼ବାବୁଙ୍କର ହାତ ଅଟକି ଯାଏନାହିଁ । ସେ ମୁହୂର୍ତ୍ତେ ସୁଦ୍ଧା ଇତଃ-ସ୍ତତ ହୁଅନ୍ତି ନାହିଁ । ପ୍ରକୃତ ଅର୍ଥରେ ଏକ ଜଟିଳ ରାଜ୍ୟ । ବାହାର ପ୍ରକୃତିର ସ୍ଥାନ ସେଠାରେ ଅନର୍ଥର ହେତୁ !

ଦରମା ପତ୍ର ଦିଆ ନିଆ ଶେଷ ହେଲେ ଖୋଦ ବଡ଼ବାବୁ ଫାଇଲର ପାହାଡ଼ର ମଧ୍ୟରୁ ମୁଣ୍ଡ ଉଠାନ୍ତି । ନାରାୟଣ ମହାଜନଙ୍କ ଘିରସ୍ତାକୁ ଯାଇଁ ଗୋଟି ଗୋଟି କଡ଼ା କଡ଼ା କରି ବୁଝାଇ ଦେଇ ଆସନ୍ତି । ସେଦିନ ସେଠାରେ ତାହାଙ୍କୁ କପେ ଚାହା ଓ ଜଳଖିଆ ଉପୂର ମିଳିଯାଏ । ସେଥି ସହିତ ଟିକେ ନୂଆ ଧରଣର ଆଦର ଅଭ୍ୟର୍ଥନା ବି ମିଳେ । ଆଉ ମିଳେ ଅଧା ହସ ମିଶା ମିଠା କର୍ଣ୍ଣଲ କଥା ଦପଦ । କୃତ୍ୟ କୃତ୍ୟ ହୋଇଯାନ୍ତି ସେ । ମହାଜନଙ୍କ ସୁଖ୍ୟାତି ବଢ଼େ, ଗରାଖ ବଢ଼ନ୍ତି । ଆବଶ୍ୟକ ସମୟରେ ବଡ଼ବାବୁ ଯାହା ଧାର କରଜ କରିଥାନ୍ତି, ସେଥିପାଇଁ କୌଣସିପ୍ରକାର ସୁଧ ଦେବାକୁ ପଡ଼େନାହିଁ । ଏହା ହେଲା ସାଧାରଣତଃ ମାମୁଲି କଥା ।

ବଡ଼ବାବୁ ହେଉଛନ୍ତି ନାରାୟଣ ମହାଜନଙ୍କର ଦୁର୍ନୀତି ଓ ଅବୈଧ ଶୋଷଣର ଏଜେଣ୍ଟ୍ ଭଳି । ଏହି ଦଲାଲ୍ କର୍ମରେ ସେମାନଙ୍କର ଅସରନ୍ତି ପ୍ରତିଷ୍ଠା । ଯେ କୌଣସି ନୂତନ କର୍ମଚାରୀକୁ ସୁବିଧା ସୁଯୋଗ ଭର୍ତ୍ତି ଅନୁଶାସନ ନିୟନ୍ତ୍ରିତ ପରିବେଶର ସୀମା-ବଦ୍ଧତା ମଧ୍ୟରେ ଏହି ବଡ଼ବାବୁ ହିଁ ନିଜର ଅକ୍ତିୟାରକୁ ଆଣନ୍ତି ଓ ତାହାପରେ କୌଣସି ଏକ ଦୁର୍ବଳ ମୁହୂର୍ତ୍ତରେ ନେଇ ମହାଜନଙ୍କ ଘିରସ୍ତାରେ ପହଞ୍ଚାଇ ଦିଅନ୍ତି । ଶେଷକୁ ଏପରି ପରିସ୍ଥିତି ହୋଇଯାଏ ଯେ, କର୍ମଚାରୀ ଜଣକ ବାଧ୍ୟ ହୋଇ ନିଜର ରକ୍ତଟିକି

ବର୍ଦ୍ଧି କର ଦେଇ ସତ୍ତା ଉପରକୁ ଓହ୍ଲାଇ ପଡ଼େ ମୂର୍ତ୍ତିମନ୍ତ ଅଭିଶାପ ଭଳି । ଶୋଷଣ ଇତିହାସର ବର୍ତ୍ତ ପରିଚୟ ଯେଉଁମାନଙ୍କର ହୋଇଛି, ସେମାନଙ୍କର କଷ୍ଟସ୍ମ ମହା-ଜନଙ୍କ ଭଳି ବ୍ୟକ୍ତିଙ୍କ ସହିତ ପରିଚୟ ଘଟିଥିବ ଏକାଧିକବାର । ଝାଳ ଓ ଲହୁ ବହିବାଠାରୁ ଦାରିଦ୍ର୍ୟର କଷାଘାତ ମଧ୍ୟରେ ନିଦାରୁଣ ବଞ୍ଚନା ହେଉଛି ଅଧିକ ଭୟଙ୍କର । ଆଧୁନିକ ପୃଥିବୀରେ ବ୍ୟବହାସ୍ତି ଓ ଆଚିସିକ କୂଟ କୌଶଳ ଅନେକ ସୃଷ୍ଟ ।

ସ୍ଥାନୀୟ ତହସିଲଦାର ଅଫିସ୍‌ର ସାହାଚରେ ଗୋଲଖା ହେଉଛି ଖଣ୍ଡେ ଜଣା-ଶୁଣା ପଥର । ସେ ସ୍କୁଲର ବନ୍ଧୀ ଯୋଜନାରେ ଏବେ ସଂଯୁକ୍ତ ହୋଇ ପଡ଼ିଛି । କ୍ଷୀଣ-ସ୍ୱାସ୍ଥ୍ୟ, ଗ୍ରୁପଚକଣିଆ ଗୋଲଖା ଯେତେବେଳେ ସରକାରୀ ସ୍କୁଲରେ ଯୋଗ ଦେଇଥିଲି, ସେତେବେଳେ କେତେକେତେ କଳ୍ପନାର କୁସୁମ ତୋଳୁଥିଲି । ତାହା ଥିଲି ସ୍ୱାଧୀନତାର ପ୍ରାକ୍‌କାଳ । ପ୍ରଥମ ପଞ୍ଚବାର୍ଷିକ ଯୋଜନା ଶେଷ ହୋଇ ଦ୍ୱିତୀୟ ପଞ୍ଚ-ବାର୍ଷିକ ଯୋଜନାର ଆରମ୍ଭ ମାତ୍ର ହେଉଥାଏ । ଭୁବନେଶ୍ୱରଠାରେ ନୂଆ ରାଜ-ଧାନୀର କାମ ଯୋର ସୋରରେ ଆଗେଇ ଚାଲିଥାଏ । କଟକ ଭୂଇଁରୁ ପୂର୍ବ-ମାଳାରେ ଉଠିଯାଇ ନ ଥାଏ ସେକ୍ରେଟାରିଏଟ୍ । ଅମାନବିକଭାବେ କର୍ମଚାରୀମାନଙ୍କୁ ଅମର୍ଯ୍ୟାଦା ପୂର୍ଣ୍ଣ ଆଚରଣ ପ୍ରଦର୍ଶନ କରିବାକୁ କେହି ସାହସ କରି ପାରୁ ନ ଥାନ୍ତି । ଦୁର୍ବଳ ପ୍ରତି ପ୍ରବଳର ଅତ୍ୟାଚାର ଇଂରେଜ ଅମଳରେ ଯାହା ଥିଲା, ତାହା ଯଥେଷ୍ଟ ପରି-ମାଣରେ ଊଣା ପଡ଼ିଯାଇଥାଏ । ମନେ ହେଉଥାଏ, ନୂଆକରି ଏ ଦେଶ ଗଠିତ ହେବ; ଆଲୁଅ ଆସିଲେ ଅନ୍ଧାର ଲୁଚିଗଲା ପରି ସମସ୍ତ ପ୍ରକାର ଅନ୍ୟାୟ, ଅତ୍ୟାଚାର, ଶୋଷଣ, ତୋଷଣ, ଲାଞ୍ଛନା, ବଞ୍ଚନା, ବ୍ୟର୍ଥତା, ବିଷଣ୍ଣତା, ଠକେଇ, ଜୁଆଚୋରି ଲୁଚିଯିବ ।

ସୁବିଧାଭୋଗୀ ଉଚ୍ଚଶ୍ରେଣୀୟ କର୍ମଚାରୀଗଣ ନାନାଭାବରେ ନାନା ଉପାୟରେ ଅଧସ୍ତନମାନଙ୍କୁ ନିର୍ଯ୍ୟାତିତ କରିବା ପାଇଁ ସେଯାଏ ନୂଆନୂଆ କୌଶଳ ଉଦ୍‌ଭାବନ କରି ନ ଥାନ୍ତି କହିଲେ ଚଳେ । ମାତ୍ର ଦଶବର୍ଷ ମଧ୍ୟରେ ସମୁଦାୟ ଦେଶର ଜନ ସାଧାରଣ ଭୁଲିଗଲେ ସେମାନଙ୍କର ସାମାଜିକ ଭୂମିକା, ସାହସର ଲକ୍ଷ୍ୟ ଓ ଉଦ୍ୟୋଗ ସମ୍ବନ୍ଧରେ । ଗାନ୍ଧୀ ଓ ଗାନ୍ଧିବାଦ ପ୍ରତି ଯେଉଁମାନେ ବିଶ୍ୱସ୍ତ ଥିଲେ, ସେହି ନେତାମାନେ ଧୀରେଧୀରେ ସେମାନଙ୍କର ସମସ୍ତପ୍ରକାର ଆନୁଗତ୍ୟ ପାଶୋରି ପକାଇଲେ । ସଂସଦୀୟ ଗଣତାନ୍ତ୍ରିକ ବିଧି-ବ୍ୟବସ୍ଥାକୁ ଏପରି ବିପଦଜନକ ଭାବରେ ଅବକ୍ଷୟ ଦିଗକୁ ମୁହାଁଇ ନେବାକୁ ଚାହିଁଲେ, ଯାହା ଜନସାଧାରଣଙ୍କ ସାର୍ବଭୌମ କ୍ଷମତାର ଅଭିବ୍ୟକ୍ତିଠାରୁ ଦୂରରେ । କାଗଜ ଓ କଲମ ହାତରେ ଥିବାରୁ ବାକ୍‌ଚାତୁର୍ଯ୍ୟ ଓ ବୁଦ୍ଧିଦୀପ୍ତ ସଫେଇରେ ଦକ୍ଷତା ଫୁଟିଲା । ବିଶ୍ୱରନାଥ ଓ ଧର୍ମର ମର୍ମବାଣୀକୁ ଭୁଲିଗଲା ପାଦ୍ରୀ, ମୁଲ୍ଲା, ସନ୍ଥ-ସନ୍ୟାସୀ ମାନଙ୍କର ବାମ କମ୍ପା ପ୍ରତିକ୍ରିୟାଶୀଳତା । ସେମାନଙ୍କର ଅବତ୍ତିମାନରେ ଯେଉଁମାନେ ବର୍ତ୍ତମାନ

କାଳର ନେତା, ମନ୍ତ୍ରୀ, ବିଧାୟକ ହୋଇଗଲେ; ଦେଶର ସ୍ୱାଧୀନତା ଆନ୍ଦୋଳନ ସହିତ ସେମାନଙ୍କର ସମ୍ପର୍କ ପରିଚୟ ସୁଦ୍ଧା ନ ଥିଲା । ସେହି ଗଜମାଠକ ଠିକାଦାରମାନେ ଯେତେବେଳେ ଆତ୍ମସର୍ବସ୍ୱ ହୋଇ ପଡ଼ିଲେ, ସେତେବେଳେ ସେଠାରୁ ବଡ଼ ସରକାରୀ ଓ ବେସରକାରୀ ସଂସ୍ଥାର କର୍ମଚାରୀମାନେ ନୀତିହୀନ ହୋଇଯିବା ସ୍ୱାଭାବିକ ।

ଗୋଲଖା ଏ ସବୁ ନିଜ ଆଖିରେ ଦେଖିଛି, ମର୍ମେ ମର୍ମେ ଅନୁଭବ କରିଛି । ଖାଇଲାବାଲା ଲୋକେ ଖାଉଛନ୍ତି, ଦେବାଲୋକେ ଦେଇ ଚାଲିଛନ୍ତି । ଯିଏ ଦେଇ ପାରୁନି କି ଦିଆଇ ପାରୁନି, ଖାଇପାରୁନି କି ଖୁଆଇ ପାରୁନି; ସେ ପଡ଼ିରହୁଛି ପଛରେ । ସମସ୍ୟା ସଂକୁଳ ଦାରିଦ୍ର୍ୟର ସୈନ୍ଧବର ଦ୍ୱାରା ନିଗୃହୀତ ଗୋଲଖା ଭଳି ବହୁ ବ୍ୟକ୍ତି, ବହୁ ନିମ୍ନକର୍ମଚାରୀ ଅନୁଭବ କରି ପାରୁଛନ୍ତି ଇଂରେଜ ଅମଳର ଅମଲାତନ୍ତ୍ର ଓ ଅଫିସ ତନ୍ତ୍ର ନିର୍ଦ୍ଦିଷ୍ଟ ସେଣ୍ଟିମେଣ୍ଟ ଧାରାବାହିକଭାବେ ପେଷଣ, ଶୋଷଣ, ପୀଡ଼ନର ସହସ୍ରବାହୁ ବିସ୍ତାର କରିବାରୁ ଲାଗିଛି; ଯାହା ବଳରେ ଶୁଭ ପ୍ରଚେଷ୍ଟା ଗୁଡ଼ିକ ମଧ୍ୟ ବ୍ୟର୍ଥ ହୋଇଯାଉଛି । ସ୍ଥୂଳଭାବରେ ସୁଦ୍ଧା ଆଜି ଏହାର ମୂଳୋତ୍ପାଟନ କରିବା ଅସମ୍ଭବ । ବିଦେଶୀ ଶୃଙ୍ଖଳା ଭାଙ୍ଗି ପଡ଼ିଲା ପରେ ବି ଏହି ଦୁଇକୋଡ଼ି ବର୍ଷ ମଧ୍ୟରେ ପୁନର୍ବାର ହାତଦୁଇଟି ଶୃଙ୍ଖଳବଦ୍ଧ । କୋର୍ଟ-କଚେରୀ, ଅଫିସ୍-ଅଦାଲତ, କଳ-କାରଖାନାର କର୍ମଚାରୀ ଓ ଶ୍ରମଜୀବୀମାନେ ସଙ୍ଗଠିତ ହୋଇ ପାରିଛନ୍ତି । ସେମାନଙ୍କର ତଳଠାରୁ ଉପରପାହ୍ୟା ପର୍ଯ୍ୟନ୍ତ ସଂଘ ଗଢ଼ା ହୋଇ ଦଳୀୟ ଉପାୟରେ ଦାବୀମାନ ଉପସ୍ଥାପିତ କରାଯାଉଛି । ସହାନୁଭୂତିର ସହିତ ତାହା ବିଚାରକୁ ମଧ୍ୟ ନିଆଯାଇଛି । ଦରମା, ଭତ୍ତା, ଘରଭଡ଼ା, ସ୍ୱାସ୍ଥ୍ୟସେବା ଓ ଶିକ୍ଷା ନିମନ୍ତେ ବହୁବିଧ ଉନ୍ନତିକର ଯୋଜନା କାର୍ଯ୍ୟକାରୀ ହୋଇଛି । ତଥାପି ଦାରିଦ୍ର୍ୟ, ସ୍ୱାସ୍ଥ୍ୟହୀନତା, ଶିକ୍ଷାହୀନତା ଓ ଗୃହହୀନତା ବଢ଼ି ବଢ଼ି ଚାଲିଛି । ଖେଳ କସରତ, ସାହିତ୍ୟଚର୍ଚ୍ଚା, ମନୋରଞ୍ଜନ ତାମସା ପାଇଁ କ୍ଲବ୍ ଘରଠାରୁ ଆରମ୍ଭ କରି ବିବିଧ ଆୟୋଜନ [illegible] ସାହାଯ୍ୟର ବ୍ୟବସ୍ଥା ରହିଛି । କିନ୍ତୁ ସବୁରି ଭିତରେ ସାଂସ୍କୃତିକ ଦଲାଲ [illegible] ହାଡ଼ାବେପାରୀମାନେ ମାଲକଛା ମାରି ଗଦାଯୁଦ୍ଧ କରିବାରେ ଧୁରନ୍ଧର [illegible] ଆକାଶକୁଆଁ । ଏହା ଯେପରି ସ୍ୱଭାବରେ ଘଟୁଛି ତାହାଠାରୁ ଅଧିକ [illegible] ଭାବରେ ଦେଖାଦେଉଛି ଜିନିଷ ପତ୍ରର ଭେଜାଲ କାରବାର । ଏପରିକି ଆଜିକାଲି [illegible] ତାନ୍ତ୍ରିକ ପରିବେଶ ମଧ୍ୟରେ ସ୍ନେହ, ପ୍ରେମ, ସମ୍ମାନ, ବିଶ୍ୱସ୍ତତା, ସହାନୁଭୂତି ଆଦି ମାନବିକ ଗୁଣଗୁଡ଼ିକ ସୁଦ୍ଧା ଭେଜାଲ ଧରିଗଲାଣି । ଦୁଇଶହ ବର୍ଷର ପରାଧୀନତାର [illegible] ପାଞ୍ଚଶହ ବର୍ଷରେ ଘୁଞ୍ଚିବ କି ନାହିଁ ସନ୍ଦେହ ।

ଚାକିରିରେ ଗୋଲଖାର ଯେ ଉନ୍ନତି ନ ହୋଇଛି, ତାହା ନୁହେଁ । [illegible] ପ୍ରୟୋଜନ ଓ ସାମର୍ଥ୍ୟ ଅନୁଯାୟୀ ସେ ପିଅନରୁ ହୋଇଛି ଅଫିସ୍ ପିଅନ [illegible] ପିଅନରୁ ହୋଇଛି ଦପ୍ତରୀ । ସେହି ଅନୁସାରେ ଅନୁରାଗୀ, ଅନୁସାରୀ, ବନ୍ଧୁ, ସହକର୍ମୀ-

ମାନଙ୍କ ପ୍ରାଦୁର୍ଭାବର ଶିକାର ହୋଇଛନ୍ତି । ଟୋପେ ଟୋପେ ନିଶାପାଣି ଅଭ୍ୟାସ କରୁ କରୁ ବର୍ତ୍ତମାନ ସମ୍ପୂର୍ଣ୍ଣ ନିଶାଖୋର ପାଲଟି ଯାଇଛନ୍ତି । ଛାଡ଼ିବାକୁ ଚାହିଁଲେ ମଧ୍ୟ ଛାଡ଼ିପାରୁନାହିଁ । ନିଶାପାଣି ନ କଲେ ଗୁଡ଼ ଭିତରେ ହୁଲୁସ୍ଥୁଲୁ ପଡ଼ିଯାଉଛି । ମୁଣ୍ଡ ଭିତରେ ଘଣ୍ଟାଘଣ୍ଟାର ଧ୍ୱନି ଶୁଣାଯାଉଛି, କାନ ଝାଁ ଝାଁ କରୁଛି, ଘରଦ୍ୱାର ଘୂରିଲା ପରିଲା ଭଳି ମନେ ହେଉଛି । ପାଗଳ ବୟସ ହେବା ସଙ୍ଗେ ସଙ୍ଗେ ନିଶାଟା ବି ପାଗଳ ଧରିଗଲାଣି ।

ରୋଗ, ଶୋକ, ଯନ୍ତ୍ରଣା, ଆତଙ୍କ, ଅନାଟନ ଓ ନିରାପତ୍ତାର ଅଭାବବୋଧରେ ସନ୍ତୁଳ ହୋଇ ଅକାଳରେ ଓ ଅବେଳରେ ବାଧ୍ୟ ହୋଇ ଗୋଲଖାର ସ୍ତ୍ରୀ ବିଦାୟ ନେଇଛନ୍ତି । କେବଳ ବିଦାୟ ନେଇନାହିଁ ତ ନିଗ୍ରହରୁ ଉଦ୍ଧାର ପାଇ ଯାଇଛନ୍ତି । ନଚେତ ନିଜର ଇଚ୍ଛା ବିରୁଦ୍ଧରେ ମାତାଲ ସ୍ୱାମୀର ବନ୍ଧୁମାନଙ୍କ ମନ ନେବା ପାଇଁ ସୁଲଭ ଓ ସହଜଲଭ୍ୟ ଭାବେ ଜନପଦ ବଧୂ ହେବାକୁ ବାଧ୍ୟ ହୋଇଥାନ୍ତା କିମ୍ବା ସ୍ୱାମୀକୁ ପିଅନରୁ ଦପ୍ତରୀ କରାଇବା ପାଇଁ ହୃଦୟହୀନ ନିଷ୍ଠୁର ଅବିବେକୀ ପ୍ରଭୁର ଉପପତ୍ନୀର ଦାୟିତ୍ୱ ବହନ କରିବା ପାଇଁ ଗାଡ଼ି ଚଢ଼ି ନନ୍ଦନ କାନନ କିମ୍ବା କୌଣସି ଏକ ଦୂରବର୍ତ୍ତୀ ପାନ୍ଥଶାଳା ହୋଟେଲକୁ ନିଆଯାଇଥାନ୍ତା । ପରିବେଶ ଓ ପରିସ୍ଥିତି ହିଁ ତାହାକୁ କରାଇଥାନ୍ତା ନୃଶଂସତାର ଶିକାର । ଉପରକୁ ପାହାଚ ପରେ ପାହାଚ ହୋଇ ଉଠିବାକୁ ହେଲେ ପଣ୍ୟ କରାଯାଏ ପତ୍ନୀ କିମ୍ବା କନ୍ୟାକୁ । ଜଘନ୍ୟ ! ଅତି ଜଘନ୍ୟ !!

ଝିଅଟିଏ ହୋଇଥିଲା । ମାମୁଁ ତାକୁ ନେଇ ଯାଇଥିଲେ ଯେ ଆଉ ଛାଡ଼ିଲେ ନାହିଁ । କାହିଁକି ଛାଡ଼ିଥାନ୍ତେ ? ବାପଟା କେଉଁ ମଣିଷ ହୋଇ ରହିଛି ଯେ ଝିଅକଥା ବୁଝିବ ? ବରଂ ବାରଦ୍ୱାର ଶୁଣ୍ଡୀପିଣ୍ଡା ହୋଇ, ସ୍ଥା ଘରେ ତା ଘରେ ଜୁଆ ଖାଖେଇ, ବାସନ ମାଜି ଶେଷକୁ ଛକରରେ ପଶିଥାନ୍ତା । ଯୋଗକୁ ମାମୁଁ ମାଇଁଙ୍କ ହେପାଜତରେ ରହି ବଢ଼ିଯାଉଛି । ଗୋଲଖା ଯେ ସେଥିପ୍ରତି ନଜର ଦେଇନାହିଁ, ତାହା ନୁହେଁ । କିନ୍ତୁ ସେ ସେଠାରେ ଦାନ୍ତ ଗଳାଇ ପାରି ନାହିଁ କି ପାରିବ ନାହିଁ । ସବୁକଥା ଯିମିତି ସିନେମା ପର୍ଦ୍ଦାର ଛବି ଭଳି ଗୋଟିକ ପରେ ଗୋଟିଏ ମନେ ପଡ଼ିଯାଏ । ଏହି ମନେ ପଡ଼ିବା ମଧ୍ୟରେ ଯେତିକି ସୁଖ, ସେତିକି ଜ୍ୱାଳା !

ବର୍ତ୍ତମାନ ଗୋଲଖାର ମଦ ହେଉଛି ଗଙ୍ଗାଜଳ । ସେ କେବଳ ସେଥିରୁ ମୁନ୍ଦାଏ ପିଏନାହିଁ, ସମ୍ପୂର୍ଣ୍ଣ ସେଥିରେ ସ୍ନାନ କରେ କହିଲେ அତ୍ୟୁକ୍ତି ହେବନାହିଁ । ପ୍ରଥମେ ମଣିଷ ଖୁସିରେ, ଟିକେ ଫୁର୍ତ୍ତି ପାଇଁ, ଟିକେ ଆମୋଦ ପାଇଁ, ଟିକେ ପ୍ରମୋଦ ପାଇଁ ସକାରଣରେ ହେଉ ବା ଅକାରଣରେ ହେଉ ଟୋପାଏ ଟୋପାଏ ନିଶାପାଣି କରିଥାଏ । ତାହାପରେ ଦିନେ ଦେଖାଯାଏ ମଦ ଓ ମଣିଷ ରହିଛନ୍ତି ଆସି ଗୋଟିଏ ସ୍ତରରେ । ଶେଷକୁ ମଦ ଗ୍ରାସ କରିଯାଏ ମଣିଷକୁ ଓ ସେ ପାଲଟି ଯାଏ ତାର କ୍ରୀଡ଼ନକ । ଗୋଲଖା

ହୋଉଛି ସେହି କ୍ରୀଡ଼ନକମାନଙ୍କ ମଧ୍ୟରୁ ଗୋଟିଏ । ମୁହଁର ହନୁହାଡ଼ ଦୁଇଟା ସୁସ୍ପଷ୍ଟ, ମୁଣ୍ଡର ବାଳ ଅନେକ ପରିମାଣରେ ଧଳା । ବଡ଼ ବଡ଼ ଆଖି ଦୁଇଟା ମଲ୍ଲମାଛର ଆଖି ଭଳି ଶେତାଳିଆ, ଅଭିବ୍ୟକ୍ତିହୀନ । ଗଜଭୁକ୍ତ କପିତ୍ଥ ଭଳି ସମଗ୍ର ଭିତରଟା ଫମ୍ପା ହୋଇଯାଇଛି କୁଅଭ୍ୟାସର କବଳରେ । ମଦପାଣି ତାର ହୃତ୍‌ପିଣ୍ଡ, ଅନ୍ତ୍ରନଳୀ, ପାକସ୍ଥଳୀ, କଲିଜା ସବୁକୁ ଚପୁଡ଼ି ଦେଇ କରିଛି ପେଡ଼ାହୋଇ ଫୋପାଡ଼ି ଦିଆଯାଇଥିବା ଅଙ୍ଗୁର ଛେଦା ଭଳି ।

ଆଜି ତାର ବିଦ୍ୟା ନାହିଁ, ବୁଦ୍ଧି ନାହିଁ, ବିବେକ ନାହିଁ, ସ୍ୱାସ୍ଥ୍ୟ ନାହିଁ, ଚରିତ୍ର ନାହିଁ, ସଂସାର ନାହିଁ, କିଛି ନାହିଁ । ସବୁପ୍ରକାର ନାସ୍ତିର ଅନ୍ଧକାର ମଧ୍ୟରେ ମଦ ହିଁ ହେଉଛି ଏକମାତ୍ର ଆଲୋକର ବିନ୍ଦୁ । ସେହି ଆଲୋକ ବିନ୍ଦୁ ଭିତରେ ସ୍ପଷ୍ଟ ଫୁଟିଉଠେ ନାରାୟଣ ମହାଜନଙ୍କ ମୁହଁ । ମହାଜନେ ହେଉଛନ୍ତି ହର୍ତ୍ତାକର୍ତ୍ତା ଭାଗ୍ୟବିଧାତା । ସେହି ମହାଜନେ ତାକୁ ଧରି ଆଣିଛନ୍ତି ଡାକ୍ତରବାବୁଙ୍କ ନିକଟକୁ କି ସେ ମହାଜନଙ୍କର ଗୋଡ଼ହାତ ଧରି ଆଣିଛି, ତାହା ଜାଣିବା ଦୁଷ୍କର ।

ପାଞ୍ଚହଜାର ଟଙ୍କା ପାଇଁ ଡାକ୍ତର ବିପୁଳ କେଶରୀ ପ୍ରଥମେ କଟାଳ କରିଥିଲେ । ଏହା ଏକ ଦୁର୍ଲ୍ଲଭ ସୁଯୋଗ । ହାତଛଡ଼ା କରିବା ଉଚିତ ନୁହେଁ । ବେହିସ୍ତାଙ୍କ ଭଳି ଡାକ୍ତରବାବୁଙ୍କର ସବୁ ପ୍ରକାର କଟାଳକୁ ହଜମ କରିଥିଲା ଗୋଲଖା । ସତେ ଯିମିତି ଶୀତକାଳର ସାପଟିଏ । ନାରାୟଣ ମହାଜନଙ୍କ ମଧ୍ୟସ୍ଥିରେ ତାହା ଛିଡ଼ିଛି ତିନି ହଜାର ଟଙ୍କାରେ । ତିନିହଜାର ଟଙ୍କା ଗଣିଦେଇ ମହାଜନେ ଗୋଲଖାକୁ କରାଇ ଦେବେ ସାର୍ଟିଫିକେଟ ଖଣ୍ଡିକ । ଗୋଲଖାଠାରୁ ପୋଲିସ କାଗଜରେ ସନ୍ତକ କରାଇ ରଖାଯାଇଛି ବଡ଼ବାବୁଙ୍କ ଉପସ୍ଥିତିରେ । ଡାକ୍ତରଙ୍କ ସାର୍ଟିଫିକେଟଟା ପଇଠ କରି ସେ ଚାକିରିରୁ ପାଇବ ଅବ୍ୟାହତି । ନିଜ ଗାଆଁକୁ ଫେରିଯିବ । ସେଠାରେ ଯାହା ଜମିବାଡ଼ି ଅଛି, ତାହାକୁ କାମୁଡ଼ି ଧରି କଟାଇ ଦେବ ଅବଶିଷ୍ଟ ଜୀବନ । ସ୍ଥାୟୀ ଚାକିରି । ଏଣୁ ପେନ୍‌ସନ ଗଣ୍ଡାଏ ଯାହା ମିଳିବ, ତାହା ହିସାବ ଖର୍ଚ୍ଚ କରି କଷ୍ଟେ ମଷ୍ଟେ ଗୁଜରାଣ ମେଣ୍ଟାଇ ନେବ । ଶକ୍ତତାର ନୈରାଶ୍ୟ ମଧ୍ୟରେ ମାତ୍ର କ୍ଷୀଣ ଆଶାର ସଞ୍ଚାର ଘଟି ପାରୁଛି । ମେଘ-ଅନ୍ଧାର ରାତିରେ ବାଟବଣା ପଥିକ ପାଇଁ ଯେପରି କ୍ଷୀଣ ବିଦ୍ୟୁତ୍‌ର ସ୍ଫୁରଣ କୂଳ କିନାରର ସୂଚନା ଦେଇଥାଏ; ସେହିପରି ତଣ୍ଟିଚିପା, ଗଣ୍ଠିକଟା ସଂସାରରେ ଏହି ସମାଧାନର ସୂତ୍ର ଗୋଲଖା ପାଇଁ ଅନେକ କିଛି । ମନ ଭିତରର ଆଶା-ଉଦ୍‌ବେଗ ଓ ଉତ୍ସାହ ତାହାକୁ କାର୍ଯ୍ୟବ୍ୟସ୍ତ ରଖିଛି ।

ଗୋଲଖାର ଯେଉଁ ଅର୍ଜିତ ଛୁଟି ରହିଛି, ଯେଉଁ ଭବିଷ୍ୟ ନିଧି ରହିଛି, ଗ୍ରାଚ୍ୟୁଇଟି ବାବଦରେ ଯାହା ମିଳିବ, ସେ ସବୁକୁ କଡ଼ାକଡ଼ା କରି ହିସାବ କରିଛନ୍ତି ଖୋଦ ବଡ଼-ବାବୁ । ତାଙ୍କ ପାଉଣା, ଅଫିସରଙ୍କ ମାମୁଲି ଓ ଟ୍ରେଜେରୀ ବାବୁଙ୍କ ପାନଖିଆ ଆଦି

ଦେଇଦେଲା ପରେ ଯାହା ରହିବ ସେ ଶିବ ନାରାୟଣ ମହାଜନଙ୍କ ସିରସ୍ତାକୁ ସିଧା-ସଳଖ । ଡାକ୍ତରଙ୍କ ପାଉଣା ତିନିହଜାର, ସେଥିରେ ସୁଧ ସହିତ ହିସାବ ହୋଇଯାଇଛି । ଅବଶିଷ୍ଟ ଯାହା ଫଳେ ପୁଷ୍ପେ ହାତକୁ ଆସିବ, ଗ୍ରାମମୁଖୀ ଗୋଲଖା ପାଇଁ ତାହା ହେଉଛି ଯଥେଷ୍ଟ ।

ଗୋଲଖା ଭଳି ନିମ୍ନ କର୍ମଚାରୀମାନଙ୍କ ଅଦକ୍ଷସ୍ତ ଜୀବନକୁ ଏହି ବ୍ୟବସ୍ଥା କୋରି କୋରି ଖାଉଛି । ସେମାନଙ୍କ ରକ୍ତରେ ପରିପୁଷ୍ଟ ହେଉଛି ପ୍ରଚଳିତ ଅଲେଖା ସମ୍ବିଧାନ । ସେମାନଙ୍କୁ ଶୋଷଣ କରୁଛି କୁଚକ୍ରୀର ଚକ୍ର । ଏହା ବାହାରେ ଯେଉଁ ସୁସ୍ଥ ସୁନ୍ଦର ଜୀବନ ଅଛି ତାହା ସମ୍ବନ୍ଧରେ ଭାବିବାକୁ ସମୟ ମିଳୁନାହିଁ । ଗୋତିପ୍ରଥାର ବିଲୋପ ସହିତ ଏହି ଶୋଷଣ ଦାସତ୍ୱରୁ ମୁକ୍ତିମାର୍ଗ ନିର୍ଣ୍ଣିତ ହୋଇପାରୁନାହିଁ । ପୁରୁଣାରୋଗ ନୂଆ ରୂପରେ ଦେଖାଦେଉଛି । ଘଟଣାସ୍ରୋତରେ ପୁରୁଣା କଥା ନୂଆ ରୂପ ନେଉଛି, ନୂଆଲୋକର ଜୀବନକୁ ଗ୍ରାସ କରୁଛି, ଗିଳି ପକାଉଛି ।

ହରି ସିଂ ଗୋଡ଼ାଇଛି ଏବେ ମହାଜନଙ୍କ ପଛରେ । ବଡ଼ବାବୁ ଆଣି ତାହାକୁ ଯୁଟାଇ ଦେଇଛନ୍ତି ସେଠାରେ । ହରି ସିଂ ମାଟ୍ରିକ ପାଶ୍ କରିଥିଲା ତୃତୀୟ ଶ୍ରେଣୀରେ । ତାହା ପୁଣି ତିନିଥର ଫେଲ ହେଲାପରେ ଶେଷକୁ କମ୍ପାର୍ଟମେଣ୍ଟାଲ୍ । ମଫସଲ କଲେଜରେ ଦୁଇ ବର୍ଷକାଳ ଏ ପାଖ ସେ ପାଖ ହୋଇ ବିଶ୍ୱ ବିଦ୍ୟାଳୟ ପରୀକ୍ଷାର ହିଡ଼ ଡେଇଁ ପାରିଲା ନାହିଁ ସେ । ପୋଷାକ ପିନ୍ଧାର ସଉକ ବଢ଼ିଲା, ହାତରେ କଡ଼ା ପଶିଲା, ପାଦରେ ବୁଟ ଗଳିଲା, ଭଳିକି ଭଳି ନିଶ ଦାଢ଼ି ଉଦ୍ଭିଲା, କ୍ରିକେଟ ଖେଳରେ ପାରଦର୍ଶିତା ଦେଖା-ଦେଲା, ସ୍କୁଲରେ ଦାଣ୍ଡ ଦୁଲୁକିଲା, କିନ୍ତୁ ବିଦ୍ୟା ବଢ଼ିଲା ନାହିଁ । ବସି ଖାଇଲେ ନଈବାଲି ସରେ । ରୁଚ୍ଛାଟାରେ ଘରେ ବସି ବାପ-ମାଆ, ଭାଇ-ଭଉଣୀ ସଭିଁର ଚକ୍ଷୁଶୂଳ । ସମସ୍ତେ କହିବାକୁ ଆରମ୍ଭ କଲେଣି—ବଜାରୀ, ଛତରା, ବାଳୁଙ୍ଗା, ବଦମାସ ଓ ସମାଜ ବିରୋଧୀ । ଅଦରକାରୀ ଜିନିଷ ଭଳି ଠେଲାପେଲା ହୋଇ ବେକାର ଅକର୍ମା ଜୀବନ ଘେନି ବାହାରି ପଡ଼ିଲା ପଦାକୁ ସେ । ଆଜିକାଲିକା ଦୁନିଆଁରେ ଆଇ. ଏ. ଫେଲ୍ ବା ମାଟ୍ରିକ ପାଶ୍ ସାର୍ଟିଫିକେଟ୍‌ର ମୂଲ୍ୟ କଣ ଅଛି ? ବିନା ବାକ୍ୟ ବ୍ୟୟରେ ସବୁ ଦୁର୍ବଳତାକୁ ଘୋଡ଼ାଇ ହରି ସିଂ ଏମ୍ପ୍ଲୟମେଣ୍ଟ୍‌ରେ ନାମ ଲେଖାଇଛି । ଅଖିଆ ଅପିଆ ବାରମ୍ବାର ଦୌଡ଼ା-ଦୌଡ଼ି କରି ଇଣ୍ଟରଭ୍ୟୁ ଦେଇଛି । ଶେଷକୁ ଫଳ ହୋଇଛି ନଦାରଦ ।

ଗ୍ଲାନି, ଅପମାନ, ଅବସାଦରେ ମୁହଁ ଦେଖାଇ ସ୍କୁଲପାରେ ନାହିଁ ହରି ସିଂ । ସ୍କୁକର କେଉଁ ଛକରେ ଆସେ ଓ କେଉଁପରି ତିନିପଟିଆ ତାଆସ ଖେଳ ନ୍ୟାୟରେ ପୂରଣ ହୁଏ, ତାହାକୁ ସ୍ୱୟଂ ଭଗବାନ ମଧ୍ୟ ଉତ୍ତର କରିପାରନ୍ତି ନାହିଁ । ହରି ସିଂ ଜାଣିବ କେଉଁଠି ବା କିପରି ? ମନ ମରିଯାଏ, ଆଖି ତାର ନିଷ୍ପ୍ରଭ ହୋଇ ଆସେ । ତାରୁଣ୍ୟ ଓ ଯୌବନର ଉନ୍ମାଦିନୀ ଉତ୍ତେଜନା ଯାଏଁ । ଅଭିମାନର ଅହଂକାର, ଆତ୍ମମର୍ଯ୍ୟାଦା ଲୋପ-

ପାଏ । ଶେଷକୁ ହର ସିଂ ଏହିଠାରେ କୌଣସି ପ୍ରକାର ନାକ ଗଳେଇ ପାରନ୍ତି । ବଳକା ବିରସ ଦିନଗୁଡ଼ିକ ନାନାପ୍ରକାର ମିଚ ଖୋସାମଦିରେ ହିଁ କଟୁଛି ।

ବଡ଼ ବାବୁଙ୍କର ଅଭିଜ୍ଞ ଅମଲାତାନ୍ତ୍ରିକ ବୁଦ୍ଧି ଓ ନାରାୟଣ ମହାଜନଙ୍କର ଟ୍ରେଜେରୀ ଯଦି ପ୍ରସନ୍ନ ହୁଏ, ତେବେ କପାଳ ଫିଟିବ । ଅନିଶ୍ଚିତ ଭବିଷ୍ୟତ ହେବ ନିଶ୍ଚିତ । ଅଫିସ କାଗଜ ପତ୍ରରେ ଦୋରସ୍ତି କରିବା ପାଇଁ ବଡ଼ବାବୁ ନେବେ ଅତି କମରେ ଦୁଇହଜାର । ଅଫିସରଙ୍କ ଘରଆଡ଼େ ଦଆସିବ ତିନିହଜାର । ସେ ହେଲେ ପୋଷଣାହାରୀ, ଭାଗ୍ୟବିଧାତା । ଏହିପରି କଥା ଥିଲା । ପାଞ୍ଚହଜାରରେ କାମ ଫତେ ହୋଇ ଯାଇଥାନ୍ତା । କିନ୍ତୁ ସବୁ କଥା ଓ ସବୁ କାମ ହେଉଛି ରାଜଶକ୍ତିର ଅନୁଗାମୀ । ଭୁବନେଶ୍ୱର ଠାରେ ଯେଉଁ ବଡ଼ ଅଫିସର ସାହେବ ଅଛନ୍ତି, ସେହି ଉଞ୍ଚାଣିଆ ଦେବତାଙ୍କର ଦୃଷ୍ଟି ପିଅନ ଭଳି ଗ୍ରେଡ଼ ରୁକରିଆ ପ୍ରତି ସୁଦ୍ଧା ରହିଛି । ସେଠାରେ ଦର୍ଶନ ଉଣା ହେଲେ ପିଣ୍ଡା ମାଡ଼ିବା ଆବଶ୍ୟକ ନାହିଁ । ଧନୀ-ନିର୍ଦ୍ଧନ, କୋବିଦ-ମୂର୍ଖ, ସୁଶ୍ରୀ-ବିଶ୍ରୀ, ପରିଶ୍ରମୀ-ଅଳସୁଆ, ପରିଚିତ-ଅପରିଚିତ, ବନ୍ଧୁ-ବୈରୀ; ସମସ୍ତଙ୍କ ପାଇଁ ସେହି ଗୋଟିଏ କଥା, ସେହି ଗୋଟିଏ ବାଟ । ସେହି ଗୋଟିଏ ତର୍ଣ୍ଣିବା ଓ ଭର୍ଣ୍ଣିବାର ନିୟମିତ ହାତସଫେଇ । ଏହି ଶୋଷଣ ଅବାରିତ ।

ବଡ଼ ବାବୁଙ୍କ ଭାଷାରେ ସେଠାରେ ହଠଯୋଗ କରିବାକୁ ହୁଏ । 'ହ'ମାନେ ହେଉଛି ହଜାର । 'ଠ' ଅର୍ଥ ଶୂନ୍ୟଟିଏ । ଏଣୁ ମୂଳ ହେଲା ହଜାର ପାଖରେ ଶୂନ୍ୟ ଯୋଗ କରିବା । ଯିଏ ଯେତେ ଶୂନ୍ୟ ଯୋଗକରି ପାରିଲା ତାହାର ସିଦ୍ଧି ସେତେ ଅଧିକ । ବଡ଼ ବଡ଼ ହାକିମ ହୁକୁମାମାନେ କେବେହେଲେ ପଞ୍ଚାମୃତରେ ଧୂଆ ଶାଳଗ୍ରାମ ନୁହନ୍ତି । ବ୍ଲେକ, ଦାଗୀ, ଖୁଣୀ, ପକେଟମାରୁ ଠାରୁ ଆରମ୍ଭ କରି ବାରବନିତା ପର୍ଯ୍ୟନ୍ତ ସମସ୍ତେ ଏ କଥା ବୁଝନ୍ତି । ସମସ୍ତେ ଏ କଥା ଜାଣନ୍ତି । ସମସ୍ତଙ୍କ ସହିତ ଏହି ଦେଶୀ ସାହେବମାନଙ୍କ କାରବାର । ରାଜନୈତିକ ନେତାମାନଙ୍କର ଛତ୍ରଚ୍ଛାୟାତଳେ ଏମାନେ ଲାଳିତ, ପାଳିତ ଓ ପରିପୁଷ୍ଟ । ଯେଉଁ ଦଳ କ୍ଷମତାକୁ ଆସିଲେ ସୁଦ୍ଧା ସେମାନଙ୍କୁ ଠିକ୍ ରୂପେ ଠିକ୍ ରାସ୍ତାରେ ପକାଇ ଦେବାକୁ ଆଦୌ ଅଧିକ ସମୟ ଲାଗେନାହିଁ । ଉଲଙ୍ଗ ଅବସ୍ଥାର ଓ ଦୁର୍ନୀତିର ଗଗନଚୁମ୍ବୀ ପାହାଡ଼ ଉପରେ ବସି ଶୋଷଣର ଅସୀମ କ୍ଷମତା ପ୍ରୟୋଗରେ ସେମାନେ ଧୁରନ୍ଧର । ସେମାନେ ହେଲେ ଶାସନକୁଶଳ ଗେଜେଟେଡ଼୍ ଅଫିସର, ଆଇରନମ୍ୟାନ୍ । ଏହି କଥା କର୍ଣ୍ଣମନ୍ତ୍ର ଫୁଙ୍କି ଦେଲା ପରେ ହର ସିଂ ଭଳି ପ୍ରତ୍ୟେକ ସରସ୍ୱ ମଳିନ ରୁକରି ପ୍ରାର୍ଥୀଙ୍କ ମନ ଭିତରେ ମେଜିକ ଭଳି କାମ କରେ । ରୁକରି ଆଶାୟୀମାନଙ୍କ ମନର ଅନ୍ଧିସନ୍ଧି ଚିନଷି ନେବାରେ ବଡ଼ବାବୁ ସିଦ୍ଧହସ୍ତ ।

ଯାହା ଟଙ୍କା ଲାଗିବ, ସେଥିପାଇଁ ଟ୍ରେଜେରୀ ଖୋଲି ଦେବାକୁ ନାରାୟଣ ମହାଜନ ପ୍ରସ୍ତୁତ ଅଛନ୍ତି । ଶିକ୍ଷିତ ବେକାରଙ୍କ ପାଇଁ ଏହା ହେଉଛି ପ୍ରଧାନ ସୁଯୋଗ ।

ମ୍ୟାନିପୁଲେଟିଂ କରି ପାରିଲେ ସବୁ ସମ୍ଭବ ହୋଇ ପାରିବ । ଏ ଯୁଗ ହେଲା ମନି ଓ ମ୍ୟାନିପୁଲେସନର ।

ହରି ସିଂର ଜୀବନରେ ମଧ୍ୟାହ୍ନ ଆସିନାହିଁ । ସେ ଧୈର୍ଯ୍ୟ ଓ ସାହସର ସହିତ ଉପରକୁ ଉଠିବା ପାଇଁ ଆୟୋଜନ କରୁଛି । ଆଜି ଗୋଲଖାର ଜୀବନ ଆସି ପହଞ୍ଚି-ଗଲାଣି ଅପରାହ୍ଣରେ । ତା'ର ଆଖି ଆଗରେ ପଶ୍ଚିମ ଦିଗ୍‌ବଳୟ ଦେଖାଯାଉଛି ଜଳ-ଜଳ ହୋଇ । ସେଥିଯୋଗୁଁ ସେ ଅବଶିଷ୍ଟ ପାଥେୟ ସଂଗ୍ରହ ପାଇଁ ବ୍ୟସ୍ତ ଓ ବ୍ୟଗ୍ର ହୋଇ ଉଠିଛି । କେହି କାହାର ବନ୍ଧୁ ନୁହେଁ କିମ୍ବା ଶତ୍ରୁ ନୁହେଁ । ବୟସରେ, ସ୍ୱାସ୍ଥ୍ୟରେ, ରୁଚିରେ, ରଙ୍ଗରେ, ପୋଷାକରେ, ଜାତିରେ ଭିନ୍ନ ଭିନ୍ନ । ସଂସାରର ସାଧାରଣ ପାର୍ଥକ୍ୟ ଯାହା ରହିବା କଥା ତାହା ଭଲ ଭାବରେ ରହିଛି । କେହି ମେଳ ଖାଉନାହିଁ କାହାରି ସହିତ । ତଥାପି ମେଳ ରହିଛି ଗୋଟିଏ ସ୍ଥାନରେ, ଯେଉଁଠି ଅନ୍ୟ-ମାନେ ସେମାନଙ୍କୁ ଦେଖି ଆପଣା ବୁଦ୍ଧି ବଳର ପରଖ କରୁ କରୁ ଟଙ୍କା ପଇସା ଉପାର୍ଜନର ଫାନ୍ଦ ଫାନ୍ଦୁଛନ୍ତି । ଭୟ ନାହିଁ, ଆଶଙ୍କା ନାହିଁ, ସଙ୍କୋଚ ନାହିଁ ।

ଗୋଲଖାକୁ ସାଙ୍ଗରେ ନେଇ କଚେରୀରେ କରିବାକୁ ହେବ ଏଫିଡେଭିଟ୍ । ବଡ଼ବାବୁଙ୍କର ପରାମର୍ଶ ଅନୁସାରେ ଏହି କାମଟି ଏକାନ୍ତ ଗୋପନରେ କରାଇ ପାରିଲେ ହରି ସିଂ ହୋଇ ପାରିବ ତାର କାଗଜ କଲମର ଜ୍ୱାଇଁ ବା ଉତ୍ତରାଧିକାରୀ । ଚାକିରି ପାଇବାର ବାଟ ହେବ ନିଷ୍କଣ୍ଟକ । ସ୍ୱୈରତନ୍ତ୍ରକୁ କରାଯାଇ ପାରିବ ଆଇନସିଦ୍ଧ । ତାର ବହୁ ପୋଷିତ ଅଭିଳାଷର ପରିପୂରଣ କ୍ଷେତ୍ରରେ ଖୋଦ ମହାଜନେ ଭରସା । ମନେହୁଏ, ମହାଜନେ ଯିମିତି ତାର ବହୁ ନିକଟର ମଣିଷ । ବିପଦବେଳେ ସାହାଯ୍ୟ କରି ଅନୁଗୃହୀତ କରୁଛନ୍ତି, ଦୁଃଖରେ ଧୈର୍ଯ୍ୟବାଣୀ ଶୁଣାଉଛନ୍ତି । ମନ ପୂରି ଉଠେ କୃତଜ୍ଞତାରେ, ମୁହଁରେ ଉକୁଟି ଉଠେ ତୃପ୍ତି ଓ ଆନନ୍ଦର ଚିହ୍ନ ।

ଗୋଲଖାର ଦିନକାଳ ଶେଷ ହୋଇ ଆସିଲାଣି । ସରି ଆସିଲାଣି ତାର ମୋଟା-ମୋଟି ସାଧାରଣ ଜୀବନ । ପୂର୍ବରୁ ଯଦି ସେହି ଖୁଣ୍ଟରେ ମଜଭୁତ କରି ଆଉ ଜଣକର ବ୍ୟକ୍ତିତ୍ୱ ଓ ପୌରୁଷକୁ ଖର୍ବ ଓ ପଦଦଳିତ କରି, ବିଶ୍ୱସ୍ତ ଓ ବିଶମ୍ବଦ ଭଳି ବାନ୍ଧି ଦିଆ-ଯାଇ ପାରିଲା, ସେ ବିନା ଦ୍ୱିଧାରେ ତାର ସୁଧ ବାବଦକୁ ସମଗ୍ର ଚାକିରି କାଳର ଉପାର୍ଜନକୁ ଅଜାଡ଼ି ଦେଇ ପାରିବ । ଆଜିକାଲିକାର ସମସ୍ୟାସଙ୍କଟ ସଂସାରରେ ଟିକେ ମୋଟା ଧରଣର ଥୋପ ଗୁଞ୍ଜି ହୁଇଲ୍ ଲଗାଇ ବନସି ନ ଛାଡ଼ିଲେ ଶିକାରକୁ କାବୁ କରିବା ସହଜ ନୁହେଁ । ଏ କଥା ଅଭିଜ୍ଞତା ଓ ଅନୁଭୂତିସମ୍ପନ୍ନ ନାରାୟଣ-ମହାଜନଙ୍କୁ ବୁଝାଇବାକୁ ପଡ଼େନାହିଁ । ପ୍ରଚଳିତ ସମାଜର ସ୍ରୋତରୁ ନିଜର ପ୍ରାପ୍ୟ ଅଂଶକୁ କପରି ନିଃସଙ୍କୋଚରେ ଝିଙ୍କି ନେବାକୁ ହୁଏ, ତାହା ସେ ଉତ୍ତମଭାବେ ଜାଣନ୍ତି ।"

କଥାଟା ଶେଷ କରି ମୁହଁ ବନ୍ଦ କଲେ ବନ୍ଧୁ ବନବିହାରୀ । ତାଙ୍କର ମୁଖ ଯିନା ବନ୍ଦ ହୋଇଗଲା, ମୋର ମନେହେଲା କିଏ ଯେପରି ମୋହ ମୁଣ୍ଡ ଉପରେ ଡ଼କଟିଏ ଗରମପାଣି ଢାଳି ଦେଇଛି, ସେହି ପାଣି ମୁଣ୍ଡଆଡ଼ୁ ଝରିଝରି ସମଗ୍ର ଦେହଟାକୁ-ଅସ୍ଥିର କରି ପକାଉଛି । କିନ୍ତୁ ପ୍ରକୃତରେ କୌଣସି ପ୍ରକାର ଟିପ୍‌ପଣୀ କାଟି ପାରିଲି ନାହିଁ । ପତ୍ନୀ, ପୁତ୍ର, ସ୍ବଜନ, କ୍ୟାରିୟର ପେଇଁ ସମସ୍ତେ ବ୍ୟସ୍ତ । ଏହା ବାହାରେ କିଛି ଅଛି କି ନାହିଁ ସେଥିପାଇଁ ଜାଣିବାର ବ୍ୟଗ୍ରତା ନାହିଁ । ଅର୍ଥଗୃଧ୍ନୁ ଦଲାଲ ଦଳର ବିଭତ୍ସ ଶୋଷଣର ଶିକାରରୁ କିପରି ମୁକ୍ତି ମିଳିବ ତାହାର ପ୍ରଚେଷ୍ଟା ନାହିଁ । କେବଳ ସାବିବାକୁ ଲାଗିଲି ତଳ-ଉପର, ଆଗ-ପଛ, ଏପାଖ-ସେପାଖ । ଠକାମୀ, ଭଣ୍ଡାମୀ ହୋଇପାରେ ଚତୁରତା, କିନ୍ତୁ ତାହାକୁ କଦାପି କୁହାଯାଇ ପାରିବ ନାହିଁ କୁଶଳତା ।

ଏହି ସ୍ୱାଧୀନ ଦେଶରେ ମଣିଷ ଜୀବନର ପ୍ରତିଷ୍ଠିତ ମୂଲ୍ୟବୋଧ କଣ ? ଏହା ଅର୍ଥ କିଛି ନାହିଁ ? ସୃଷ୍ଟିର ମୂଳରେ ସତ୍ୟ ଓ ନ୍ୟାୟ ବୋଲି କିଛି ରହିଛି କି ନାହିଁ, ଏହା ଚିନ୍ତାର ବିଷୟ । ଦେଶ ପରାଧୀନ ଥିଲା ବେଳେ ମୋ ଦେଶର କବି ଓ କଥାକାରବୃନ୍ଦ ବିଦେଶୀମାନଙ୍କ ବିରୁଦ୍ଧରେ ଅନେକ ବିଷୟ ଲେଖିଛନ୍ତି । ଏବେ ନିଜର ଅଧଃପତନ ବିରୁଦ୍ଧରେ କଲମ ଚଳାଇବା ଆବଶ୍ୟକ ।

ସେତେବେଳକୁ ହଲଦିଆ ଖରାର ତରଳ ଢେଉ ଅପସରି ଗଲାଣି ଗଛଲତାର ମଥାନରୁ । ମୁଣ୍ଡ ଉପରେ କେବଳ ପାଉଁଶିଆ ରଙ୍ଗର ଆକାଶକୁ ଚେନାଏ, ଆଉ ମନ ମଧ୍ୟରେ ବିମର୍ଷ ବିପନ୍ନ ଅନୁଭୂତିକୁ ଚେନାଏ ।

(୧୯୮୮ ମହିହା ନବ ପତ୍ରର ୧୬ଶ ବର୍ଷ, ୩ୟ ସଂଖ୍ୟାରେ ପ୍ରକାଶିତ)



# କଳାକାହ୍ନୁ କୁହୁକ ଜାଣେ

॥ ଏକ ॥

ବିରାଡ଼ି ମାଛ ଖାଏ—ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କଥାଟା ଆଦୌ ନୂଆ ନୁହେଁ । ବିରାଡ଼ି ତାର ସ୍ୱଧର୍ମ ପାଳନ କରେ; ଏଣୁ ଏ ବିଷୟ କୌଣସି ପ୍ରକାର ବିଶୃଙ୍ଖଳା ସୃଷ୍ଟି କରେନାହିଁ । ଯେତେବେଳେ ଜଣାଯାଏ ଯେ ଗୋଟାଏ ବିରାଡ଼ିକୁ ମାଛ ଖାଇଗଲା କିମ୍ବା ଖାଇବା ପାଇଁ ଉଦ୍ୟମ କରି ଖଣ୍ଡିଆ ଖାବରା କରି ପକାଇଲା, ସେତେବେଳେ ତାହା ବିଶୃଙ୍ଖଳା ସୃଷ୍ଟି କରେ, ନୂଆକଥା ହୁଏ, ସେ ଖବର ସମ୍ବାଦପତ୍ରର ପୃଷ୍ଠାରେ ଶିରୋନାମା ହୋଇଯାଏ, ବଡ଼ବଡ଼ ଅକ୍ଷରରେ ଛପା ହୁଏ । ଏଥିରୁ ଅନ୍ତତଃ ଅନୁମାନ କରାଯାଏ ଯେ ଯେଉଁ ଖବରରେ ଅସ୍ୱାଭାବିକତା କିଛି ନ ଥାଏ, ତାହା ହିଁ ହୁଏ ସାଧାରଣତଃ ସମ୍ବାଦ ପତ୍ରର ପୃଷ୍ଠା ମଣ୍ଡନ ପାଇଁ ଉପଯୁକ୍ତ ।

ଅବିକଳ ସେହିପରି ଭାବରେ ଦେଖିବାକୁ ଗଲେ ଯଦି କୌଣସି କ୍ଷେତ୍ରରେ କୌଣସି ସରକାରୀ ଡାକ୍ତର, ଇଞ୍ଜିନିୟର, ଯୋଗାଣ ବିଭାଗର କର୍ମଚାରୀ କିଛି ଲାଞ୍ଚ ନେଲେ କିମ୍ବା ଆଖିବୁଜିଆ ଦୁର୍ନୀତି ଓ ଭ୍ରଷ୍ଟାଚାରରେ ଲିପ୍ତ ରହିଲେ, ତାହା ଅସ୍ୱାଭାବିକ ମନେହୁଏ ନାହିଁ । ବିରାଡ଼ିର ସ୍ୱଧର୍ମ ପାଳନ କଲା ଭଳି ସେମାନେ ନିଜ ନିଜର ପରିସର ମଧ୍ୟରେ ଆବଶ୍ୟକୀୟ କର୍ତ୍ତବ୍ୟ ସମ୍ପାଦନ କରିଥାନ୍ତି । ସେ ବିଷୟ ଶୁଣିବାକୁ କାନ ନ ଥାଏ, ଦେଖିବାକୁ ଆଖି ନ ଥାଏ ଓ ବୁଝିବା ଭଳି ମନ ନ ଥାଏ । କିନ୍ତୁ ଯେତେବେଳେ ଶୁଣାଯାଏ ଯେ କୌଣସି ଏକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ କିମ୍ବା ମହାବିଦ୍ୟାଳୟର ଅଧ୍ୟକ୍ଷ ନିୟମ ବହିର୍ଭୂତ ଉପାୟରେ ଅର୍ଥ ବ୍ୟୟ କରିଛନ୍ତି, ସେତେବେଳେ ତାହା ଅସ୍ୱାଭାବିକ ମନେହୁଏ । ସାତ୍ତ୍ୱିକ ବିଭାଗର କର୍ମଚାରୀ ଶଠତାରେ ଲିପ୍ତ ହୋଇଗଲେ ବୋଲି ସମ୍ବାଦ ପତ୍ରର ପୃଷ୍ଠା ଗର୍ଜନ କରିଉଠେ । ସମ୍ପାଦକଙ୍କ କଲମରୁ ଅଗ୍ନିର ସ୍ଫୁଲିଙ୍ଗ ଝରିପଡ଼େ, ସରକାରଙ୍କର ଦୁର୍ନୀତି ନିବାରଣ ବିଭାଗ ଚଞ୍ଚଳ ହୁଏ । ସମଗ୍ର ଦେଶ ସମୁଦ୍ର ଭଳି ବିକ୍ଷୁବ୍ଧ ହୋଇଉଠେ ।

ସେଦିନ ଶିକ୍ଷା ବିଭାଗର ଡିରେକ୍ଟର, ଜଏଣ୍ଟ ଡିରେକ୍ଟର ଓ ସେକ୍ରେଟାରୀ ପୂର୍ବ ନିର୍ଦ୍ଧାରିତ ସମୟରେ ଯାଇ ଉପସ୍ଥିତ ହୋଇଥିଲେ ଗୋଟିଏ ସରକାରୀ ମହାବିଦ୍ୟା-

ଲକ୍ଷ୍ୟର ପରସ୍ପର ମଧ୍ୟରେ, ଏହିଭଳି କେତେକ ଅବାଞ୍ଛିତ ଅଭିଯୋଗର ତଦନ୍ତ ଉଦ୍ଦେଶ୍ୟରେ । ଅଭିଯୋଗ ଆଣିଥିଲେ ସ୍ଥାନୀୟ ଜନସାଧାରଣ, ପ୍ରାକ୍ତନ ଛାତ୍ର ସଂସଦ, ବର୍ତ୍ତମାନର ଛାତ୍ର ଛାତ୍ରୀ ଓ କର୍ମଚାରୀମାନଙ୍କ ମଧ୍ୟରୁ କେତେଜଣ । ଶିକ୍ଷାମନ୍ତ୍ରୀଙ୍କ ପୃଷ୍ଠ-ପୋଷକତାରେ ପ୍ରକାଶିତ ସମ୍ବାଦପତ୍ରରେ କେତୋଟି ଲେଖା ମଧ୍ୟ ପ୍ରକାଶ ପାଇଥିଲା 'ସଂପାଦକଙ୍କୁ ପତ୍ର' ଶିରୋନାମାରେ । ଅଭିଯୋଗର ସତ୍ୟାସତ୍ୟ ପରୀକ୍ଷା କରିବା ପୂର୍ବରୁ ସେମାନଙ୍କ ଚାଲିଚଳଣି, ହାତର ଆସ୍ଫାଳନ, ତାଚ୍ଛଲ୍ୟସୂଚକ ଭଙ୍ଗୀ, ରାଗ-ରକ୍ତାଭ ଦୃଷ୍ଟି, ଆସୁରିକ ଉଲ୍ଲାସକୁ ଲକ୍ଷ୍ୟକରି କର୍ମଚାରୀମାନେ ପ୍ରମାଦ ଗଣୁଥାନ୍ତି । ତଥାପି ସରକାରୀ କାଇଦା କାନୁନ ଓ ପୂର୍ବ ଅବଧାରିତ ପ୍ରଥାନୁଯାୟୀ ପ୍ରତ୍ୟେକ କର୍ମଚାରୀ ବିନୟର ସହିତ କ୍ଷମତାଶାଳୀ, ଆହୁରି କ୍ଷମତାଶାଳୀ, ଆହୁରି ଆହୁରି କ୍ଷମତାଶାଳୀ କର୍ମକର୍ତ୍ତାଙ୍କୁ ପ୍ରଣାମ ଜଣାଇ କୃତ୍ୟ କୃତ୍ୟ ହେଉଥାନ୍ତି । ଆଜିକାଲି ତେଲଦାନ ହିଁ ସର୍ବସିଦ୍ଧିର ମୂଳହେତୁ । ତୈଳବିଜ୍ଞାନ ହିଁ ସର୍ବଶ୍ରେଷ୍ଠ ବିଜ୍ଞାନ । ଏପରି ସ୍ଥଳେ ଅଧ୍ୟକ୍ଷ ମହୋଦୟ ଯଥାସମ୍ଭବ ଶାଳୀ-ନତା ରକ୍ଷାପୂର୍ବକ ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କର ପରିଚୟ କରାଇ ଦେଉଥାନ୍ତି ଆଗନ୍ତୁକ କର୍ମକର୍ତ୍ତାମାନଙ୍କ ସହିତ; ଯେଉଁମାନେ କି ସେମାନଙ୍କର ପଦାଧିକାର ବଳରେ ନିର୍ଭରଯୋଗ୍ୟ ଓ ସର୍ବସାଧାରଣଙ୍କର ବିଶ୍ୱାସଭାଜନ ।

ଇତ୍ୟବସରରେ ଅଫିସ୍ ଭିତରକୁ ପ୍ରବେଶ କଲେ ଶାନ୍ତ, ସୁନ୍ଦର, ଶ୍ରୀମତୀ ଅଧ୍ୟାପିକା ଗିରିଜାଦେବୀ । ମୁଖମଣ୍ଡଳ ଯିମିତି ଆଶ୍ୱିନର ଦେବୀ ପ୍ରତିମାର ମୁଖ ଭଳି ଉଜ୍ଜ୍ୱଳ । ନାଲି ପାଟ ଶାଢ଼ୀକୁ ନାଲି ଅନ୍ତର୍ବାସ, ନାଲି ବ୍ଲାଉଜ, ନାଲି ଟିକଲି, ନାଲିଚୁଡ଼ି, ନାଲି ଫିତାବାଲା ଚପଲରେ ସେ ନିଜକୁ ସଜାଇଛନ୍ତି, ସତେ ଯିମିତି ନାଲିଗୁଲାପ ସାଧବଝିଅ ବୋଇତ୍ ଟିଏ ଭଳି । ଅଧିକ ଉଜ୍ଜ୍ୱଳ ଓ ଅଧିକ ଲୋଭନୀୟ ପ୍ରସାଧନର ମୃଦୁସୁବାସ ସମସ୍ତଙ୍କ ଦୃଷ୍ଟିର ଏକାଗ୍ରତାକୁ ସେହିଆଡ଼କୁ ଓଟାରି ନେଲା । ଅଧ୍ୟକ୍ଷ ମହୋଦୟ ଚିରାଚରିତ ପଦ୍ଧତିରେ ପରିଚୟ କରାଇଦେଲେ—"ଇଏ ହେଉଛନ୍ତି ଅଧ୍ୟାପକ ଭାନୁ ସିଂହଙ୍କର କନ୍ୟା ଓ ଅଧ୍ୟାପକ ରଜନୀକାନ୍ତଙ୍କ ସହଧର୍ମିଣୀ ଓ ସହକର୍ମିଣୀ ।"

ସଙ୍ଗେ ସଙ୍ଗେ ପୁରୁ ଲେନ୍ସର ଚଷମାକୁ ନାକର ଅଗରୁ ଏ ଟାଣିଆଣି ଭ୍ରୂରୁ ଓ ଚଷମାର ଫାଙ୍କରେ ଗିରିଆଡ଼କୁ ଚାହିଁ ସେକ୍ରେଟାରୀ ମହୋଦୟ ପ୍ରଶ୍ନ କଲେ—"ଏହା ଭିନ୍ନ କଣ ଅନ୍ୟ କୌଣସି ପରିଚୟ ନାହିଁ ତାଙ୍କର ?"

ଅଧ୍ୟକ୍ଷ ମହୋଦୟ ନିଜର କଥାକୁ ରୁଚିପୂର୍ଣ୍ଣ ଭାବେ ଦୋହରାଇଲା ଭଳି କହିଲେ—"ସେ ଅଧ୍ୟାପିକା ରୂପେ ଆମ ଅନୁଷ୍ଠାନରେ ଅନ୍ତର୍ଭୁକ୍ତା ହେଲେ ମଧ୍ୟ ନିଜର ପିତା ଓ ପତିଙ୍କର ପରିଚୟ ଅନୁଯାୟୀ ଅନୁଷ୍ଠାନର ଛାତ୍ର ଓ କର୍ମଚାରୀଙ୍କଠାରୁ ଯେଉଁ ବିଶେଷ ସମ୍ମାନ ଆଶା କରନ୍ତି, ତାହା ଅନ୍ୟମାନଙ୍କ ଭାଗ୍ୟରେ ସ୍ୱପ୍ନ ପ୍ରାୟ ।"

ଅଧ୍ୟାପିକା ଗିରିଜା ଦେବୀ ତିନୋଟି ସନ୍ତାନର ଜନନୀ ହେଲେ ମଧ୍ୟ ନିଜକୁ ସର୍ବଦା କୁମାରୀ କିଶୋରୀଟି ଭଳି ସଜାଇବାରେ ବ୍ୟସ୍ତ ଥାନ୍ତି । ଭୋଗବାସନାର ପ୍ରମତ୍ତ ପ୍ରଜାପତି ଭଳି କଲେଜର ପରିସର ମଧ୍ୟରେ ବିଚରଣ କରନ୍ତି । ଆଜି ଉପରିସ୍ଥ କର୍ମକର୍ତ୍ତା-ମାନଙ୍କ ଆଗମନର ସମ୍ବାଦ ପାଇବା ପରେ ନିଜକୁ ଅଧିକ ଆକର୍ଷଣୀୟ ଭାବରେ ସଜାଇ ସାରି ଅଫିସରେ ଉପସ୍ଥିତ ହୋଇଛନ୍ତି । ଏଥିପାଇଁ କିଛିତ ଅଧିକ ସମୟ ମଧ୍ୟ ବ୍ୟୟ କରିଛନ୍ତି ବୋଲି କୁହାଯାଇପାରେ । ମଧ୍ୟବୟସୀ ମହିଳାର ସୁଡୌଲ ନିତମ୍ବ, ଟାଇଟ୍ ବଡ଼ିକ୍‌ରେ ବନ୍ଧା ତୀକ୍ଷ୍ଣ ବକ୍ଷୋଜ, ପେଟକଟା ଓ ପିଠିକଟା ବ୍ଲାଉଜର ନିମ୍ନଭାଗକୁ ଗଳିତ ନାଭିମୂଳ, ଶିମୂଳିଫୁଲ ଭଳି ଦେଖା ଯାଉଥିବା ରଙ୍ଗବୋଳା ଅଧର ଆଦି ଉପରେ ବାରମ୍ବାର ବୁଲିଯାଉଥାଏ ସେକ୍ରେଟାରୀଙ୍କର ଲୋଭାତୁର ନୟନ । ସତେ ଯିମିତି ତାଙ୍କର ଆଖି ଦୁଇଟା ଏ ସବୁକୁ ଚାଟି ଚାଟି ନେଉଛି । ଧୀରେ ଧୀରେ ଓହ୍ଲାଇ ଯାଉଛି ତଳକୁ । ସୂକ୍ଷ୍ମ ପାଟଶାଢ଼ୀର ଆବରଣ ଭେଦକରି ଦେହର ଅନାବୃତ ଅଂଶଗୁଡ଼ିକ ଉପରେ ବି ବୁଲିବୁଲି ଯାଉଛି ।

ଶେଷକୁ ଆଉ ସମ୍ଭାଳି ନ ପାରି ସେ ତୁଣ୍ଡ ଫିଟାଇଲେ—"ଗିରିଜାଦେବୀ, ଆପଣ କାହିଁକି ଏମିତି ରୋଗା ଦେଖାଯାଉଛନ୍ତି । ବୟସ ତ ବିଶେଷ ହୋଇନାହିଁ, ଦେହ ଶୁଖି ଶୁଖି ଯାଉଛି କାହିଁକି ? ଟିକେ ମୋଟାମୋଟି ହୁଅନ୍ତୁ, ଫଳରସ ଦୈନିକ କିଛି କିଛି ପିଅନ୍ତୁ ।"

କଥାଗୁଡ଼ାକ ଯେତେ ଅପ୍ରୀତିକର ହେଲେ ସୁଦ୍ଧା କହୁ କହୁ ଏକପ୍ରକାର ଅସ୍ଥିର ଓ ଆବେଗଚଞ୍ଚଳ ହୋଇ ଉଠିଲେ ସେକ୍ରେଟାରୀ । ଡିରେକ୍ଟର ମହୋଦୟ କିଛିତ ମର୍ଯ୍ୟାଦା ଜଗି କହିଲେ—'ଏ କ'ଣ ହେଉଛି ? ସେ ତାଙ୍କର ଫଳରସ ପିଇବେ କିମ୍ବା ପିଇବେ ନାହିଁ, ଏଥିରେ ଆପଣଙ୍କର ଏତେ ଆଗ୍ରହ ପ୍ରକାଶ କରିବା ଆଦୌ ଭଲ ଲକ୍ଷଣ ନୁହେଁ ।"

କିଛିତ ନରମ ଓ ସ୍ୱାଭାବିକ ଗଳାରେ ଚିନ୍ତାକୁ ସ୍ପଷ୍ଟରୂପ ଦେବାପାଇଁ ସେକ୍ରେଟାରୀ ମହୋଦୟ ଉତ୍ତର ଦେଲେ—"ନାହିଁ-ନାହିଁ, ତାଙ୍କ ସ୍ୱାସ୍ଥ୍ୟକୁ ଦେଖିବାକୁ ମିଳୁଛି ଯେ ସେ ଧୀରେ ଧୀରେ ଦୁର୍ବଳା ହୋଇ ପଡ଼ୁଛନ୍ତି । ଏଣୁ ଭୁବନେଶ୍ୱର ଯାଇଁ ସେଠାରେ କିମ୍ବା କଟକରେ ଭଲ ଡାକ୍ତରଙ୍କ ସହିତ ପରାମର୍ଶ କରିବା ଉଚିତ । ଥରେ ଅଧ୍ୟାପକ ନିଶି-କାନ୍ତଙ୍କ ସହିତ ଆମ ଘର ପର୍ଯ୍ୟନ୍ତ ଆସି ଦେଖାକଲେ ମୁଁ ଫୋନ କରି ସବୁ ବ୍ୟବସ୍ଥା କରାଇଦେବି । ଆପଣମାନେ ହେଲେ ଆମ ଦେଶ ଓ ଜାତିର ଗୌରବ । ଆପଣମାନଙ୍କୁ ଭଲରେ ରଖିବା ହେଉଛି ଆମ ସରକାରଙ୍କର ପ୍ରଧାନ କର୍ତ୍ତବ୍ୟ ଭିତରୁ ଗୋଟିଏ ।"

ଗିରିଜା ଦେବୀଙ୍କର ସ୍ୱାସ୍ଥ୍ୟର, ସେକ୍ରେଟାରୀଙ୍କର ମାନବିକତାର ଓ ଡିରେକ୍ଟରଙ୍କର କଥାର ସୀମାରେଖା ସମ୍ବନ୍ଧରେ ଅନ୍ୟମାନେ ଯାହା ବୁଝନ୍ତୁ ବା ଆଲୋଚନା କରନ୍ତୁ,

ଅଧ୍ୟାପକ ନଳିନୀକାନ୍ତ ଏଭଳି ବୁଝିପାରିଲେ ଯେ ସ୍ପଷ୍ଟ ଭାଷା ଓ ସହଜ ଢାଞ୍ଚାରେ ସେକ୍ରେଟାରୀ ଯାହା ଲିଖିତ କଲେ ସେଥିରୁ ଅନୁମାନ କରାଯାଇପାରୁଛି, ତାଙ୍କର ଶ୍ରୀମତୀ ଅବଲୀଳାକ୍ରମେ ଉପରିସ୍ଥ ଉଚ୍ଚକର୍ମକର୍ତ୍ତାଙ୍କର ଦୃଷ୍ଟି ଆକର୍ଷଣ କରିପାରିଛି । ସେମାନଙ୍କର ଦୟା ହେଲେ ପ୍ରଚଳିତ ସଂସାରରେ ଅସମ୍ଭବକୁ ସମ୍ଭବ କରାଯାଇପାରିବ । ଗଣ୍ଡି ମଧ୍ୟ ଡିଗି ଲଙ୍ଘନ କରି ଧାରିବ, ଅଲଭ୍ୟ କିଛି ରହିବ ନାହିଁ । ଡିରେକ୍ଟର ମହାଶୟ ସମ୍ପୂର୍ଣ୍ଣ ଅନୁଭବ କରି ପାରିଲେ ଯେ ସେକ୍ରେଟାରୀ ଯେଉଁ ନାରୀର ସୌନ୍ଦର୍ଯ୍ୟ ବିଷୟରେ ଦୃଷ୍ଟି ଦିଅନ୍ତି, ତାହା ଆଦୌ କାମଗନ୍ଧହୀନ ନୁହେଁ । ସ୍ୱର୍ଗକୁ ନିଃଶ୍ରେଣୀ ନାହିଁ କିମ୍ବା ଉପରିସ୍ଥ ଅଫିସରଙ୍କୁ ଉତ୍ତର ନାହିଁ । ଅଧ୍ୟକ୍ଷ ମଧ୍ୟ ବୁଝି ପାରିଲେ ଯେ ଯେଉଁ ତନାଘନା ତଦନ୍ତ-କାର୍ଯ୍ୟ ଆରମ୍ଭ ହୋଇଛି, ତାହା ମୂଳରେ ଯେ ନଳିନୀକାନ୍ତଙ୍କ ପରିବାର ବର୍ଗ ନାହାନ୍ତି କିଏ କହି ପାରିବ ? ସେମାନେ ଯେଉଁ ଧରଣର ଲୋକ, ସେଥିରେ ସଜମାଛରେ ପୋକ ପକାଇଦେବା ସେମାନଙ୍କ ପକ୍ଷରେ ନିମିଷ ମାତ୍ର ।

ଉପରିସ୍ଥ ଅଫିସରମାନେ ନିୟମିତ ଗସ୍ତଖର୍ଚ୍ଚ ଓ ଭତ୍ତା ସରକାରଙ୍କ ଖଜଣା-ଖାନାରୁ ପାଉଥିଲେ ସୁଦ୍ଧା ସେମାନଙ୍କ ରହଣୀ ଓ ଆଦର ଆପ୍ୟାୟନ ପାଇଁ ନିମ୍ନସ୍ଥ କର୍ମଚାରୀମାନଙ୍କୁ ନିଶ୍ଚିତ ଭାବରେ ମୁଣ୍ଡ ଖଞ୍ଚା କରିବାକୁ ହୋଇଥାଏ । ବରାଦ ମାଫିକ ଯଦି ଚର୍ବ୍ୟ ଚୋଷ୍ୟ ଲେହ୍ୟ-ପେୟର ବିଧିବଦ୍ଧ ବ୍ୟବସ୍ଥା କରାଯାଇ ନ ପାରିଲା କିମ୍ବା ଯଦି ସେଥିରେ ଅଜ୍ଞାନତ କୌଣସି ପ୍ରକାର ଖିଲାପ ଘଟିଲା, ତାହାହେଲେ ଅଧସ୍ତନ କର୍ମଚାରୀ ପ୍ରମାଦ ଗଣିବା ସୁନିଶ୍ଚିତ । ଆଜିକାଲିକାର ସମାଜ ବ୍ୟବସ୍ଥା ମଧ୍ୟରେ ସର୍ବଦା ପ୍ରତ୍ୟକ୍ଷ କରାଯାଉଛି ଯେ ନୈତିକ ଅବକ୍ଷୟତା ଆସି ପହଞ୍ଚିଲାଣି ଚରମ ସୋପାନରେ । ସବୁଠାରୁ ଦୁର୍ଭାଗ୍ୟ ହେଉଛି ଅଫିସର ସମ୍ପ୍ରଦାୟ ଏହି ଅଧୋଗତି ସହିତ ଆଦର୍ଶବିହୀନ ଭାବେ ଜଡ଼ିତ । ଯେଉଁ ଅଧ୍ୟକ୍ଷଙ୍କର ଅସାଧୁ କାର୍ଯ୍ୟ କଳାପ ବିରୁଦ୍ଧରେ ହୋଇଥିବା ଦୁର୍ନୀତି ଅଭିଯୋଗର ତଦନ୍ତ ପାଇଁ ମନ୍ତ୍ରିଆ ମନ୍ତ୍ରିଆ ଅଫିସର ତିନିଜଣ ଯାଇଁ ପହଞ୍ଚିଥିଲେ, ସେମାନଙ୍କର ରହଣୀ ନିମନ୍ତେ ନିକଟସ୍ଥ ପାନ୍ଥନିବାସର ଶୀତତାପ ନିୟନ୍ତ୍ରିତ ପ୍ରକୋଷ୍ଠକୁ ଅଧ୍ୟକ୍ଷ ରିଜର୍ଭ କରି ସେଠାରେ ପାନ, ଭୋଜନ, ବିଶ୍ରାମ ଇତ୍ୟାଦି ଆପ୍ୟାୟନର ଯଥାଯଥ ବ୍ୟବସ୍ଥାରେ ଆଦୌ ତ୍ରୁଟି କରି ନ ଥିଲେ । ସେଥିପାଇଁ ଯେତେ ଦୂର ଜଣାଯାଏ ସହସ୍ରାଧିକ ଅର୍ଥବ୍ୟୟ ହୋଇଥିଲା । କର୍ମବ୍ୟସ୍ତ ଜୀବନ ମଧ୍ୟରେ ତତ୍‌କ୍ଷଣିକ ବିନୋଦନ ପାଇଁ ଏହି ଯେଉଁ ବ୍ୟବସ୍ଥା କରାଗଲା, ତାହା ଅଧ୍ୟକ୍ଷ ମହୋଦୟ କିପରି ଭାବରେ କେଉଁଠାରୁ ବ୍ୟୟ କଲେ, ସେ ସମ୍ବନ୍ଧରେ ଖବର ନେବା ପାଇଁ ସୁଦ୍ଧା ବାସ୍ତବବୋଧ ସମ୍ପନ୍ନ ଆତ୍ମ-ସଚେତନ ଅଫିସରମାନେ ଉଚିତ ମନେକରି ନ ଥିଲେ । ବରଂ ବିଦାୟ ପୂର୍ବରୁ ଏଭଳି ଏକ ବାତାବରଣ ସୃଷ୍ଟି କରିଥିଲେ, ଯେଉଁଥିରୁ ଜଣାଯିବ ଯେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଦିଗରେ ଯଥୋଚିତ ଅବଦାନ ଦେବାକୁ ସ୍ୱୟଂ ସେକ୍ରେଟାରୀ ବି ସମର୍ଥ ହୋଇଛନ୍ତି । ସେ ଅନୁକୂଳ କ୍ଷେତ୍ର ପ୍ରସ୍ତୁତ କରିବା ଭଳି ବିଶ୍ୱାସ ଜନ୍ମାଇବା ପାଇଁ ଅଧ୍ୟକ୍ଷଙ୍କୁ ବିଶେଷ

ସ୍ୱରରେ କହିଥିଲେ—"ଯେଉଁ ଅଧ୍ୟାପକମାନେ ବିଶୃଙ୍ଖଳାଚରଣ କରି ମିଥ୍ୟାଭିଯୋଗମାନ ଆଣିଛନ୍ତି, ସେମାନଙ୍କ ସମ୍ବନ୍ଧରେ ସ୍ପଷ୍ଟ ମତାମତ ବ୍ୟକ୍ତ କରନ୍ତୁ ।"

ଅଧକ୍ଷ ମହୋଦୟ ସିମିତ ଶ୍ୱେଦାଇ ଶ୍ୱେଦାଇ ଉତ୍ତର ଦେଇଥିଲେ—"ସେମାନେ ପ୍ରଚଳିତ ନିୟମକାନୁନ ମାନି ଚାଲିବାକୁ ପ୍ରସ୍ତୁତ ନୁହଁନ୍ତି ସାର୍ ।"

ଏକକାଳୀନ ତିନୋଟି ତୁଣ୍ଡରୁ ଏହି ଗୋଟିଏ ପ୍ରଶ୍ନ ବାହାରିଗଲା— "କାହିଁକି ?"

—"ସେମାନେ କହୁଛନ୍ତି ସାର୍, ଟଙ୍କା ଫୋପାଡ଼ି ଦେଲେ ଭୁବନେଶ୍ୱରରେ ଥିବା ଅଫିସରମାନେ କୁତ୍ତିଭଳି ଲାଙ୍ଗୁଳ ହଲାଇବେ । ଗଣତାନ୍ତ୍ରିକ ସ୍ତରରେ ସଂଖ୍ୟାଧିକ କର୍ମୀ-ମାନଙ୍କ ଇଚ୍ଛା ଓ ରୁଚି ଅନୁଯାୟୀ କାମ ହେଉଛି ସରକାରୀ ନିୟମ ଓ ଶୃଙ୍ଖଳା ମଧ୍ୟରେ । ଦେଶରେ ଯେଉଁଠି ବିପଥଗାମୀ, ନିଶାଶକ୍ତ, ଉଦ୍‌ଭ୍ରାନ୍ତ ଅଫିସରଙ୍କ ସଂଖ୍ୟା ଦିନକୁ ଦିନ ବଢ଼ୁଛି, ସେଠାରେ ସେମାନେ ଆଉ ସାତ୍ତ୍ୱିକ ଚିନ୍ତାଧାରାରେ ଚାଲିବା ସମ୍ଭବ ହେଉନାହିଁ ।" କୌଣସି ପ୍ରକାର ପ୍ରତାରଣା କରି ସମସ୍ତ ପ୍ରକାର କ୍ଷୟକ୍ଷତିର ସମ୍ଭାବନାକୁ ଏଡ଼ାଇଦେବା ଉଦ୍ଦେଶ୍ୟରେ ସ୍ପଷ୍ଟଭାବରେ କହିଲେ ଅଧକ୍ଷ ମହାଶୟ ।

ଏହି କଥା କେଇପଦ ଭିତରେ ଭିତରେ ସେକ୍ରେଟାରୀ ମହୋଦୟଙ୍କ ଛାତି କମ୍ପାଇଥିଲା । ଶ୍ରେଷ୍ଠ ମୂହୂର୍ତ୍ତରେ ବଡ଼କଥା ! ମାଡ଼ି ଯାଉଥିବା ନଈବଢ଼ି ପାଣିକୁ ହଠାତ୍ ବାନ୍ଧିଦେଲେ ଯେଉଁପରି ତାହା ଏକ ଅସ୍ୱସ୍ତିକର ଅବସ୍ଥାରେ ଉପନୀତ ହୋଇଥାଏ, ସେହିପରି ତାଙ୍କର ପ୍ରତି ସ୍ନାୟୁକୋଷ ଓ ଶିରା ପ୍ରଶିରାରେ ଦେଖା ଦେଇଥିଲା ଉଦ୍‌ବେଳନ । ତାଙ୍କର ଚିନ୍ତା, ଚେତନା ଓ କଳ୍ପନାର ପରିଧି ଶାସନ ତର୍ଜନରେ ପ୍ରାବଲ୍ୟ ମଧ୍ୟରେ ଆଉ ଉଦାର, ସରଳ ଓ ନିଷ୍ଠାପର ନିଷ୍ପାପମୟ ହୋଇ ରହି ପାରିଲା ନାହିଁ । ବରଂ ସେ ଗାଡ଼ି ଷ୍ଟାର୍ଟ ଦେଲେ ରୁଦ୍ଧମୁଖ ଅଗ୍ନିଗର୍ଭ ଆଗ୍ନେୟଗିରିର ଜ୍ୱାଳା ବହନ କରି । ଅଗ୍ନି ଉଦ୍‌ଗାର ନାହିଁ, କିନ୍ତୁ ଅସହନୀୟ ଉତ୍ତାପ ସୃଷ୍ଟିରେ ଘୂରିଆସୁଥିବା ବିରାଟ ଘୂର୍ଣ୍ଣି ହୋଇଗଲା । ତାଙ୍କ ଗାଡ଼ି ପଛେ ପଛେ ଅନ୍ୟ ଦୁଇଟି ଗାଡ଼ିର ଚକା ମଧ୍ୟ ଗଡ଼ିବାକୁ ଆରମ୍ଭ କରିଦେଲା । ତିନି ଅଫିସରଙ୍କ ଲକ୍ଷ୍ୟ ଗୋଟିଏ, ତୃଷ୍ଣା ଗୋଟିଏ ଓ ସନ୍ଧାନ ମଧ୍ୟ ଗୋଟିଏ । ଏଣୁ ଏକ ନୀରବ ସଙ୍କେତବାହୀ କଥୋପକଥନ ସେମାନଙ୍କ ମଧ୍ୟରେ ହୋଇଗଲା ଶବ୍ଦମାନ ଅଧକ୍ଷ ଓ ଅନ୍ୟମାନଙ୍କ ଅଗୋଚରରେ ।

॥ ତିନି ॥

ଠିକ୍ ଏହି ଘଟଣାର ଦୁଇଦିନ ପରେ ଅଧ୍ୟାପକ ମଣିକାନ୍ତ ଓ ଅଧ୍ୟାପିକା ଗିରିଜା ଦେବୀ ଯାଇ ଅସ୍ୱାଭାବିକ ଭାବେ ଉପସ୍ଥିତ ହୋଇଥିଲେ ସେକ୍ରେଟାରୀଙ୍କ ବାସଭବନରେ । ସାଧାରଣ ସୁଖ-ଦୁଃଖ, କଥା ବାର୍ତ୍ତା ପରେ ଅଧ୍ୟାପକ ମଣିକାନ୍ତ ନିଜର ଉଦ୍ଦେଶ୍ୟ ଅମ୍ଳାନ

ବଦନରେ ବ୍ୟକ୍ତ କରିଥିଲେ—"ସାର୍ ! ମୋର ଏକ ଜରୁରୀ କାମ ଥିବାରୁ ମୁଁ ଆଜି ଟିକେ କଲିକତା ଯାଉଛି । ଆପଣଙ୍କର ଯଦି ଆପତ୍ତି ନ ଥାଏ, ଆଜି ରାତିଟି କୌଣସିମତେ ଗିରିଜା ଆପଣଙ୍କର ଏଠାରେ କଟାଇ ଆସନ୍ତା କାଲି ସକାଳ ଗାଡ଼ିରେ ବାହୁଡ଼ି ଯିବ କର୍ମକ୍ଷେତ୍ରକୁ । ମୋର କଲିକତାରୁ ଫେରୁ ଫେରୁ ଦିନ ଦୁଇଟା ବିଳମ୍ବ ଘଟିପାରେ ।"

—ହଁଉ ଠିକ୍ ଅଛି । ମୋ ପରିବାର ସଂକ୍ଷିପ୍ତ । ମାନେ ମୋର ଚପସ୍ୱୀ, ଆଉ ମୁଁ ! ଏଡ଼େ ବଡ଼ ଘରଟାରେ ଆମେ ଦୁଇଟା ପ୍ରାଣୀ ରହୁଛୁ । ପୁଅ, ଝିଅ, ସମସ୍ତେ ନିଜ ନିଜ ଗୋଡ଼ରେ ଠିଆ ହୋଇ ଗଲେଣି । ଜୀବନର ଆରମ୍ଭ ବେଳେ ଯେତେବେଳେ ସବରେଜିଷ୍ଟ୍ରାର ଥିଲି, ସେତେବେଳେ ଆଇ.ଏ.ଏସ୍. ପରୀକ୍ଷା ଦେଉଥିଲି; ଆଉ ଥିଲି ବ୍ୟାଚେଲର । ବର୍ତ୍ତମାନ ଜୀବନର ଅନ୍ତିମ ପର୍ଯ୍ୟାୟରେ ହୋଇଗଲିଣି ବ୍ୟାଚେଲର । ଏହି ଦୁଇ ଅବସ୍ଥା ମଧ୍ୟରେ ଦୀର୍ଘ ତିରିଶ ବର୍ଷର ବ୍ୟବଧାନ । ସେହି ଅନୁସାରେ ଆକାଶ-ପାତାଳ ପ୍ରଭେଦ । ଯଦି ଗିରିଜା ଦେବୀଙ୍କର କୌଣସି ପ୍ରକାର ଅସୁବିଧା ନ ହୁଏ ତେବେ ମୋର ଆପତ୍ତି କରିବାର କଣ ଅଛି ?—କହିବା ସଙ୍ଗେ ସଙ୍ଗେ ସେକ୍ରେଟାରୀଙ୍କର ଛାତିର ସ୍ପନ୍ଦନ ଦ୍ରୁତ ହୋଇ ମିଶିଗଲା ରକ୍ତରେ । ସେ ସ୍ୱର ପାଖକୁ ଥରେ ସୂକ୍ଷ୍ମ ଦୃଷ୍ଟି ବୁଲାଇ ଆଣି ଚାହିଁଲେ ଗିରିଜା ଦେବୀଙ୍କ ଅଡ଼କୁ ।

ଗିରିଜା ଦେବୀ ଭୀଷଣ ଲଜ୍ଜାବୋଧ କଲେ । ସାରା ଦେହଟା ତାଙ୍କର ଝାଳେଇ ଗଲା । ଲଜ୍ଜାବନତ ମୁହଁରେ ସେ ଅପାଙ୍ଗ ହାଣିଲେ ମାତ୍ର । ସଙ୍ଗେ ସଙ୍ଗେ ଅଧ୍ୟାପକ ଶଶୀକାନ୍ତ କହିଲେ—"ନାହିଁ ସାର, ତା'ର ଆଉ ଆପତ୍ତି କ'ଣ ଅଛି ? କେବଳ ଆପଣ ଆମଭଳି ପାହାଚ ତଳର ଘାସକୁ ଯେ ନିଜ ଦେଉଳ ଭିତରେ ସ୍ଥାନ ଦେବାକୁ ଏକମତ ହୋଇଛନ୍ତି, ତାହା ଆମ ପାଇଁ ଆଶୀର୍ବାଦ ।"

କଥା ଶେଷ ହେବା ମାତ୍ରେ ସେ ଅଣ୍ଟାଠାରୁ ନବେ ଡ଼ିଗ୍ରୀ କୋଣ କରି ସେକ୍ରେଟାରୀଙ୍କୁ ନମସ୍କାର ଜଣାଇ ବିଦାୟ ନେଲେ । ଫାଟକର ବୋଗୁନଭିଲି ଗଛର ମେହେଣ୍ଡିବାଡ଼ ଟପି ବାହାର ପର୍ଯ୍ୟନ୍ତ ବାହାରି ନ ଯାଉଣୁ ଅଧ୍ୟାପିକା ଗିରିଜା ଦେବୀ ନିଜର ଷ୍ଟ୍ରେଟ ପ୍ଲାଷ୍ଟିକ୍ ଝୁଡ଼ିଟି ଉଠାଇ ଧରି ସଲ୍ଲଜ ଭଙ୍ଗୀରେ ଅଣ୍ଟା ବଙ୍କାଇ ବଙ୍କାଇ ଚାଲିଲେ ଘର ଭିତରକୁ । ଗଭୀର ଉନ୍ମାଦନାରେ ଚଞ୍ଚଳ ହୋଇ ଉଠିଲା ପ୍ରୌଢ଼ ସେକ୍ରେଟାରୀଙ୍କର ମନ । ଶିକାର ଆପେ ଆପେ ଆସି ଯିଶିଡ଼ି ଜାଲରେ ଧରା ଦେଲା ଭଳି କଥା । ଏଭଳି ଏକ ଦୁର୍ଲଭ ମୁହୂର୍ତ୍ତକୁ ସେ ବହୁ ଦିନରୁ ଆସ୍ୱାଦନ କରି ନ ଥିଲେ ।

॥ ତିନ ॥

ଏହା ପରଠାରୁ ନାନାପ୍ରକାର ଆଳ ଦେଖାଇ ଆଠ ଦିନେ କି ଦଶ ଦିନେ ଅଧ୍ୟାପିକା ଗିରିଜା ଦେବୀ ଆରମ୍ଭ କରି ଦେଉଥିଲେ ଭୁବନେଶ୍ୱରଯାତ୍ରା । ପ୍ରତ୍ୟେକ ଥର ଅତିଥି

ହେଉଥିଲେ ସେନେଟାଗ୍ରଙ୍କର । ପ୍ରତ୍ୟେକ ଥର ସେନେଟାଗ୍ର ପଗ୍ଚରୁଥିଲେ—"ତମର ପିଲମାନେ କାହାନ୍ତି ?"

ପ୍ରତ୍ୟେକଥର ସେହି ମାମୁଲି ଉତ୍ତର ମିଳେ—"ପିଲମାନେ ତାଙ୍କ ଅଜାଙ୍କ ପାଖରେ କମ୍ବା ବାପାଙ୍କ ପାଖରେ ରହିବାକୁ ସୁଖ ପାଆନ୍ତି । ଯେତେ ବିଳମ୍ବରେ ଫେରିଲେ ମଧ୍ୟ ସେମାନେ ମୋତେ ଖୋଜନ୍ତି ନାହିଁ ।"

ପୁଣି ପ୍ରଶ୍ନ ହୁଏ—"ଝିଅଟି ତ ସାନ ! ସେ ହୁଏତ ମାଆକୁ ଖୋଜିପାରେ । ଅନ୍ତତଃ ତାକୁ ସାଙ୍ଗରେ ଆଣିବା ଉଚିତ ଥିଲା ।"

ସେହିଭଳି ମଧ୍ୟ ଉତ୍ତର ମିଳେ—"ନାହିଁ ସାର୍, ସେ ମୋତେ ଆଦୌ ଖୋଜେ-ନାହିଁ । ସବୁ ପିଲଙ୍କୁ ପିଲ ଦିନରୁ ଫିଡ଼ିଂ ବୋତଲର ଅଭ୍ୟାସ କରାଇଦେଇଛୁ । ମାଆର କ୍ଷୀର ପ୍ରତି ସେମାନଙ୍କର ଲାଳସା ନ ଥାଏ । ପ୍ରଥମ କଥା ସ୍ତନର କରିବା ଦ୍ୱାରା ପିଲଙ୍କୁ କାନ୍ଧରେ ବାନ୍ଧି ବୁଲିବା ସମ୍ଭବ ନୁହେଁ । ଦ୍ୱିତୀୟରେ ଆଜିକାଲି ମାଆମାନେ ପିଲଙ୍କୁ କ୍ଷୀର ଖୁଆଇ ନିଜ ଶରୀରର ସେପ୍‌କୁ ନଷ୍ଟ କରିବାକୁ ଆଗ୍ରହୀ ନୁହନ୍ତି ।"

ଏଥର ରସିକତା କରି ସେନେଟାଗ୍ର ସାହେବ କହନ୍ତି—"ଆଗ କାଳରେ ରାଜା ଜମିଦାରଙ୍କ ଘରେ ଏଥିପାଇଁ ଦୁଧ ମାଆ ଯୋଗାଡ଼ କରି ରଖୁଥିଲେ । ଏବ କାଳକୁ ସେ ସ୍ଥାନ ଅଧିକାର କରିଛି ଫିଡ଼ିଂ ବୋତଲ ଓ ପ୍ଲାଷ୍ଟିକ୍ ଚୁଚୁମାଟିଏ ।"

ଉଦ୍ଧାରିକାଳ ମଧ୍ୟରେ ବିପତ୍ନୀକ ସେନେଟାଗ୍ରଙ୍କର ସହିତ ଗିଣତା ଦେବୀ ଜଣେ ଦେହ ପସାରଣୀ ସାଜି ବେଡ଼କୁ ଯାଆନ୍ତି କୋଣାର୍କ, ପୁରୀ କମ୍ବା ନନ୍ଦନକାନନରେ । କେଉଁଠି ଭଗ୍ନୀ ବାଳା, କେଉଁଠି ଶକୁନ୍ତଳା, କେଉଁଠି ଜୁଲିଏଟ୍, କେଉଁଠି ମଜ୍ନୁନ୍ । ସେଠାରେ ଅବସର ବିନୋଦନ ନିମନ୍ତେ ଯେଉଁ ସୁନ୍ଦର ବ୍ୟବସ୍ଥା ଥାଏ, ତାହା ହିଁ ହୋଇଯାଏ କେଳପୁର । ନିଜ ପୁରୁଷର ସମର୍ଥନରେ ଯେଉଁ କ୍ଷୀଣତମ ସମ୍ପର୍କ ଦିନେ ଗୋଟିଏ ଘର ପାଇଁ ସ୍ଥାପିତ ହୋଇଥିଲା, ତାହା ଏବେ ବିକଶିତ, ପଲ୍ଲବିତ, ବିବର୍ଦ୍ଧିତ, ସମ୍ପ୍ରସାରିତ ଓ ରୂପାନ୍ତରିତ ହୋଇ ଏହିଭଳି ଅବସ୍ଥାରେ ଆସି ପହଞ୍ଚିଛି । କେଉଁ ଏକ ଅନ୍ତରାଳବର୍ତ୍ତୀ ଆକର୍ଷଣ ସୂକ୍ଷ୍ମ ଅନ୍ତର୍ଲୀନ ଦୂରଗତ ବଂଶୀଧ୍ୱନି ଭଳି ଉଭୟଙ୍କୁ ଅଜ୍ଞାନ-ଭାବେ ପରସ୍ପର ପ୍ରତି ଆକର୍ଷିତ କରାଇ ପାରିଛି ତାହା ସାଧାରଣରେ ବୋଧଗମ୍ୟ ନୁହେଁ । କିନ୍ତୁ ସାଧାରଣରେ ଜଣାଶୁଣା ହୋଇଗଲାଣି ଯେ ଦୁଇଟି ସାପ ଭଳି ଉଭୟ ପରସ୍ପରକୁ ଗିଳିବାକୁ ଆରମ୍ଭ କରି ଦେଇଛନ୍ତି ।

କଥାଟା ସ୍ୱରକାନ୍ତର ବନ୍ଧୁମାନ ଭିତରେ ଆଉକି ନ ରହି ବେଶୀ ପ୍ରଘଟ ହେଉଛି ସେନେଟାଗ୍ର ସାହେବଙ୍କର ଡ୍ରାଇଭର ଦ୍ୱାରା । ସେ ସବୁ ଜାଣେ, ସବୁ ଠଉର କରେ ।

ଉଭୟଙ୍କୁ ସେ ଗାଡ଼ିରେ ବସାଇ ବିଭିନ୍ନ ସ୍ଥାନକୁ ନେବା ଆଣିବା କରେ । ନୈଶ୍ୟ-ଭୋଜିପରେ ସୁଦନୋବସ୍ତ ହୁଏ ତା'ର ଉପସ୍ଥିତିରେ । ଏପରିକି ବେଳେବେଳେ ଦୂରକୁ ଯାଇ ନ ପାରିଲେ ସର୍ବନିମ୍ନ ବ୍ୟବସ୍ଥା ପାଇଁ ଝଣ୍ଟିଗିରି ପାଖରେ ଥିବା ସାହେବଙ୍କର ଗେଷ୍ଟିଙ୍ଗ କାରଖାନା ପର୍ଯ୍ୟନ୍ତ ଗାଡ଼ି ନେଇଯାଇଁ ଡ୍ରାଇଭରକୁ ବ୍ୟବସ୍ଥା କରିବା ପାଇଁ କୁହାଯାଏ ।

ଅଫିସରଙ୍କର ଏହି ଇନ୍ଫେସମେଣ୍ଟ୍‌ର କଥାଗୁଡ଼ାକ ଶୁଣିବାକୁ ଜଘନ୍ୟ ହେଲେ ମଧ୍ୟ ନିରୋଳା ସତ୍ୟ । ଏହି ପୃଥିବୀରେ ଦୁଇଟି ଜିନିଷର ଅଭାବ ମନେ ହୁଏ ଅସହ୍ୟ ବୋଲି । ଗୋଟିଏ ହେଉଛି ପାନୀସ୍ୱଜଳ ଓ ଅନ୍ୟଟି ହେଉଛି ଶଯ୍ୟାସଙ୍ଗିନୀ । ଉଭୟ-ମଧ୍ୟରୁ କେଉଁଟି ଅଧିକ ଆବଶ୍ୟକ, କେଉଁଟି ଅଧିକ ଅପରିହାର୍ଯ୍ୟ ତାହାର ତୁଳନା କରି କହିବା କଠିନ । ସେକ୍ରେଟାରୀ ସାହେବଙ୍କର ବିପତ୍ନୀକ ଜୀବନ ଯେଉଁଭଳି ଅସହନୀୟ ପୀଡ଼ାରେ ପୀଡ଼ିତ ମନେ ହେଉଥିଲା, ତାହାକୁ ଅନେକ ପରିମାଣରେ ପ୍ରଶମିତ କରି-ପାରିଛି ଗିରିଜା ଦେବୀଙ୍କର ସାହଚର୍ଯ୍ୟ । ତାଙ୍କ ଆଗରେ ଗିରିଜା ଦେବୀ ଯେପରି ଏକ ଆଶ୍ଚର୍ଯ୍ୟ ସୃଷ୍ଟି । ଦେହରେ ଯେପରି ବିଚ୍ଛୁରିତ କାମନାର ବନ୍ୟ ସୌନ୍ଦର୍ଯ୍ୟ । ତିନି ତିନୋଟି ପିଲାର ମାଆ ହୋଇ ସୁଦ୍ଧା ବର୍ତ୍ତୁଳାକାର ସୁସ୍ପଷ୍ଟ ବକ୍ଷ ଓ ଜଘନ ତାହାଙ୍କୁ ମାନବୀ ନ କରି ଅପ୍‌ସରୀର ଆକୃତି ଦେଇଛି । ସତେ କି ସେ ମର୍ତ୍ତ୍ୟଲୋକକୁ ଆସିଛନ୍ତି ନର୍ମଲୀଳାର ଅକୁଣ୍ଠ ତାଡ଼ନାରେ । ପତ୍ନୀ ବିୟୋଗ ପରଠାରୁ ଏକାଧିକ ନାରୀ ପ୍ରେମଲୀଳାର ପରିଚୟ ପାଇ ସୁଦ୍ଧା ସେକ୍ରେଟାରୀଙ୍କ ପ୍ରୌଢ଼ ପ୍ରାଣର ସଦା ଜାଗ୍ରତ ସମ୍ଭୋଗ ଲିପ୍‌ସା ପ୍ରଶମିତ ହୋଇପାରି ନ ଥିଲା କିମ୍ବା ପାରିନାହିଁ । ଅବଶ୍ୟ ଗିରିଜା ଦେବୀ ତାଙ୍କର ବର୍ତ୍ତମାନ ସାଧ୍ୱୀ ଶିରୋମଣି । ତଥାପି ନିତ୍ୟ ନୂତନ ଲଳନା-ଶିକାର ପାଇଁ ସେ ଅନୁକ୍ଷଣ ବ୍ୟଗ୍ର । ଚାକିରିର ଶେଷ ପ୍ରାନ୍ତରେ ଓ ପ୍ରୌଢ଼ତ୍ୱର ଶେଷ ସୋପାନରେ ପହଞ୍ଚିବାକୁ କେତେଦିନ ଆଉ ବାକି ରହିଲା ? ଏଣୁ ବର୍ତ୍ତମାନର ସ୍ଥିତିଟାକୁ ଅଧିକ ଗତିଶୀଳ, ଅଧିକ ହୃଦୟସ୍ପନ୍ଦିତ, ଅଧିକ ମାଦକତାପୂର୍ଣ୍ଣ, ଅଧିକ ଉପଭୋଗ୍ୟ କରାଯିବା ଦରକାର ।

॥ ତିନି ॥

ଅଧ୍ୟାପିକା ଗିରିଜା ଦେବୀ ନିଜର ସ୍ୱାମୀ ଓ ପରିବାରର ସ୍ୱାର୍ଥ ଦୃଷ୍ଟିରୁ ଯେଉଁ ତ୍ୟାଗ ସ୍ୱୀକାର କରି ପାରିଛନ୍ତି, ତାହା କେତେଜଣ ମହିଳା କରିପାରିବେ ? ଏହି କଥାଟିକୁ ଯଦି କେତେକ ପରିମାଣରେ ସାର୍ବଜନୀନ କରାଯାଇପାରେ, ତେବେ କଥାଟା ହୋଇଯିବ ଆଧୁନିକ ଚଳଣି । ସେହି ଅନୁସାରେ ସେ ଦିଗରେ କିଞ୍ଚିତ ବୁଦ୍ଧି ଖେଳାଇ ବ୍ୟବସ୍ଥା କରିବାକୁ ଆଗେଇ ଆସିଲେ ଗିରିଜା ଦେବୀ । ମହିଳାଛାତ୍ରୀ ନିବାସକୁ ଥରକୁଥର ଆସି ଛାତ୍ରୀମାନଙ୍କୁ ପ୍ରଥମେ ପରଖ କରିବାକୁ ଲାଗିଲେ । ସେମାନଙ୍କର ମନ ଜାଣିବା ପାଇଁ

ନିଜ ଘରକୁ ଟି.ଭି. ଦେଖିଯିବାପାଇଁ ନିମନ୍ତ୍ରଣ କଲେ । ଟି.ଭି. ଦେଖା ସହିତ ଲଘୁ ପରିହାସ, ଖଟା, ମୁଢ଼ି, ଚନାବାଦାମ ଆଦିରେ ଛାତ୍ରୀମାନଙ୍କୁ ଆପ୍ୟାୟିତ କଲେ । ଦେଖିବୁଝି ଯେଉଁମାନେ ଅଫକୋଟରେ ଯୋଗ ଗିଳି ପାରିବେ, ଅର୍ଥାତ ବିକାର ନ ରଖି ଆତ୍ମନିବେଦନ କରି ପାରିବେ, ସେହି ଅନାଘ୍ରାତ କୁସୁମମାନଙ୍କ ମଧ୍ୟରୁ କଣ ଜଣକୁ ସାଙ୍ଗରେ ନେଇ ପହଞ୍ଚିଲେ ସେକ୍ରେଟାରୀ ସାହେବଙ୍କ କୋଠିରେ । ଦ୍ୱାପର ଯୁଗରେ କଳାକାହ୍ନୁ ମୋହନ ମୁରଲୀ ଫୁଙ୍କି ଶ୍ରୀରାଧାଙ୍କୁ ଉଚ୍ଚାଟ କରୁଥିଲେ । ଶ୍ରୀରାଧାଙ୍କ ସହିତ ଷୋଳ ସହସ୍ର ଗୋପାଙ୍ଗନା ମଧ୍ୟ କୁଳଟା ବୋଲାଇବା ପାଇଁ କୁଳ ଲଙ୍ଘନ କରିଥିଲେ । ସ୍ନେହ, ପ୍ରେମ, ପ୍ରୀତି, ବଶ୍ୟତା, ସଖ୍ୟତା ଇତ୍ୟାଦିର ମାଧ୍ୟମ ଥିଲା ମୋହନ ମୁରଲୀ ମାତ୍ର । ଆଜିକାଲି ସ୍ନେହହୀନ ବସ୍ତୁତାନ୍ତ୍ରିକତାର ଅଙ୍କପା ଭିତରେ କୁଳଗୋତ୍ର ଲଙ୍ଘନ କରିବାକୁ ପଡ଼ୁଛି ଅଫିସରମାନଙ୍କ କୁହୁକିଆ ଆକର୍ଷଣରେ, ରମଣୀମୋହନ ଚେହେ-ସରେ, କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥ ସିଦ୍ଧି ଆଶାରେ ।

ଗିରିଜା ଦେବୀଙ୍କ ତରଫରୁ ସେମାନଙ୍କୁ ବାରମ୍ବାର ଉପଦେଶ ଦିଆ ହୋଇଥାଏ ସହଜ ଓ ସରଳ ହେବା ପାଇଁ । ଯଦି ଇଚ୍ଛା ନ ହୁଏ ତେବେ ଆନନ୍ଦ ଦେବାପାଇଁ ଅଭିନୟ କରିବାକୁ ପଡ଼ିବ । ବିଛଣାରେ ଆଖି ବୁଜି ପଡ଼ି ରହିବା ହିଁ ସବୁଠାରୁ ଉତ୍ତମ ପନ୍ଥା । ଝଡ଼ ଆସିବ, ଦେହ ଉପର ଦେଇ ବହିଯିବ । ସେତିକି ସମ୍ଭାଳି ନେଇ ପାରିଲେ କଛେପୁଅ ବାର । ଶ୍ରେଷ୍ଠ ବଡ଼, ଶୁଚି ଅଶୁଚି, ଉଚ୍ଚ ନୀଚ, ସାଧୁ ଅସାଧୁ, ପଣ୍ଡିତ ମୂର୍ଖ, ଭଦ୍ର-ଅଭଦ୍ରର ପ୍ରଶ୍ନ ଏଠାରେ ଉଠେନାହିଁ । ସମଭାବାପନ୍ନ ହେବା ଉଚିତ । ସାମ୍ୟୋସ୍ଥିତ । ପୁରାତନ ସମାଜର ଶୃଙ୍ଖଳା ଭାଙ୍ଗିଲେ, ଯେତେ ଗୁଡ଼ାଏ ଭିତ୍ତିଗତ ମୂଲ୍ୟ ରହିଛି ତାହାକୁ ନ ଭାଙ୍ଗିଲେ, ଆଧୁନିକ ନାରୀର ସମାଜ ପ୍ରତି ଯେଉଁ କର୍ତ୍ତବ୍ୟ ତାହା କରିଯାଇ ପାରିବ ନାହିଁ । ସତୀତ୍ୱ ଓ ସ୍ୱାମୀ ହେଉଛି ପ୍ରାଚୀନ ସାମାଜିକ ଶୃଙ୍ଖଳାର ଏକ ପ୍ରଚ୍ଛନ୍ନ ଶୃଙ୍ଖଳ । ପ୍ରଥମେ ଏହି ମୂଲ୍ୟବୋଧକୁ ନଷ୍ଟ କରିଦେବା ଆବଶ୍ୟକ । ଆଧୁନିକ ଭାଗବତର ବାଣୀ ହେଉଛି—'ଚର୍ମଘର୍ଷଣେ ନାହିଁ ଦୋଷ, ସୁଜନେ ନ କରିବ ରୋଷ ।'

ଏହି ଯୋଜନା ପଛରେ ଥାଏ ବିଧିବଦ୍ଧଭାବେ ପ୍ରଲୋଭନ । ଉତ୍ତମ ଶ୍ରେଣୀରେ ଉତ୍ତୀର୍ଣ୍ଣ କରାଇ ଦେବା ପାଇଁ, ଉତ୍ତୀର୍ଣ୍ଣ ହେଲା ପରେ ଉତ୍ତମ ଚାକିରି ଇତ୍ୟାଦି ଯୋଗାଇ ଦେବାର ଦୁର୍ବାର ଆକର୍ଷଣ । ମଞ୍ଜୁ, କବିତା, ଲିଲି, ଡଲି, ନିରୂପା ଓ ସ୍ୱରୂପା ଇତ୍ୟାଦି ଏଣିକି ବିଭିନ୍ନ ସମୟରେ ବିଭିନ୍ନ ଆଳରେ ଗିରିଜା ଦେବୀଙ୍କ ସହିତ ନିୟମିତ ସହଯାତ୍ରିଣୀ ହୋଇଗଲେ ଓ ପତଙ୍ଗଭଳି ଝାସ ଦେବାକୁ ଲାଗିଲେ କାମନାର ଅଗ୍ନି ଶିଖାରେ । ଫେରିଲା ବେଳକୁ ସାଙ୍ଗରେ ଆଣିଲେ ଦାମିକା ଶାଢ଼ୀ, ଦାମିକା ଗହଣା ଓ ଅଙ୍ଗରାଗ ପ୍ରଭୃତି ଛାତ୍ରୀ ନିବାସକୁ । ଖୋଲାଛାଡ଼ ପରିବାରରୁ ଜଣାପଡ଼ୁଛି ଗିରିଜା ଦେବୀଙ୍କର

ଟୁଙ୍କୀର ପାଣ ହେବା ପାଇଁ ବେଳେବେଳେ ଗ୍ରହୀମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଲାଗିଯିବା ସ୍ୱାଭାବିକ ।

ସେକ୍ରେଟାରୀଙ୍କର ହୃଦୟ ବହ୍ନାରଣୀର ସମ୍ମାନ ଯେଉଁମାନେ ପାଉଛନ୍ତି, ସେମାନଙ୍କୁ ମଧ୍ୟ ବେଳେ ବେଳେ ଡିରେକ୍ଟର ଓ ଜଏଣ୍ଟ ଡିରେକ୍ଟର ଦ୍ରୁତିଙ୍କର କାମନାଗ୍ନିରେ ଆହୂତ ହୋଇ ଅଖିଳ ସୋହାଗିନୀ ହେବାକୁ ପଡ଼ୁଛି । ବର୍ତ୍ତମାନ ଦୁନିଆଁରେ ଲମ୍ପଟ, ଦୁଶ୍ଚରିତ୍ର ଆଉ ସମାଜ ବିରୋଧୀ ଲୋକଙ୍କର ପୃଷ୍ଠପୋଷକତା ଯେପରି ବ୍ୟାପୁଛି, ତାହାଠାରୁ ଅଧିକ ବ୍ୟାପୁଛି ସମାଜପାଳମାନଙ୍କ ସହାୟତା ବୋଲି ମନେହୁଏ । ଏକମାତ୍ର ବିକାରବିହୀନ ଦୈହିକ ଅସ୍ତିତ୍ୱ ବ୍ୟତୀତ ଅନ୍ୟ ସମସ୍ତ ବିଷୟ ହୋଇ ଉଠୁଛି ଧୀରେ ଧୀରେ ଅର୍ଥହୀନ, ମୂଲ୍ୟହୀନ ।

କଥାରେ ଅଛି, ଯାହାକୁ ସହାୟ 'କନ୍ୟା ଶାଶୁ, ତାର ପିଅ ଉପରେ ମଧୁ ବରଷୁ' । ଅଧ୍ୟାପିକା ଗିରିଜା ଦେବୀ ଓ ଅଧ୍ୟାପକ ଶଶୀକାନ୍ତଙ୍କର କରତଳଗତ ଅମଳକୀ କେବଳ ସେକ୍ରେଟାରୀ ହୋଇ ରହିଲେ ନାହିଁ, ବରଂ ଉପରିସ୍ଥ ଟାଣୁଆ ଟାଣୁଆ ଅଫିସରମାନେ ଗିରିଜା ଦେବୀଙ୍କ ପଣତ କାନିରେ ବନ୍ଧାହୋଇ ଝୁଲିଲେ । ସେ ଯାହା ଚାହିଁଲେ ତାହା କରି ପାରିଲେ ଓ କରାଇ ପାରିଲେ । ସବୁଠାରୁ ବଡ଼ କାମଟାଏ ଏଥର ହାସଲ କରିବାକୁ ବାହାରିଲେ । ଉପସ୍ଥିତ ଅଧ୍ୟକ୍ଷଙ୍କୁ ଦୁର୍ନୀତିଗ୍ରସ୍ତ ଓ ଦୁଶ୍ଚରିତ୍ର ବୋଲି ଚିତ୍ରିତ କରାଇ ବାଧ୍ୟତାମୂଳକ ଭାବେ ଅବସର ଗ୍ରହଣ କରାଇଦେଲେ ନିଜେ ଶଶିକାନ୍ତ ଅଧ୍ୟକ୍ଷ ଶାସନରେ ବସିଯିବେ । ଯଦି କୌଣସି କାରଣରୁ ବାଧ୍ୟତାମୂଳକ ଅବସର ଗ୍ରହଣ କାର୍ଯ୍ୟଟା ସମ୍ଭବ ନ ହେଲା, ଅନ୍ତତଃ ଅନ୍ୟତ୍ର ବଦଳି କରାଇ ଦିଆଯାଇ ପାରିବତ ! ପ୍ରଥମ ଦଫାରେ ଗିରିଜା ଦେବୀ ନିଜ ଭବିଷ୍ୟ ନିଧି ପାଣ୍ଠିରୁ ଦଶହଜାର ଟଙ୍କା ଉଠାଇ ନେଇ ସେକ୍ରେଟାରୀଙ୍କ ହାତରେ ଦେଲେ ଓ ପ୍ରସ୍ତାବଟା ଉପସ୍ଥାପିତ କରାଇଲେ । ସେକ୍ରେଟାରୀ କଣ୍ଠିତ ଗମ୍ଭୀର ହେବାର ଛଳନା କରି ସମ୍ମତିସୂଚକ ସଙ୍କେତ ଦେଲେ ମାତ୍ର—"ତମ ପାଇଁ ସବୁ କିଛି କରାଯାଇପାରେ ଗିରିଜା, ସବୁକିଛି କରାଯାଇପାରେ ।"

ଏହାପରେ ଅଧ୍ୟାପକ ଶଶିକାନ୍ତ ବାଧ୍ୟକଲେ ଶ୍ୱଶୁରଙ୍କୁ ଭବିଷ୍ୟ ନିଧି ପାଣ୍ଠିରୁ ଚଉଦ ହଜାର ଟଙ୍କା ଉଠାଇବା ପାଇଁ । ତାହା ମଧ୍ୟ ଅଚିରେ କାର୍ଯ୍ୟକାରୀ ହେଲା ଓ ଗିରିଜାଦେବୀ ସେତକ ନେଇ ଡିରେକ୍ଟର ଓ ଜଏଣ୍ଟ ଡିରେକ୍ଟରଙ୍କର ଗୁଣ୍ଡ ବନ୍ଦକରିଦେଇ କର୍ମକ୍ଷେତ୍ରକୁ ଫେରି ଆସିଲେ । ସତେ ଯିମିତି ଗୋଟିଏ ଦୁଧିଆଳି ଗାଈ । ଥରେ ଦଶହଜାର ଦୁହିଁସାରି ଆଉ ଥରକୁ ପନ୍ଦର ହଜାର ଦୁହାଁଯାଇ ପାରୁଛି । ତାହାପରେ ମଧ୍ୟ ଦୁହିଁବାର ସମ୍ଭାବନା ଅଛି । ଏତେ ଗୁଡ଼ାଏ ଟଙ୍କା ଯେତେବେଳେ ସେମାନେ ହାତରେ ଧରିଲେ, ସେତେବେଳେ ସମସ୍ତ ପ୍ରକାର ଅବୈଧ ଉପାୟ ଅବଲମ୍ବନ କରି ପ୍ରଶାସନିକ କଳକୁ ମୋଡ଼ିବା ପାଇଁ ବିଶେଷ ବିଳମ୍ବ ଘଟିଲା ନାହିଁ । ଗ୍ରେଟ ଗ୍ରେଟ

ଅର୍ଥ ସଚିବଙ୍କ ପକେଟ ଖାଲି ନ ହେଲେ ନିଜ ପକେଟର ମର୍ଯ୍ୟାଦା ବଢ଼େନାହିଁ । ସେକ୍ରେ-ଟାରୀ ସାହେବଙ୍କର କୋମଳ ନିର୍ଦ୍ଦେଶରେ ବିଶ୍ୱାସୀ ପ୍ରଭୁଭକ୍ତ ଜଏଣ୍ଟ ଡିରେକ୍ଟର ଚୁମ୍ବକ ଭଳି ବାରମ୍ବାର ଟାଣି ହୋଇ ଚାଲିଲେ ଯେକୌଣସି ଉପାୟରେ ଅଧ୍ୟକ୍ଷଙ୍କ ସର୍ବାଧିକ ଦୋଷ ଦୁର୍ବଳତା ସନ୍ଧାନ କରି କୈଫିୟତ ତଲବ କରିବା ପାଇଁ; ଗୋଟାଏ କଥାରେ କହିବାକୁ ଗଲେ ଅଡ଼ମିନିଷ୍ଟ୍ରେସନକୁ ସୁଦୃଢ଼ କରିବା ପାଇଁ । ଆଧୁନିକ କାଳରେ ଏହି ଅଡ଼ମିନିଷ୍ଟ୍ରେସନ ହେଉଛି ବ୍ରହ୍ମାଣ୍ଡଟିଏ ଭଳି ଦୁର୍ଭେଦ୍ୟ, ଯାହା ପକ୍ଷରେ ରହିଥାଏ କିଛି ଗୂଢ଼ ଅଭିସନ୍ଧିର ବାସ୍ନା ।

ଅତୀବ ବିସ୍ମୟକର ଭାବରେ ଅଧ୍ୟକ୍ଷଙ୍କର ବ୍ୟକ୍ତିଗତ ଫାଇଲ ଧୀରେଧୀରେ ମୋଟା ହେବାକୁ ଲାଗିଲା । ଏକାନ୍ତ ନିଃସ୍ୱାର୍ଥପର ଭାବରେ ସୁବ୍ୟବସ୍ଥିତରୂପେ ଯେଉଁ ଅଧ୍ୟକ୍ଷ ଦୀର୍ଘକାଳରୁ କଲେଜକୁ ଚଳାଇ ଆସୁଥିଲେ, ସେ ହଠାତ ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । ନିଜର ସର୍ବନିମ୍ନ ସମ୍ମାନ ଦୃଷ୍ଟିରୁ ବାଧ୍ୟତାମୂଳକ ଅବସର ଗ୍ରହଣ କିମ୍ବା ବଦଳି ପାଇଁ ସମ୍ପୂର୍ଣ୍ଣ ଭାରଳପତ୍ର ପ୍ରସ୍ତୁତ ହୋଇ ନ ପାରୁଣୁ ଅପମାନାହତ ଭାବେ ସେ ପରିସ୍ଥିତିରେ ନୂଆମୋଡ଼ ଆଣିଲେ । ଇଚ୍ଛାକୃତଭାବେ ଅବସର ଗ୍ରହଣ ପାଇଁ ଆବେଦନପତ୍ର ଡିରେକ୍ଟ-ରେଟ୍‌କୁ ପଠାଇ ଦେଇ ଗୋଡ଼ହାତ ଲମ୍ବାଇ ବସିଲେ ।

॥ ପାଞ୍ଚ ॥

ଅଧ୍ୟକ୍ଷଙ୍କର ଏହି ନାଟକୀୟ ସିଦ୍ଧାନ୍ତକୁ ଉପଯୁକ୍ତ ଉତ୍ସାହଜନକ ପରିସ୍ଥିତି ବୋଲି ଭାବିନେଲେ ଅଧ୍ୟାପକ ଶଶୀକାନ୍ତ । ନିଜର ଭବିଷ୍ୟନିଧି ପାଣ୍ଠିରୁ ଏକକାଳୀନ ଯେଉଁ ପଚିଶ ହଜାର ଟଙ୍କା ଘର ତିଆରି ପାଇଁ ଉଠାଇ ଆଣି ହାତରେ ରଖିଥିଲେ, ତାହାକୁ ସେକ୍ରେଟାରୀଙ୍କ କରପୁଟରେ ସମର୍ପଣ କରି ସ୍ୱସ୍ତିରେ ନିଃଶ୍ୱାସ ମାରିଲେ ! ଶିକ୍ଷାବିଭାଗ ଭଳି ଏକ ସାତ୍ତ୍ୱିକ ବିଭାଗର ସେକ୍ରେଟାରୀ ସାହେବଙ୍କର ବାହୁଚ୍ଛାୟା ତଳେ ଯେଉଁ ଦୁର୍ନୀ-ତିର ବୀଜ ଧୀରେ ଧୀରେ ଅଙ୍କୁରିତ ହେଉଥିଲା, ଏଥର ତାହା ଉତ୍କଟ ଅବସ୍ଥା ସୃଷ୍ଟି କଲା । ନିଶ୍ଚିତ ଭାବରେ ସ୍ୱମତାନୁକୂଳ ଫାଇଲ ଗଢ଼ାଇ ମନ୍ତ୍ରୀ ମହୋଦୟଙ୍କ ସ୍ୱୀକୃତି ନିମନ୍ତେ ପଠାଇ ଦେବାକୁ ଅଧିକ ବିଳମ୍ବ ଘଟିଲା ନାହିଁ । ଫାଇଲ ଯେଉଁ ଯେଉଁ ସୋପାନ ଦେଇ ଯାଉଥାଏ, ସେହି ସେହି କ୍ଷେତ୍ରରେ ନିଜେ ଗିରିଜା ଦେବୀ କିମ୍ବା ତାଙ୍କ ପ୍ରତିନିଧି ଭଳି ମଞ୍ଜୁ, ଡଲି, ସ୍ୱରୂପା, କବିତାମଧ୍ୟରୁ ଯିଏ ଜଣେ ହେଲେ ଯାଇଁ ପହଞ୍ଚି-ଯାଏ । ଦୁର୍ନୀତି ଓ ଭ୍ରଷ୍ଟାଚାର ଦ୍ୱାରା କିପରି ନାମ ହାସଲ କରାଯାଏ, କିପରି ସଜ-ମାଛରେ ପୋକ ପକାଇ ଦିଆଯାଏ; କିପରି ଗୋଟାଏ ଜାତିର ଜୀବନୀ ଶକ୍ତିକୁ ଅବଲୀଳା, କ୍ରମେ ନିଃଶେଷ କରାଯାଏ, ଏହା ହିଁ ହେଉଛି ତାହାର ପ୍ରକୃଷ୍ଟ ଉଦାହରଣ ।

ମାନ୍ୟବର ମନ୍ତ୍ରୀଙ୍କ ସମର୍ଥନ କ୍ରମେ ଫାଇଲ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଚାଲିଗଲା ମହାମାନ୍ୟ ମୁଖ୍ୟମନ୍ତ୍ରୀଙ୍କ ଦପ୍ତରକୁ । ଅଧ୍ୟାପକ ଶଶିକାନ୍ତ ଏଥର ହେଣ୍ଡିମାରି ବୁଝିଲେ ଯେ ନିକଟ ଭବିଷ୍ୟତରେ ସେ ଅଧ୍ୟକ୍ଷ ଆସନର ପ୍ରକୃତ ଅଧିକାରୀ ହୋଇ ପାରୁଛନ୍ତି । ଅତୀବ ବିସ୍ମୟକର ଓ ନିନ୍ଦନୀୟ ବିଷୟ ହେଉଛି, ଏ ଦେଶ ଯେତିକି ବିକଶିତ ହେଉଛି, ଅର୍ଥନୈତିକ ସମୃଦ୍ଧି ଯେତିକି ବୃଦ୍ଧି ପାଉଛି, ସେହି ପରିମାଣରେ ସାମାଜିକ ତଥା ପ୍ରଶାସନିକ ସ୍ତରରେ ଅସାଧୁତା, ଲୁଣ୍ଠନ, ଶୋଷଣ, ଭ୍ରଷ୍ଟାଚାର ଓ ଦୁର୍ନୀତି ବୃଦ୍ଧି ପାଉଛି । ବିଶ୍ୱାସଘାତକତାର ଘୃଣ୍ୟ ନିଦର୍ଶନ ଦ୍ୱାରା ସାଂପ୍ରତିକ ଇତିହାସର ପୃଷ୍ଠା- କାଳିମାଲିପ୍ତ କରାଯାଉଛି । ଅବୈଧ ଉପାୟରେ ଯେଉଁ ଚଉକିର କାନ୍ଥିମାକୁ ବହୁ କାଳ୍ପନିକ କଳ୍ପନା ଦ୍ୱାରା ଦୃଢ଼କରି ଗଢ଼ାଯାଉଛି, ତାହା ଯେ ଦିନେ ନା ଦିନେ ଭୁଷୁଡ଼ି ପଡ଼ିବ, ଏହା ପରତେ ଆସୁନାହିଁ । ଗୁରୁ ଓ ସମର୍ଥକ ମାନଙ୍କର ମହଲରେ ପ୍ରଚାରିତ ହୋଇଗଲା ଅତି ସହଜରେ ଚାଞ୍ଚଲ୍ୟକର ଖବରଟା । ସାମ୍ବାଦିକମାନଙ୍କର ଗୋଟାଏ ନେପଥ୍ୟ ସମ୍ମେଳନ ଡାକି ନିଜର ପାସପୋର୍ଟ ଫଟୋ ସହିତ ସଂକ୍ଷିପ୍ତ ଜୀବନୀ ମଧ୍ୟ ଧରାଇ ଦେଲେ ଅଧ୍ୟାପକ ଶଶିକାନ୍ତ । ବିଷୟଟା ପୂର୍ବରୁ କମ୍ପୋଜ କରାହୋଇ ରଖାଯାଇଥିବ, ସେ ଅଧ୍ୟକ୍ଷ ଆସନରେ ଆସୀନ ହେବା ସଙ୍ଗେ ସଙ୍ଗେ ସାମ୍ବାଦିକମାନେ ଯେପରି ଖବର କାଗଜର ପୃଷ୍ଠା ପୂରଣ କରିଦେଇ ପାରିବେ ।

ହଠାତ୍ ମାଛକୁ ବିରାଡ଼ି ଖାଇ ପାରିଲା ନାହିଁ । ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଫାଇଲ ଫେରିଲା ଭିନ୍ନ ଏକ ମତ ଲିପିବଦ୍ଧ ହୋଇ । ଅଧ୍ୟକ୍ଷଙ୍କ ଅବସର ଗ୍ରହଣ ବେଳକୁ ସେ ଯାହାଙ୍କୁ କ୍ଷମତା ହସ୍ତାନ୍ତର କରିବେ, ସେହି ଅଧ୍ୟାପକ ଶଶିକାନ୍ତଙ୍କର ଗ୍ରେଡ଼େସନ ତାଲିକାରେ ସ୍ଥାନ ଅଛି କେଉଁଠି ? ସମଗ୍ର ଓଡ଼ିଶାର ଅଧ୍ୟାପକ ମାନଙ୍କର ଗ୍ରେଡ଼େସନ୍ ତାଲିକା ସହିତ ସେମାନଙ୍କର ଚରିତ୍ର ପଞ୍ଜିକାର ଫାଇଲକୁ ତୁରନ୍ତ ପେଶ କରିବା ପାଇଁ ଆଦେଶ ଦେଇଛନ୍ତି ମୁଖ୍ୟମନ୍ତ୍ରୀ ।

ସେକ୍ରେଟାରୀ, ଡିରେକ୍ଟର ଓ ଜଏଣ୍ଟ୍ ଡିରେକ୍ଟର ମୁଣ୍ଡରେ ହାତ ଦେଇ ବସିଗଲେ । ଚନ୍ଦଠାରୁ ଫାଇଲଟା ଲେଟ୍ ହୋଇଯାଇଛି । ଥରେ ଫାଇଲ ଫେରି ଆସିଲା ପରେ ଆଉ ଥରେ ତାକୁ ସେହି ସବୁ ସ୍ତରରେ ଜଗିରହି ଉତ୍ତମ ମର୍ଯ୍ୟାଦାର ସହିତ ଉଦ୍ଦେଶ୍ୟ ପୂରଣ ପାଇଁ ପଠାଇବା କାଠିକର ପାଠ । ଗ୍ରେଡ଼େସନ ତାଲିକାରେ ଶଶି- କାନ୍ତଙ୍କର ସ୍ଥାନ ରହିଛି ଯାଇଁ ପନ୍ଦର ଜଣଙ୍କ ପଛରେ । ଏଣୁ ସେ ସହଜରେ ଅଧ୍ୟକ୍ଷ ଚଉକିର ଏବେ ପାଇପାରୁ ନାହାନ୍ତି କିମ୍ବା କେବେ ପାଇ ପାରିବେ, ସେ ସମ୍ଭାବନା ସୁଦୂର ପରାହତ ।

(୧୯୮୯ ମହିଳା ନବପତ୍ରର ୧୬ ବର୍ଷ ୩ୟ ସଂଖ୍ୟାରେ ପ୍ରକାଶିତ)

—*—

# ଆମର ଦାବୀ ପୂରଣ ହେଉ

॥ ଏକ ॥

ତୀବ୍ର ଉତ୍ତେଜନା ମଧ୍ୟରେ ଦଳେ ବିଦ୍ରୋହୀ ଛାତ୍ର ଦୋତାଲା ପିଣ୍ଡିରୁ ଦୁମ୍‌ଦାମ୍ ଓହ୍ଲାଇଗଲେ ସନ୍ଧ୍ୟାର ତରଳ ଅନ୍ଧକାର ମଧ୍ୟରେ । ସେମାନଙ୍କର ଔଦ୍ଧତ୍ୟ ସୀମା ଲଙ୍ଘନ କରିଛି । ଗଳାର ଉଚ୍ଚତମ ପର୍ଦ୍ଦାରେ କଳ କଳ ନାଦ କରି ସେମାନେ ରଡ଼ି ଛାଡ଼ୁଥିଲେ—

'ଆମର ଦାବୀ ପୂରଣ ହେଉ !'

ଦୃଶ୍ୟପଟରେ ପର୍ବତଘେରା । ମଝିରେ ପାଣ୍ଡବ ବର୍ଜିତ ଅଞ୍ଚଳ । ସ୍ଥାନର ନାମ କହିବା ନିରର୍ଥକ । କାଳ ସମ୍ବନ୍ଧରେ ସମସ୍ତେ ପ୍ରାୟ ସଚେତନ । ସେଠାକାର ଶିକ୍ଷାନୁଷ୍ଠାନର ପରିବେଶ ଧୀରେ ଧୀରେ ଉଷ୍ମରୁ ଉଷ୍ମତର ହୋଇଉଠିଛି । ଏକମାତ୍ର ଦାବୀ ହେଉଛି ଯେ ପ୍ରତ୍ୟେକ ଛାତ୍ରକୁ ଆଗାମୀ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେବାର ସୁଯୋଗ ଦିଆଯାଉ ! ଯେଉଁ ଦୁଇ ତିନି ଜଣ ଛାତ୍ର ଉପସ୍ଥାନ ଅଭାବରୁ ବିଧିବଦ୍ଧଭାବେ ବିଶ୍ୱବିଦ୍ୟାଳୟର ପରୀକ୍ଷା ଦେବାରୁ ବଞ୍ଚିତ ହେଉଛନ୍ତି, ସେମାନଙ୍କ କଥା ସହାନୁଭୂତିର ସହିତ ବିଚାର କରାଯାଉ !

କଥାଟା ଯେତେ ଅଦ୍ଭୁତକର, ଯେତେ କୁତ୍ସିତ, ଯେତେ ଅସଙ୍ଗତ ମନେହେଲେ ସୁଦ୍ଧା ତାହା ହିଁ ହେଉଛି ଛାତ୍ର ସମାଜର ଦୃଢ଼ଦାବୀ । ଛାତ୍ରମାନଙ୍କୁ ଯେଉଁ ଗଣତାନ୍ତ୍ରିକ ଅଧିକାର ଦିଆଯାଇଛି, ତାହାର ଅପପ୍ରୟୋଗ ଯେପରି ଆଜିକାଲିକା ଦୁନିଆଁରେ ମଜ୍ଜାଗତ ଅଭ୍ୟାସରେ ପରିଣତ ହେଲାଣି । ନୀତି, ନିୟମ, ଶୃଙ୍ଖଳା, ସଂଯମ ପ୍ରଭୃତି ଶବ୍ଦର ମୂଲ୍ୟବୋଧ ଧୀରେ ଧୀରେ ଆଧୁନିକ ଚିନ୍ତାଧାରାରୁ ଲୋପ ପାଇବାକୁ ବସିଲାଣି । ଆଡ୍‌ମିନିଷ୍ଟ୍ରେସନ କହିଲେ କିଛି ନାହିଁ । ଛାତ୍ରମାନେ ପ୍ରଶାସନର ମୁଣ୍ଡ ଖାଇ ବସିଲେଣି ।

ଭାରତର ସ୍ୱାଧୀନତା ପ୍ରକୃତରେ ଦିନକୁଦିନ ସଂଖ୍ୟା ଗରିଷ୍ଠ ଯୁବଶକ୍ତିର ଅନ୍ତର୍ନିହିତ ନିଷ୍ଠୁରତା, ଯଥେଚ୍ଛାଚାରିତା, କୃତଘ୍ନତା ଆଡ଼କୁ ମୁହାଁଇଯାଉଛି, ବିଶେଷ ଭାବରେ ଚାରିତ୍ରିକ ଦୃଢ଼ତାର ଅଭାବରୁ ପ୍ରତ୍ୟେକ ରାଜନୈତିକ ଦଳର ନେତା ଛାତ୍ରମାନଙ୍କୁ

ନାନାପ୍ରକାର ପ୍ରଲୋଭନ ଦେଖାଇ ସେମାନଙ୍କର ଯୌବନ, ଆନନ୍ଦ, ସାହସ, ସ୍ୱପ୍ନ, କାଣ୍ଡିକୁ ଶୋଷିନେଇ ନିଜ ଦଳର ପୁଷ୍ଟି ସାଧନ ପାଇଁ ପ୍ରତିଯୋଗିତା ଆରମ୍ଭ କରି-ଦେଇଛନ୍ତି । ନାନା ଉପାୟରେ ସେମାନଙ୍କୁ ନିଶୁଣୀ କରି ଉପରକୁ ଉଠିବା ପାଇଁ ଉଦ୍ୟମ କରୁଛନ୍ତି । ଏଥିରେ ବେଶୀ ଭାଗ ଧନ୍ଦି ହେଉଛନ୍ତି ତଥାକଥିତ ଶିକ୍ଷିତ ତରୁଣ ଓ ଉଦ୍‌ଭ୍ରାନ୍ତ ଯୁବକ ସମାଜ । ଛାତ୍ର କଂଗ୍ରେସ, ଛାତ୍ର ଜନତା, ଛାତ୍ର ସଂଗଠନ, ସମାଜବାଦୀ ଛାତ୍ରସଂଘ ଆଦି ଭଳିକି ଭଳି ପତାକା ଟେକି ମହାବିଦ୍ୟାଳୟଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଯୁବ ଜନୋଚିତ ପ୍ରମତ୍ତତା ପ୍ରକଟିତ ହେଉଛି । ଏହା ହିଁ ହେଉଛି ବିକଟ ବାସ୍ତବତା । ଏଥିରେ ରାଜଦାଣ୍ଡ ଦୁଲୁକି ଯାଉଛି । ଯଦି କେବେ କମିଟି ସଂକୀର୍ଣ୍ଣ ସ୍ୱାର୍ଥାନ୍ୱେଷୀ ନୀଚ-ମନା ଅଧ୍ୟାପକ ଏଥିସହିତ ମିଶିଲେ, ତେବେ ତାହା ହେଲା ଜଳନ୍ତା ନିଆଁରେ ଘିଅ ଢାଳିଲା ପରି ।

ନିକଟ ଉନ୍ମାର୍ଗଗାମୀ ଛାତ୍ର ପ୍ରତିନିଧିମାନେ ବିଦ୍ରୋହ ଘୋଷଣା କରି ଓହ୍ଲାଇ ଗଲା ପରେ ସୁଦ୍ଧା ଅଧ୍ୟକ୍ଷ ମହାଶୟ ସଂଧ୍ୟାର ଅନ୍ଧକାରରେ ନିଜ ପ୍ରକୋଷ୍ଠ ମଧ୍ୟରେ ବସି ଚିନ୍ତା-କରୁଥିଲେ, କିପରି ଭାବରେ ବେଆଇନ କଥାକୁ ଆଇନସଂଗତ କରାଇନେବା ପାଇଁ ଉଦ୍ଦାମ ଚିତ୍‌କାର ଆରମ୍ଭ ହୋଇଛି । ସେ ଶାନ୍ତ ଭାବରେ ଆଇନ୍‌ର ସୂକ୍ଷ୍ମ ବ୍ୟାଖ୍ୟା କରୁଥିଲେ, ଆଇନ୍‌ର ନିହିତାର୍ଥ ଓ ମୂଳ ଉଦ୍ଦେଶ୍ୟକୁ ପ୍ରାଞ୍ଜଳ ଭାବରେ ବୁଝାଇ ଦେଇ-ଥିଲେ । ତଥାପି ଛାତ୍ରପ୍ରତିନିଧିମାନେ ହେଲେ ଅବୁଝା । ସମସ୍ତ ପ୍ରକାର ଶିକ୍ଷା, ସୌଜନ୍ୟ-ବୋଧ, ଶାଳୀନତାର ଆବରଣକୁ ଫିଙ୍ଗି ଦେଇ ହେଲେ ଅସଂଯତ, ଉଦ୍ଦଣ୍ଡ, ଉଚ୍ଛୃଙ୍ଖଳ ଓ ପାଶମୁକ୍ତ । 'ବିଶ୍ୱବିଦ୍ୟାଳୟର ନିୟମ ଅନୁସାରେ ଯାହାର ଉପସ୍ଥାନ ଅନ୍ତତଃ ଶତକଡ଼ା ଷାଠିଏ ଭାଗରୁ ଊଣା, ତାହା ପାଇଁ କୌଣସି ପ୍ରକାର ସାହାଯ୍ୟ କରାଯାଇ ପାରିବ ନାହିଁ' ବୋଲି ଅଧ୍ୟକ୍ଷ ଜଣାଇ ଦେଇଥିଲେ । ଏହା ଯେଉଁପରି ଥିଲା ଜରୁରୀ, ସେହିପରି ଥିଲା ପ୍ରାସଙ୍ଗିକ ।

ଛାତ୍ରନେତାମାନେ କିନ୍ତୁ ନିଜ ଦାବୀରେ ଅଟଳ । ସେମାନଙ୍କ ଅମାପ ଶକ୍ତିର ଯଥାର୍ଥ ଉପଯୋଗ କରାଇ ନାନା ଉପାୟରେ କାର୍ଯ୍ୟ କରାଇ ନେବାକୁ ବଦ୍ଧ ପରିକର । ତରୁଣ ମାନଙ୍କର ଜୀବନ ଦର୍ଶନ ଓ ଜୀବନ ପ୍ରଣାଳୀ କଣ ଏହିପରି ? ସେମାନେ କାଳବିଳମ୍ବ ନ କରି ଦୌଡ଼ିଲେ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ । ଯୋଗାଡ଼ କରୁକରୁ ନାଭିଶ୍ୱାସ ଛୁଟିଲା । ସେଠାରୁ ବିଶେଷ କିଛି ଫଳ ପାଇଲେ ନାହିଁ । ଅନୁପସ୍ଥିତକୁ ଉପସ୍ଥିତ କରାଇବା ପାଇଁ କୌଣସି ଶିକ୍ଷାବିତ୍ ଆଗ୍ରହୀ ହେଲେ ନାହିଁ । ନିରାଶ ହୋଇ ଫେରିଆସୁଥିବା ସମୟରେ କେହି ଜଣେ ଯୁବନେତା ପ୍ରସ୍ତାବ ଦେଲେ ସରକାରୀ ଭାବରେ କିଛି କରାଯାଇପାରେ ବୋଲି । ଦେଖିବାକୁ ଗଲେ ଆଜିକାଲିର ଯୁବନେତାମାନେ ପ୍ରାୟତଃ ଚତୁରାନନ । ଚାରିଦିଗକୁ ଦେଖିବୁଝି କଥା କହନ୍ତି, ସମାନ୍ତରାଳ ଭାବେ କାମ ମଧ୍ୟ କରାଇ ନିଅନ୍ତି ।

ତାଙ୍କ ତୁଣ୍ଡରୁ କମ୍ପା ମୁଣ୍ଡକୁ ଯାହା ଭୁଲରେ ସୁଦ୍ଧା ବାହାରିପଡ଼େ, ତାହା ହିଁ ପାଳିତ ହୁଏ ବ୍ରହ୍ମବାକ୍ୟ ଭଳି । ଆଗାମୀ ସେସନରେ ଦେଖା ଦେଖି ହେବା ପାଇଁ ସେମାନେ ଖୋଦ୍ ମନ୍ତ୍ରୀଙ୍କୁ ସୁଦ୍ଧା ଧମକ ଦେଇପାରନ୍ତି ।

ଛାତ୍ରଦଳ ଚାଲିଲେ ସୁନୀତି ଓ ଦୁର୍ନୀତିର କେନ୍ଦ୍ରସ୍ଥଳ ଭୁବନେଶ୍ୱର ଅଭିମୁଖେ । ଏଠାରେ ଦିନ ଦ୍ୱିପ୍ରହରରେ କଳାକୁ ଧଳା ବୋଲି ଚଳାଇଦେବା ଯେତେ ସହଜ, ଅନ୍ୟତ୍ର ତାହା ଦୁର୍ଲଭ । ସେଠାରେ ପହଞ୍ଚି ପ୍ରତିକୂଳତା ବିରୁଦ୍ଧରେ ସେମାନେ ସଂଗ୍ରାମ ଆରମ୍ଭ କରିଦେଲେ । ଅଭିଯୋଗ ସର୍ଦ୍ଦ ଥୋଇଲେ—"ଅଧ୍ୟକ୍ଷ ଓ ଅଧ୍ୟାପକମାନେ ଚଞ୍ଚକତା କରି ଉପସ୍ଥିତିକୁ ଅନୁପସ୍ଥିତି କରାଇଛନ୍ତି । ପ୍ରକୃତରେ ହିଁ ପ୍ରତ୍ୟେକ ଛାତ୍ର ପ୍ରତ୍ୟେକ ଶ୍ରେଣୀରେ ପ୍ରତ୍ୟେକ ଦିନ ଉପସ୍ଥିତ ରହିଛନ୍ତି ।" ଆହୁରି କେତେ କେତେ ମନଗଢ଼ା କଥାର ଅବତାରଣା । ସଙ୍ଗରେ ଯାଇଥିବା ଭଡ଼ାଟିଆ ଟୋକାଏ ଛାତ୍ରମାନଙ୍କ କଥାକୁ ବାଗେଇ ଚିନେଇ ଅନାବନା ତଥ୍ୟରେ ପୋତି ପକାଇଲେ । ନାନାବିଧ ଅଭିନୟ ପ୍ରଦର୍ଶନ କରି ଦୁର୍ନୀତି ଓ ପାପକର୍ମ ଅଧ୍ୟକ୍ଷ-ଅଧ୍ୟାପକଙ୍କର ନାନା କଥାରେ ନାନା ପ୍ରକାର ସ୍ୱରରେ ହଠାତ୍ ବନ୍ଧ ଛିଡ଼ି ଯାଇଥିବା ବନ୍ୟା ଜଳ ଭଳି ମୁଣ୍ଡ ହାତ ହଲାଇ ମନଇଚ୍ଛା ବଖାଣିଗଲେ । ସଂକୀର୍ଣ୍ଣ ସ୍ୱାର୍ଥପର ସିଦ୍ଧାନ୍ତକୁ ବଦଳାଇ ଉଦାର ଓ ଯୁଗୋପଯୋଗୀ କରାଇବା ପାଇଁ ନିବେଦନ କଲେ । ପରିସ୍ଥିତିକୁ ଅଲଣା ଆଚରଣ ଦ୍ୱାରା ଏପରି କରି ପକାଇଲେ, ଯେଉଁଥିରେ ଚାତୁର୍ଯ୍ୟ ଠାରୁ ଚାତୁରୀ ଫୁଟିଲା ଅଧିକ । ବାକ୍‌ଚାତୁରୀ ଫୁଟିଲା ଭଜାଭଜା ହାଣ୍ଡିର ଖଇ ଭଳି ।

ସରକାରଙ୍କ ଛତା ତଳେ ନିରାପଦରେ ବସିରହିଥିବା ଶିକ୍ଷା ବିଭାଗର ନୋଦ ନିର୍ଦ୍ଦେଶକ ପଡ଼ିଲେ ଦ୍ୱନ୍ଦ୍ୱରେ । ଜଣେ ନିପୁଣ ଶାସନକୁଶଳୀ କର୍ମଚାରୀ ହୋଇଥିଲେ ମଧ୍ୟ ସାତ କଥାରେ ସତ ଭୁଲିଲା ଭଳି ସେ ତରଳିଗଲେ । ବିବେଚନା ବିହୀନ ରାଜନୀତିର ଅବଦାନ ଯେ ଅରାଜକତା, ତାହା ସେ ଅନୁମାନ କରି ପାରିଲେ ନାହିଁ । ବର୍ତ୍ତମାନର ଛାତ୍ର ସମାଜ ରାଜନୀତି ଜର୍ଜରିତ । ସବୁ ଦେଶରେ, ସବୁ ସମାଜରେ, ସବୁ ପରିବେଶରେ ରାଜନୀତି ରହିଛି, କିନ୍ତୁ ଆମ ଦେଶରେ, ଆମ ସମାଜରେ, ଆମ ପରିବେଶରେ ଏଭଳି ସର୍ବଗ୍ରାସୀ ଓ ସର୍ବନାଶୀ ରାଜନୀତି ଚାଲିଛି, ଯାହା ହୁଏତ ଅନ୍ୟତ୍ର ଦୁର୍ଲଭ । ଏହି ମାରାତ୍ମକ ବ୍ୟାଧିର ଅଜସ୍ର ଚିହ୍ନ ପ୍ରତି ସତର୍କ ଦୃଷ୍ଟି ନ ରଖି ଛାତ୍ରମାନଙ୍କ ଷଡ଼ଯନ୍ତ୍ରରେ ବିପନ୍ନ ଶିକ୍ଷା ବିଭାଗର ନିର୍ଦ୍ଦେଶକ ସବୁ ଅଭିଯୋଗ ଗୁଡ଼ିକ ବିଶ୍ୱାସ କରିଗଲେ । ସହାନୁଭୂତି ସମ୍ପନ୍ନ ବିଶ୍ୱାସ ହେଲା ଚରମ ଅନ୍ଧତାର ଆଶ୍ରୟସ୍ଥଳୀ ।

'କହି ପୋଛୁ ପାରେ ଝିଏ, ପରି ଚିଙ୍ଗୁଡ଼ି ପ୍ରଥମେ ତାହାର ପରିବାରରୁ ଶେଷ ହୋଇଯାଏ ।' ଛାତ୍ରମାନଙ୍କ ପ୍ରତି ହୋଇଥିବା ତଥାକଥିତ ଅନ୍ୟାୟାଚରଣର ତଦନ୍ତ ପାଇଁ ସରଜମିନ୍ ଉପରକୁ ଆସିଲେ ଅସୀମ କ୍ଷମତାଧର ନିର୍ଦ୍ଦେଶକଙ୍କର ଭାରପ୍ରାପ୍ତ ପ୍ରତିନିଧି

ସେ ମାମଲାତରେ ପୋଖତ । ସେ ଅଧ୍ୟାପକ ମଣ୍ଡଳ ସହିତ ଆଲୋଚନା କଲେ ଏବଂ ଅଧ୍ୟକ୍ଷଙ୍କ ସହିତ ପରାମର୍ଶ କଲେ, ଆଫିସିକ କାଗଜପତ୍ର ତନଖିଲେ । ଯେଉଁ କେତେକ ଅଧ୍ୟାପକ ନିଜର ସ୍ୱାର୍ଥ ସାଧନ ପାଇଁ ଛାତ୍ରମାନଙ୍କ କାନରେ ଗୁରୁମନ୍ତ୍ର ପ୍ରଦାନ କରିଥିଲେ, ସେମାନଙ୍କ ବ୍ୟତୀତ ଅନ୍ୟମାନଙ୍କର ଛାତ୍ର ସଂସଦର ଦାବୀ ପ୍ରତି ବିନ୍ଦୁମାତ୍ର ବାସନା କିମ୍ବା ଆଗ୍ରହ ନାହିଁ ବୋଲି ଅନୁଭବ କଲେ । ଅଧ୍ୟକ୍ଷ ମହାଶୟ ହେଲେ କର୍ତ୍ତବ୍ୟ ପରାୟଣ, ଜ୍ଞାନୀ, ଗୁଣୀ ଓ ଗୁଣଗ୍ରାହୀ ସଜ୍ଜନ, ମାତ୍ର ନିଜର ମର୍ଯ୍ୟାଦା ବିଷୟରେ ଉଦାସୀନ । ସେ କେବଳ ଏହି କଲେଜର କିମ୍ବା ଏହି ପରିବେଶର ଶିକ୍ଷକ ନୁହନ୍ତି; ନୀତି ଦୃଷ୍ଟିରୁ ସବୁ କଲେଜର ଓ ସବୁ ପରିବେଶର ଶିକ୍ଷାବିଦ୍ । ସବୁ କଥା ଜାଣିଛନ୍ତି, ଶୁଣିଛନ୍ତି, ଦେଖିଛନ୍ତି ଓ ଅଙ୍ଗେ ଲିଭାଇଛନ୍ତି । ଛାତ୍ରସମାଜର ଦାବୀ ପଛରେ କି ଗୋପନ ରହସ୍ୟ ରହିଛି, ତାହାମଧ୍ୟ ଅନୁଭବ କରିଛନ୍ତି । ଛାତ୍ରମାନଙ୍କର ନିର୍ବୁଦ୍ଧିତାର ସୁଯୋଗ ନେଇ ଯେଉଁମାନେ ଯନ୍ତ୍ରପରୋନାସ୍ତି ବିପଦଜନକ ପରିସ୍ଥିତି ସୃଷ୍ଟି କରିଛନ୍ତି, ସେମାନଙ୍କୁ ସେ ଭଲଭାବେ ଚହ୍ନନ୍ତି । ଅବସ୍ଥା ବୁଝି ବ୍ୟବସ୍ଥା ପାଇଁ ପୂର୍ବରୁ ଲେଖା ଲେଖି କରିଛନ୍ତି, କାଳ ଓ ପରିସ୍ଥିତି, ସମସ୍ୟା ଓ ସଙ୍କଟ ସମ୍ବନ୍ଧରେ ବିସ୍ତୃତ ବିବରଣୀ ଦେଇଛନ୍ତି । ତାଙ୍କର କୌଣସି ପ୍ରତି ମୋହାନ୍ଧ ଆଶକ୍ତି ନାହିଁ ବୋଲି କୁହାଯାଇପାରେ । ତାଙ୍କ ପକ୍ଷରେ ଛାତ୍ର-ଆନ୍ଦୋଳନର ନିର୍ଭୁଲ ମୂଲ୍ୟାୟନ ସମ୍ଭବ ।

ସେ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଦେଇ ଭଲ କଣ୍ଠରେ ଜଣାଇଦେଲେ—"ଛାତ୍ରମାନଙ୍କର ଦାବୀ ହେଉଛି ଅବାନ୍ତର । ଘୋଡ଼ା ଆଗରେ ଗାଡ଼ିକୁ ଆଣି ଠିଆ କରାଇବା କଥା; ଏଣୁ ଗ୍ରହଣଯୋଗ୍ୟ ନୁହେଁ । ଏହିଭଳି ଦାବୀକୁ ପ୍ରଶ୍ରୟ ଦେଲେ ବିଦ୍ୟାଦାନ ପ୍ରତିଷ୍ଠାନର ମେରୁଦଣ୍ଡ ଦୋହଲିଯିବ ।" କଡା କଡା କରି ସେ କାଗଜ କଲମରେ ପ୍ରମାଣ କରି ଦେଖାଇ ଦେଲେ ଯେ କେତେକ ଅଧ୍ୟାପକ କିପରି କୋମଳମତି ଛାତ୍ରଙ୍କୁ ଅସ୍ତ୍ର ରୂପେ ବ୍ୟବହାର କରୁଛନ୍ତି । ନିରୀହ ଛାତ୍ରମାନେ କେବଳ ବଳି ପଶୁ ଭଳି ସେମାନଙ୍କ ଯୂପକାଠିରେ ବେକ ଭର୍ତ୍ତିକରି ଦେଇଛନ୍ତି । ଶିକ୍ଷାଦାନ କ୍ଷେତ୍ରରେ ସ୍ୱାର୍ଥ ହିଁ ପାଲଟିଛି ପରମାର୍ଥ ! ନିର୍ଦ୍ଦେଶକ ମହାଶୟଙ୍କର ପ୍ରତିନିଧି ସଚକିତ ଭାବରେ ଅନାଇ ରହିଲେ ଅଧ୍ୟକ୍ଷଙ୍କର ମୁହଁକୁ । କଥାବାର୍ତ୍ତା ଅନେକ ପରିମାଣରେ କଂକ୍ରିଟ୍, ନିର୍ଭେଜାଲ ।

ଅଧ୍ୟକ୍ଷ ମହାଶୟ ସୁଦୀର୍ଘ ଅଭିଜ୍ଞତା ବଳରେ ଯେଉଁ କଥାକୁ ସହଜ ଭାବରେ ଗ୍ରହଣ କରି ତର୍ଜମା କରିପାରୁଛନ୍ତି, ତାହା ଛାତ୍ରମାନଙ୍କ ପକ୍ଷରେ ଗ୍ରହଣୀୟ ହୋଇପାରୁନାହିଁ । ସେମାନଙ୍କର କାନ ମଧ୍ୟରେ ତାହା ଯେତେ ସହଜରେ ପ୍ରବେଶ କରୁଛି, ମନ ମଧ୍ୟରେ ସେତେ ସହଜରେ ସ୍ଥାନ ପାଇ ପାରୁନାହିଁ । ସାମୟିକ ଉତ୍ତେଜନା ସୃଷ୍ଟି ପାଇଁ ବିଦ୍ୟା-ବୁଦ୍ଧି କିମ୍ବା ମସ୍ତିଷ୍କ ଚାଳନାର ପ୍ରୟୋଜନ ହୁଏନାହିଁ । ଉଦ୍‌ବେଳିତ ଯୁବଚିତ୍ତର ପ୍ରବଣତା ଶସ୍ତା, ଲୋଭନୀୟ ଓ ସର୍ବବ୍ୟାପୀ । ହଠାତ୍ ଧାଇଁଯାଏ ଦିଗ୍‌ବିଦିଗ ଅମୁହାଁ; ଦିବବାର ନୁହେଁ ।

'ଅମର ଦାବୀ ପୂରଣ ହେଉ
ଛାତ୍ରବିରୋଧୀ ଅଧ୍ୟକ୍ଷ
ତୁରନ୍ତ ବଦଳି ହେଉ !'

ସଙ୍ଗେ ସଙ୍ଗେ ଗଢ଼ା ହୋଇଗଲା ଛାତ୍ର ସଂଗ୍ରାମ କମିଟି । ମୁହୂର୍ତ୍ତକ ମଧ୍ୟରେ ସମ୍ଭ୍ରମ ଓ ବିଶ୍ୱାସ ଉପରେ ପ୍ରତିଷ୍ଠିତ ଆଲୋଚନାର ବାଲିଘର ଚୂର୍ଣ୍ଣୀଭୂତ ହେଲା । ଅମ୍ଳାନ ଭାବରେ ଧାପେ ଉପରକୁ ଉଠି ନିର୍ଦ୍ଦେଶକଙ୍କ ପ୍ରତିନିଧିଙ୍କ ଗାଡ଼ିକୁ ଅଟକାଇବା ପାଇଁ ସର୍ବମତ ବ୍ୟବସ୍ଥା ହୋଇଗଲା । କଜଳ ଲଗାଇ, କାନି ଛାଡ଼ି ମାଡ଼ି ଆସିଲେ ଛାତ୍ରୀଦଳ କ୍ଷିପ୍ରଗତିରେ । ତନମାରେ କ୍ଲାନ୍ତ ନାହିଁ, ମନରେ ଉତ୍ତେଜନା ନାହିଁ, ଅଥଚ ଗାଡ଼ିର ଚକ ଆଗରେ ବସି ବେଣୀ ଦୋହଲାଇ ଚକା ଅଟକ ଆନ୍ଦୋଳନର ନେତୃତ୍ୱ ନେବାକୁ ଆଗଭର । ଭିତରର ଉଦ୍ବେଳ ବଳକୁ ଫେଣାଇ, ଫୁଲାଇ, ଖେଳାଇ, ଦୋଳାଇ, କେତେ ଭଙ୍ଗୀରେ, କେତେ ଠାଣିରେ, କେତେ ଛଳରେ, କେତେ ବ୍ୟାଖ୍ୟାରେ ଲୋକ ମାନଙ୍କର ଚକ୍ଷୁକୁ ତନ୍ମୟାଇ କାର୍ଯ୍ୟ କରିଗଲା । ତାଳ ଫଟେ ବାରମ୍ବାର ଉଠିଲା ଉନ୍ମୁକ୍ତ-ଅବାରିତ ସ୍ୱରରେ ।

ଭାରି ମଜାଦାର, ଦେଶ୍ ବଢ଼ିଆ ଜମକ । ଏତେ ବଢ଼ିଆ ଜମକ ଯେ, ବାକ୍ୟରେ ବି ପ୍ରକାଶ କରି ହୁଏନାହିଁ । ଏଣିକ ବହି ଖୋଲିବା ଦରକାର ନାହିଁ, କ୍ଲାସ୍‌କୁ ଯିବା ଆବଶ୍ୟକ ନାହିଁ, ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ସମ୍ପୂର୍ଣ୍ଣ ବେକାର କଥା । ରାତି ଅନିଦ୍ରା ହୋଇ ଗୋଟାକୁ ଗୋଟା ପ୍ରଶ୍ନର ଆବଶ୍ୟକୀୟ ଉତ୍ତର ମୁଖସ୍ଥ କରିବା ପାଗଳର ପ୍ରଳାପ । ଖାଲି ଆରାମ, ଖାଲି ଗୋଳମାଳ । ବୁଲ, ବସ, ଖାଅ, ପିଅ, ମଉଜ କର, ସଉକ କର, ମଜଲିସ୍ କର, ଯେଉଁଠିକି ଇଚ୍ଛା ସେଠିକି ଯାଅ, ଯେତେ ଇଚ୍ଛା ସେତେ ସମସ୍ତ କଟାଅ ବାହାରେ । କୌଣସି ପ୍ରକାର ବନ୍ଧନ ଚଳିବ ନାହିଁ । କାହାର ବାଧାକୁ ଭ୍ରୂକ୍ଷେପ କରାଯିବ ନାହିଁ । କଲେଜ, ହଷ୍ଟେଲର ଯେତେ ସବୁ ନିୟମ, ଶୃଙ୍ଖଳା, ସେଗୁଡ଼ାକ କେବଳ ସେହିମାନେ କରିଛନ୍ତି, ଯେଉଁମାନେ ଆବେଗ କ'ଣ ବୁଝନ୍ତି ନାହିଁ,—ଆକାଙ୍କ୍ଷା କ'ଣ ଜାଣନ୍ତି ନାହିଁ, ଆନନ୍ଦ କ'ଣ ଅନୁଭବ କରିନାହାନ୍ତି । ଏଣୁ ସେ ନିୟମ, ସେ ଅନୁଶାସନ, ସେ ଶୃଙ୍ଖଳା ଗୌଣ, ଅବାନ୍ତର, ଅର୍ଥହୀନ, ବୃଦ୍ଧଜୀବୀ ମଣିଷର କାରସାଦି । ଯାବତୀୟ ଦୁଷ୍ଟି କଞ୍ଚୁ ଆବର୍ଜନା, ଛେଚି ଲଣ୍ଡାକୁ ଯୋଗ୍ୟ ।

ଗୋଠି ମାତିଲେ ଖଣ୍ଡିଆ ମାତେ । ଛତରା, ବଜାରୀ, ଲଫଙ୍ଗା, ବେକାରିଆ ଟୋକା ଦଳ ଦଳ ହୋଇ ଆସି ସାମିଲ ହୋଇଗଲେ ଏହି ଦୁର୍ଭାଗ୍ୟଜନକ ଚକ୍ଷୁ-ରୋଚକ ନାଟକରେ । ସହରର ଲୋକାଳୟଠାରୁ ଯେଉଁ କମୋଡ଼ ଗୈରିକ ପଥ ଉଠିଯାଇଛି ମହାବିଦ୍ୟାଳୟକୁ, ସେହି ପଥରେ ଧଇଁସଇଁ ହୋଇ ଉଠି ଆସିଲେ କେତେକ

ନାମମାତ୍ର ବଞ୍ଚିକ ନଳି ପେଣ୍ଡ ପିନ୍ଧା ଗ୍ରନ୍ଥମାନ୍ଥ ବେପାଗ୍ଭ । ଗୋଷ୍ଠିଙ୍କେକ ଦ୍ୱାରରେ ବ ଏତେ ଲୋକ ସମାଗମ ହୁଏନାହିଁ । ବନ୍ଧୁର ପଥ ଭିଡ଼ ଓ କୋଳାହଳରେ ଫାଟିପଡ଼ିଲା । ସମୁଦାୟ ଶିକ୍ଷାନୁଷ୍ଠାନ କ୍ରମଶଃ ନିୟନ୍ତ୍ରଣର ବାହାରକୁ ଚାଲିଗଲା । ସଞ୍ଚିତ ହିଂସା, ପୁଞ୍ଜିଭୂତ ମୂର୍ଖତା ମଣିଷର ଚମଡ଼ା ଖୋଳରୁ ବାହାରି ବୃକ୍ଷ-ବଳବନ୍ତ ପଶୁ ଭଳି ତେଇଁ ତେଇଁ ବୁଲିଲା । ଉଦ୍‌ବେଗ, ଉତ୍ତେଜନା, ବିଦ୍ୱେଷ, କ୍ରୋଧ, ଘୃଣା, ଶୂନ୍ୟତା, ହତାଶା ପ୍ରଭୃତି ବହୁବିଧ ଭାବ-ଅନୁଭବ ଏକାଠି ହୋଇ ସତେ ଯିମିତି ଗ୍ରେଟିଆ ଘୂର୍ଣ୍ଣିବାତ୍ୟା ସୃଷ୍ଟି କରି ପକାଇଲା । ସେଥିରୁ କେତେକ ନଳି ପେଣ୍ଡପିନ୍ଧା ବନ୍ଦାଢ଼ୀଙ୍କୁ ଦ୍ୱଳର ଦ୍ୱଳର କଥାବାର୍ତ୍ତା ଆରମ୍ଭ କରିଦେଲେ ନିଜକୁ ସାମ୍ବାଦିକ କମ୍ବା ସମ୍ବାଦପତ୍ରର ପ୍ରତିନିଧିଭାବେ ପରିଚୟ ଦେଇ । ଏହି ବିଶେଷ ବିପର୍ଯ୍ୟୟକୁ ସାଧ୍ୟମତେ ଲାଘବ କରିବା ପାଇଁ ଚେଷ୍ଟାକରି ଶେଷକୁ ଘୋରତର ନିଷେଧାଜ୍ଞା ସତ୍ତ୍ୱେ ଉପାୟବିହୀନ ହୋଇ ଗ୍ରନ୍ଥନେତାଙ୍କ ସମାଧାନ ପତ୍ରରେ ନତମସ୍ତକ ହୋଇ ସମ୍ମତି ଜଣାଇଲେ ନିର୍ଦ୍ଦେଶକଙ୍କର ପ୍ରତିନିଧି । ଅତି ନାଟକୀୟ ଭାବେ ତାଙ୍କଠାରୁ ଜବରଦସ୍ତ ସ୍ୱୀକାରୋକ୍ତି ଆଦାୟ କରି ନିଆଗଲା । ପରିଶେଷରେ ସେ ବିଦାୟ ନେଲେ ଉତ୍ପୀଡ଼ିତ ଓ ଅନୁତପ୍ତ ହୋଇ ।

॥ ଦୁଇ ॥

ଦାବୀ ପୂରଣ ହେଲା । ଶ୍ରେଣୀରେ ଉପସ୍ଥିତ ନ ରହିଲେ ମଧ୍ୟ ଗ୍ରନ୍ଥର ଉପସ୍ଥାନ ପ୍ରତି ଦୃଷ୍ଟି ଦିଆ ନ ଯାଇ ପରୀକ୍ଷା ଦେବାର ବ୍ୟବସ୍ଥାକୁ ସରଳୀକରଣ କରାଗଲା । ଗ୍ରନ୍ଥସମାଜର ଜନ୍ମଗତ ମୌଳିକ ଅଧିକାର ବଜାୟ ରହିଲା । ପ୍ରକାରାନ୍ତରେ ଅନ୍ୟାୟକୁ ପ୍ରୋତ୍ସାହିତ କରାଗଲା । କିନ୍ତୁ ଏହି ସମୃଦ୍ଧ ଶକ୍ତିର ବିଜୟ-ବୈଜୟନ୍ତୀ ଦାଦାମାନଙ୍କ ମନକୁ ସମ୍ପୂର୍ଣ୍ଣ ଉତ୍ଫୁଲ୍ଲିତ କରିପାରିଲା ନାହିଁ । ବିପ୍ଳବର କାଣ୍ଡାରୀମାନେ ଆତ୍ମବିଶ୍ୱାସ ଅଭାବରୁ ଶଙ୍କିତ ହୋଇପଡ଼ିଲେ । ମଣିଷର ମନ ହେଉଛି ରକ୍ଷଣଶୀଳ । ପୁରୁଣା ପରମ୍ପରାକୁ ତାହା ସହଜରେ ଛାଡ଼ିପାରେ ନାହିଁ କିମ୍ବା ଉଡ଼ନ୍ତୁ ଆଧୁନିକତାକୁ ସ୍ୱତଃସ୍ଫୂର୍ତ୍ତ ଭାବରେ ଗ୍ରହଣ କରିପାରେ ନାହିଁ । ଯେଉଁ ଗ୍ରନ୍ଥର ଶତକଡ଼ା ପଚାଶ ଭାଗ ଉପସ୍ଥାନ ରହିଛି କିମ୍ବା ଯେଉଁ ଗ୍ରନ୍ଥୀର ଛେକଡ଼ା ପଚାଶ ଭାଗ ଉପସ୍ଥାନ କୌଣସିମତେ ସମ୍ଭବ ହୋଇଛି, ନୈତିକତାର ଅଭାବରୁ ସେମାନଙ୍କ ଅନ୍ତଃସ୍ଥଳ ନାନାବିଧ ଆଶଙ୍କାରେ ଆତଙ୍କିତ ହୋଇ ଉଠିଲା । ସେମାନଙ୍କ ଗ୍ରନ୍ଥ ଭିତରେ ଭୂମିକମ୍ପ ସୃଷ୍ଟି ହେଲା । ଠିକ୍ ଭୂମିକମ୍ପ ନୁହେଁ, ପ୍ରବଳ ବନ୍ୟା ଓ ବାତ୍ୟା ମଧ୍ୟ । ଅସମ୍ଭବ ଧରଣର ଆନ୍ଦୋଳନ, ଯାହା ପ୍ରକାଶ କରାଯାଇ ପାରିବ ନାହିଁ ବାକ୍ୟରେ; ଯାହାର କୌଣସି ସଂଜ୍ଞା ନାହିଁ । ଏହାର ସୁଯୋଗ ନେଇ ଏଭଳି ନୂତନ ଆନ୍ଦୋଳନ ପାଇଁ ମଞ୍ଜି ବୁଣି ଦିଆଗଲା, ଯାହାପାଇଁ ଉଦ୍‌ବେଗର ଅନ୍ତ ରହିଲା ନାହିଁ ।

ଅନୈତିକ ବିଜୟ କେବେହେଲେ ଶାନ୍ତିର ପଥ ଖୋଲିଦିଏ ନାହିଁ । ଯାହା ନିର୍ମମ ସତ୍ୟ, ତାହା ସାମୟିକ ବିଭ୍ରାନ୍ତି ଦ୍ୱାରା କେବେହେଲେ ନିଶ୍ଚିହ୍ନ ହୋଇଯାଏ ନାହିଁ । ଏଣୁ ସେତେବେଳେ ବାହୁଆସ୍ଫୋଟ ମାରି, ରାଜଦାଣ୍ଡ ଚମକାଇ ଗର୍ଜନ ତର୍ଜନ କରି ବୁଲିଲେ ସୁଦ୍ଧା ବିପଦର ସମ୍ଭାବନା ଦୂର ହୋଇପାରେ ନାହିଁ ବୋଲି କେହି କେହି କାନଭୁଣ୍ଡା କହିବାର ଶୁଣାଗଲା । କେହି କେହି ମତ ଦେଲେ—ଯୋଗଳମନ୍ତ୍ରରେ ଯେ ପର୍ଯ୍ୟନ୍ତ ଉପସ୍ଥାନ ଠିକ୍ ନ ହୋଇଛି, ସେ ଯାଏ ଅଧ୍ୟକ୍ଷଙ୍କୁ ବିଶ୍ୱାସ ନାହିଁ । ତାଙ୍କ ହାତରେ କାଗଜ ଅଛି, କଲମ ବି ଅଛି, ତାଙ୍କ କଥାର ଓଜନ ଅଛି । ଅନୁଷ୍ଠାନର ଦାୟିତ୍ୱରେ ଥିବା ବ୍ୟକ୍ତି ଠାରୁ ହୀନତମ ଜୀବ ବୋଧହୁଏ ଆଉ କେହି ନାହିଁ । ଗୁଣ୍ଡମାନଙ୍କ ଅଭିସମ୍ପାତ, କ୍ରୋଧ, କର୍ମଚାରୀମାନଙ୍କ ଅଭିମାନ, ଚକ୍ରାନ୍ତ, ଆଖିମିଟିକା ବିଚାରି ଅଧ୍ୟକ୍ଷଙ୍କୁ ହିଁ ସହିବାକୁ ପଡ଼େ । ଏହା ସୁବିଦିତ ସତ୍ୟ । 'ଆପଣ-ଆପଣ' କହି ସମସ୍ତେ ନିଜ ନିଜର ସାଧ ମତେ ତାଙ୍କୁ ଡାମଣରେ ଫୁଟାଇ ଥାନ୍ତି । ସମସ୍ତ ପ୍ରକାର ପୀଡ଼ା ଦିଆଯାଏ, ପ୍ରତିହିଂସା ଓ ପ୍ରତିଶୋଧ ନେବା ପାଇଁ ସାଧ-ସାଧନ କରାଯାଏ । ଘରେ ଆଉ ବାହାରେ କୁମ୍ଭୀର ହାଟ ବସେ, ଆଭିଜାତ୍ୟର ଶିରୀକୁ ତଳକୁ ନୁଆଁଇ ଦିଆଯାଏ । ଆବଶ୍ୟକ ସ୍ଥଳେ ସ୍ୱକରର ମୂଲ୍ୟ ଦେବା ପାଇଁ ଡାକ୍ତରଖାନା ଯାଏ ଯିବାକୁ ପଡ଼େ ।

ଆନ୍ଦୋଳନ ହେଉଛି ଅନନ୍ତ ରୂପା, ଚିର ନବୀନା ! ପ୍ରଥମଦାବୀ ପୂରଣ ହୋଇଗଲା ପରେ ଦ୍ୱିତୀୟ ପ୍ରସ୍ଥ ଦାବୀ ଉଠିଲା—'ବିଶ୍ୱବିଦ୍ୟାଳୟ ପରୀକ୍ଷାର ତତ୍ତ୍ୱାବଧାରକ କରାନ ଯାଉ ଗୁଣ୍ଡସ୍ୱାର୍ଥ ବିରୋଧୀ ଅଧ୍ୟକ୍ଷଙ୍କୁ । ସେ ଗୁଣ୍ଡମାନଙ୍କର ଦାବୀ ପ୍ରତି ଦିତମ୍ପୃହ, ନିସ୍ତରଣ ଓ ରୁକ୍ଷ ! ତାହା ମଧ୍ୟ ଅଚିରେ ପୂରିତ ହେଲା । ଜଣେ ଦୟାଦ୍ର ଚିତ୍ତ ଅଧ୍ୟାପକଙ୍କୁ ସୁପରିନଟେଣ୍ଡେଣ୍ଟ କରାଗଲା । ସେ କୋମଳ ମଧୁର ବଚନ କହି ପାଣିରେ ଯର ପକାଇବାରେ ସିଦ୍ଧହସ୍ତ । ଏଥିରେ ଗୁଣ୍ଡସମାଜ ନିରାପଦ ମଣିଲେ ନାହିଁ, ନିଜର ଦାବୀକୁ ଅଧିକ ଏକଛତ୍ରବାଦ ଅଥବା ଜୁଲମବାଜୀ ଗୁଣ୍ଡାରାଜ ଆଡ଼କୁ ମୁହାଁଇ ନେଲେ । ଯେଉଁ ଅଧ୍ୟାପକମାନେ ବିଭିନ୍ନ ରାଜନୀତିକ ଦଳ ସହିତ ସଂଶ୍ଳିଷ୍ଟ, ସେମାନଙ୍କ କଥାବାର୍ତ୍ତା, ଉପଦେଶ ଅତି ହିପ୍ଳବୀ ଧରଣର । ଗୁଣ୍ଡମାନଙ୍କ ସ୍ୱାର୍ଥ ସଂରକ୍ଷଣ ପାଇଁ ସେମାନେ ସର୍ବଦା ବ୍ୟଗ୍ର । ଉଦୀୟମାନ ପ୍ରତିଭାର ବ୍ୟାମଚକ୍ଷୁ ବୋଲାଇବା ସବୁବେଳେ ଛାତ୍ରନେତାମାନଙ୍କ ସ୍ୱଭାବ । ଯେଉଁଠି ପରୀକ୍ଷାରେ ନମ୍ବର, ଦୁର୍ନୀତିର ପଥମୁକ୍ତ, ଆର୍ଥିକ ଅନୁଦାନ ସ୍ୱଚ୍ଛଳ, ସେଠାରେ ସେମାନେ ସବୁବେଳେ ନତଜାନୁ । ସେମାନଙ୍କ ନିକଟରେ ଅନୁରକ୍ତି ସବୁଠାରୁ ପ୍ରଗାଢ଼ । ଏଣୁ ସେହି ଉପଦେଷ୍ଟା ମାନଙ୍କ ପରାମର୍ଶରେ ପୁନରୁଚ୍ଚାରଣ କରାଗଲା—'କଲେଜର କୌଣସି ପଦାଧିକାରୀଙ୍କୁ ତତ୍ତ୍ୱାବଧାରକ, ନିରୀକ୍ଷକ ଆଦି ବିଶ୍ୱବିଦ୍ୟାଳୟ ପରୀକ୍ଷାର ଦାୟିତ୍ୱ ଦିଆ ନ ଯାଉ ! ବିଶ୍ୱବିଦ୍ୟାଳୟ ପରୀକ୍ଷାକୁ ବନ୍ଧନ ମୁକ୍ତ କରାଯାଉ !'

ଏଭଳି ସାମନ୍ତସ୍ୟହୀନ, ଭାରସାମ୍ୟ ବିହୀନ ପରିସ୍ଥିତିରେ କୁଳପାଳଙ୍କଠାରୁ କୁଳପାଳଙ୍କ ପର୍ଯ୍ୟନ୍ତ ତଟସ୍ଥ ହୋଇଗଲେ ଅସ୍ୱସ୍ତି ଭୀଷଣ ଅସ୍ୱସ୍ତି । ଭୟଙ୍କର ଅଶାନ୍ତି ।

ଏ ମାମଲା ସହଜରେ ଛିଡ଼ିବାର ନୁହେଁ । ଶାନ୍ତିଶୃଙ୍ଖଳା ରକ୍ଷାର ଦାୟିତ୍ୱ ଦିନକୁ ଦିନ ବଢ଼ିବାକୁ ଲାଗିଲା । ବିଶ୍ୱବିଦ୍ୟାଳୟର କର୍ତ୍ତୃପକ୍ଷଙ୍କ ସହିତ ଘନଘନ ଉଚ୍ଚସ୍ତରୀୟ କଥାବାର୍ତ୍ତା ଚାଲିଲା । ଅନେକ ଭାବେ ବିଶ୍ୱବିଦ୍ୟାଳୟର ପରିସର ମଧ୍ୟରୁ ଖୋଦ ତତ୍ତ୍ୱାବଧାରକ, ନିରୀକ୍ଷକ, ସମୀକ୍ଷକ ଆଦି ସଦଳବଳେ ଆସି ପରୀକ୍ଷା କେନ୍ଦ୍ରରେ ଉପସ୍ଥିତ ହେଲେ । ଛାତ୍ରମାନେ ଅସାଧ ସାଧନ କଲେ । ଜିଲ୍ଲାନୁଷ୍ଠାନ କମିଟିର କାର୍ଯ୍ୟକୁ ସର୍ବସାଧାରଣ ଧନ୍ୟ ଧନ୍ୟ କଲେ । ଅଧ୍ୟକ୍ଷ ଓ ଅଧ୍ୟାପକବର୍ଗଙ୍କ ଗାଲରେ ଚନ୍ଦ୍ରକାଳି ବୋଲି ଦିଆଗଲା । ସେମାନେ ମୁଣ୍ଡ ତଳକୁ ପୋତି ବସିଲେ । ଆଉ ଆକ୍ରୋଶମୂଳକ ମନୋଭାବ ସେଠି କାର୍ଯ୍ୟକରୀ ହାରବେ ନାହିଁ ବୋଲି ସାଧାରଣଙ୍କର ହୃଦ୍‌ବୋଧ ହେଲା ।

ତଥାପି ନିର୍ଦ୍ଦିଷ୍ଟ ତାରିଖରେ ଛାତ୍ରମାନେ ପରୀକ୍ଷା ନ ଦେଇ ଅଡ଼ିବସିଲେ । ଆରମ୍ଭ କରିଦେଲେ ଅନଶନ-ସତ୍ୟାଗ୍ରହ । ଏତେ ଦିନର ପ୍ରସ୍ତୁତି ବ୍ୟାପକ ବାସ୍ତବରେ ରୂପାନ୍ତରିତ ହେଲା । ସେମାନଙ୍କୁ ସମର୍ଥନ କରାଇ ଅନ୍ୟ କେତେକ କଲେଜର ଛାତ୍ର-ପ୍ରତିନିଧି ଆସି ପରିବେଶକୁ ସର୍ବଦା ସରଗରମ କରିବାରେ ଲାଗିଗଲେ । ଭାଷଣରେ ଖଣ୍ଡ-ମଣ୍ଡନ ପ୍ରକମ୍ପିତ ହେବା ସଙ୍ଗେ ସଙ୍ଗେ ବିବୃତିରେ ଖବର କାଗଜର ପୃଷ୍ଠାମାନ ମଣ୍ଡିତ ହେବାକୁ ଲାଗିଲା । କେନ୍ଦ୍ର କେନ୍ଦ୍ର ଆଶୁ ଯଶପ୍ରାର୍ଥୀ ତରୁଣ ସମ୍ପାଦକ ଏହି ଛାତ୍ର ଆନ୍ଦୋଳନକୁ କେନ୍ଦ୍ର କରି ସମ୍ପାଦକୀୟ ଲେଖି ଗଡ଼ ଜିଣିଗଲେ ବୋଲି ଅନୁଭବ କଲେ । କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ଯେଉଁଭଳି ବର୍ଣ୍ଣାଢ଼୍ୟ ଭାଷାରେ ଅଭିଯୋଗମାନ ଠିଆ କରାଇଲେ, ସେଥିରୁ ଜଣାଗଲା ଇଚ୍ଛାକୃତ ଭାବରେ ସେମାନଙ୍କ ଭାବମୂର୍ତ୍ତିକୁ କାଳିମାଲିପ୍ତ କରାଯାଉଛି । ଆଧୁନିକ ଯୁଗର ନୂତନ ମାରଣାସ୍ତ୍ର ସମ୍ବାଦପତ୍ର, ଯାହା ସହାୟତାରେ କେତେ କେତେ ସତ୍ୟକୁ ଅସତ୍ୟରେ ପରିଣତ କରାଯାଇ ପାରୁଛି ଓ କେତେ କେତେ ଅସତ୍ୟକୁ ସତ୍ୟର ପ୍ରଲେପ ଦେଇ ବଡ଼ ବଡ଼ ହରଫରେ ଛାପି ପ୍ରଚାର କରାଯାଉଛି । ଛାତ୍ରର ଶ୍ରେଷ୍ଠତ୍ୱ, ତରୁଣର ପବିତ୍ରତ୍ୱକୁ କାୟମ ରଖିବା ପାଇଁ ଯେଉଁ କାର୍ଯ୍ୟ ହୋଇ ଆସୁଥିଲା, ତାହାର ହିଁ ଘଟିଲା ବିସ୍‌ଫୋରଣ । ଉପହାସ, ଇଙ୍ଗିତ, ରୁଚିହୀନ କୁତ୍ସିତ ବିଦ୍ରୂପର ସୀମା ରହିଲା ନାହିଁ । ଅବିଦ୍ୟାର କରାମତି ଦେଖାଇ ଦିଆଗଲା ପାରୁପର୍ଯ୍ୟନ୍ତ ।

କେବଳ ଶିକ୍ଷା ବିଭାଗର ନିର୍ଦ୍ଦେଶକ କାହିଁକି, ସ୍ଥାନୀୟ ଏମ୍.ଏଲ୍.ଏ., ସେଠି ରାଜନୀତିକ କର୍ମୀ ଓ ବିଭାଗୀୟ ମନ୍ତ୍ରୀ ମହୋଦୟଙ୍କ ପର୍ଯ୍ୟନ୍ତ ସତ୍ୟାସତ୍ୟର ସମୀକ୍ଷା ନ କରି ଅନଶନକାରୀ ଛାତ୍ରମାନଙ୍କ ପ୍ରତି ସହାନୁଭୂତିଶୀଳ ହୋଇ ଉଠିଲେ । ଯୁଗେ ଯୁଗେ କାଳେ କାଳେ ଏହିଭଳି ସଙ୍କଟ ମୁହୂର୍ତ୍ତରେ ମିଥ୍ୟାଚାର, ସ୍ୱୈରାଚାରର ପ୍ରତିରୋଧ ନ କରି ସୁବିଧାବାଦୀମାନେ କ୍ଲୀବତ୍ୱ ବରଣ କରି ନେଇଥାନ୍ତି । ବିବେକର ଆହ୍ୱାନ ପ୍ରତି ବଧିର ହୋଇଯାନ୍ତି । ପୋଲିସ ଓ ଡାକ୍ତରଙ୍କ ଗାଡ଼ି ଦୁଇବେଳା ଛୁଟିଲା ଉଦ୍‌ବେଗ ଜନକ ଅବସ୍ଥାକୁ ସମ୍ଭାଳିବା ପାଇଁ । କେତେଦିନ ପର୍ଯ୍ୟନ୍ତ ଦିନ ଓ ରାତି ସବୁ ହୋଇଗଲା ସମାନ ।

ଗୁଣ୍ଡାମାନେ ଏହି ଟାକି ପ୍ରତିକ୍ରିୟାଶୀଳ । କାର୍ଯ୍ୟକଳାପରୁ, ବାଡ଼ମୂଳରୁ, ଗୁମ୍ଫା ଦୋକାନରୁ, ଛାତ୍ରାବାସରୁ ତଥ୍ୟ ସଂଗ୍ରହ କରି ଗୁପ୍ତଚରମାନେ ରିପୋର୍ଟମାନ ପଠାଇଲେ । ଅନଶନକାରୀମାନଙ୍କୁ ଟେଣ୍ଟ ଭିତରେ ରସଗୋଲା ଓ ସିଝାଅଣ୍ଡା ଅବଳୀଳା କ୍ରମେ ଯୋଗାଇ ଦିଆଯାଉଛି । ତାଳ ମଧ୍ୟରେ ସରବତ କମ୍ବା ପଣା ଧରାଇ ଦିଆଯାଉଛି ଧାଇ ଖାଇବାକୁ ଯିବା ବାଟରେ । ସବୁ ପଦାର୍ଥ ଗଳାଧଃକରଣ କରି ପୁଣି ଆଠଟା ବେଳକୁ ଯୁବ ଶକ୍ତି ପାଲଟି ଯାଉଛି ଶିବ ଶକ୍ତି ଭଳି, ଟୁଲୁ ଟୁଲୁ-ନୟନ ଥୁବୁ ଥୁବୁ ଗାଲ, ଗୁରୁଗମ୍ଭୀର ବଦନ । ମର୍ମାନ୍ତିକ ପ୍ରହସନ କଲା ଭଳି ଗାନ୍ଧୀଫଟୋ ଆଗରେ ଦୈନିକ ସଜଫୁଲ ମାଳ ବେକରେ ଲମ୍ବାଇ ଅନଶନକାରୀମାନେ ବସିରହୁଥିବାରୁ ସେମାନଙ୍କ ଅନୈତିକ ଆଚରଣ ସ୍ୱତଃ ପ୍ରମାଣିତ ହେଉଛି । ଅନଶନ ଧର୍ମଘଟ ହେଉଛି ଅହିଂସ ପ୍ରତିବାଦର କାର୍ଯ୍ୟକାରୀ ହତିଆର । ଯେଉଁଠି ହାତବୋମା କମ୍ବା ଡିନାମାଇଟ୍‌କୁ ସମସ୍ତ ଶକ୍ତିର ଆଧାର ବୋଲି ଗ୍ରହଣ କରାଯାଏ, ବନ୍ଧୁକ ମୂନରେ ବିପ୍ଳବ କରାଯାଏ, ସେ କ୍ଷେତ୍ରରେ ଜନଜୀବନ ଭିତରେ ଶାସନ ବିରୋଧି ମନୋଭାବ ସୃଷ୍ଟି କରିବା ପାଇଁ ଅନଶନ କେବଳ ଗୋଟାଏ ପରିହାସ ମାତ୍ର ।

ଏହି ମର୍ମଦାହୀ ଅପମାନ କଥା ଶୁଣିବାକୁ ପାଇ ଛାତ୍ରନେତା ହଠାତ୍ ଚଉକି ଉପରେ ଠିଆ ହୋଇ ଯାଇ ଗରମା-ଗରମ ଭାଷଣ ଆରମ୍ଭ କରିଦେଲେ—"ଭାଇମାନେ, ଆନ୍ଦୋଳନକୁ ଭ୍ରଷ୍ଟ କରିବା ପାଇଁ ପ୍ରତିକ୍ରିୟାଶୀଳ ଶକ୍ତି ଆମ ବିରୁଦ୍ଧରେ ମୁଣ୍ଡ ଉଠାଉଛି । ଆମର ନୈତିକ ମାନଦଣ୍ଡକୁ ଦୋହଲାଇ ଦେବାକୁ ଚେଷ୍ଟା କରୁଛି । ଆମର ଆନ୍ଦୋଳନକୁ ହେୟ କରିବାକୁ ଇଚ୍ଛା କରୁଛି । ଆମକୁ ହେୟ କରିବା ଅର୍ଥ ସମଗ୍ର ଛାତ୍ର ସମାଜକୁ ହେୟ କରାଇବା । କିନ୍ତୁ ଆମର କୌଣସି ପ୍ରକାର ଅସଦୁଦ୍ଦେଶ୍ୟ ନାହିଁ । ଏହି ଆନ୍ଦୋଳନ ପ୍ରତି-କ୍ରିୟାଶୀଳ ଗୋଷ୍ଠୀର ମୁଖା ଖୋଲିଦେବ ।" ଭାଷଣ ପରେ ପରେ ବାହାରିଲା ଶୋଭା-ଯାତ୍ରା । ଛାତ୍ରଙ୍କ ସହିତ ଅଛାତ୍ର ଓ ଅଣଛାତ୍ର ମିଶି ଶୋଭାଯାତ୍ରାରେ ଏକାକାର । ଉଚ୍ଛୃଙ୍ଖଳା ଚରମ ସୀମାକୁ ସ୍ପର୍ଶ କରିଛି । ଗଳାର ଶିରା ଫୁଲାଇ ସ୍ଲୋଗାନ ଦେଉଛନ୍ତି ଚପରାସୀମାନେ । ପଶୁରପଥ ମାରୁଛନ୍ତି କରଣୀ ବାପୁଡ଼ା । ଢ଼୍ରମା ଅଦାୟରେ ଅଂଶଗ୍ରହଣ କରୁଛନ୍ତି ଅନ୍ୟାନ୍ୟ କର୍ମଚାରୀ- ଯେଉଁମାନେ କିଞ୍ଚିତ ଉଚ୍ଚାକାଙ୍କ୍ଷୀ । ଯେଉଁଠି ସମ୍ଭବ ଓ ଯେତେବେଳେ ସମ୍ଭବ, ସ୍ୱାର୍ଥର ସୀମାକୁ ରବର ପରି ଟାଣି- ଓଟାରି ବଢ଼ାଇବା ପାଇଁ ସାରୁ ପର୍ଯ୍ୟନ୍ତ ସମସ୍ତେ ବଦ୍ଧ-ପରିକର । ସ୍ୱାର୍ଥରକ୍ଷା ପାଇଁ ନୈତିକତାକୁ କାବୁଲରକୁ ପଠାଇଦେବା ନିମନ୍ତେ ଆଗଭର ଅଧ୍ୟକ୍ଷଙ୍କର ନାନାଦି କୁକର୍ମର ପ୍ରତ୍ୟକ୍ଷ ପ୍ରମାଣ ପାଇଥିଲା ଭଳି କଥାମାନ ଖୁବ୍ ଉଚ୍ଚ ସ୍ୱରରେ ନିରବଚ୍ଛିନ୍ନ ଭାବେ ପ୍ରଚାର କରିବାକୁ ପ୍ରୟାସୀ ।

|| ତିନି ||

ପୂର୍ବର ଦାବୀଗୁଡିକ ପଛକୁ ଛାଡ଼ିଗଲା ପରେ ଛାତ୍ରମାନେ ପରୀକ୍ଷା ବର୍ଜନ କରି-ଥିବାର ଉଦ୍ଦେଶ୍ୟ ନିର୍ଦ୍ଦିଷ୍ଟ ହେଲା, ସେମାନଙ୍କର ପାଠପଢ଼ା ଶେଷ ହୋଇ ନାହିଁ । ପାଠ

ପଢ଼ା ଶେଷ ହୋଇ ନ ଥିଲେ ପରୀକ୍ଷାରେ ବସିବା ଉଚିତ ନୁହେଁ । ଏହା ସମସ୍ତ ଚିନ୍ତାଶୀଳ ବ୍ୟକ୍ତିଙ୍କ ବିବେକକୁ ଆନ୍ଦୋଳିତ କରୁଛି । ଏହାକୁ କେନ୍ଦ୍ର କରି ବିଭିନ୍ନ ପ୍ରକାର ମାରଣ, ତାଡ଼ଣ, ବଶୀକରଣ ଓ ଉଚ୍ଚାଟନର ଝଡ଼ ସୃଷ୍ଟି ହୋଇଯାଉଛି । ଶିକ୍ଷାନୁଷ୍ଠାନ ଉଠିଚୁଛି ପଡ଼ୁଛି । ଅଧ୍ୟାପକମାନଙ୍କ ଠାରୁ ଲିଖିତ ମତାମତ ସଂଗ୍ରହ କରାଗଲା । ସେମାନେ କାଳବିଳମ୍ବ ନ କରି ଜଣାଇ ଦେଲେ ଯେ ଯଥା ନିର୍ଦ୍ଦିଷ୍ଟ ପାଠ୍ୟକ୍ରମ ଅନୁଯାୟୀ ପଢ଼ାପଢ଼ି ଶେଷ ହୋଇଛି ।

ଛାତ୍ରମାନଙ୍କ ପ୍ରତିନିଧି ମୁହଁରେ ସ୍ୱଳ୍ପ ହସ ଫୁଟାଇ ନିତାନ୍ତ ନମ୍ର ଭାବରେ, କେତେକ ପରିମାଣରେ ଗର୍ବର ସହିତ ଖାମଖିଆଲି ଭାବେ ଉତ୍ତର ଦେଲେ—„ଅଧ୍ୟାପକମାନେ ଭିତ୍ତିଶୂନ୍ୟ । ଏମାନେ ଚାକିରିର ମୋହ ଏଡ଼ାଇ ନ ପାରି ମିଥ୍ୟା କଥା କହୁଛନ୍ତି, ଆମକୁ ପାଠପଢ଼ାଇ ନାହାନ୍ତି । ଶ୍ରେଣୀକୁ ନ ଆସି ଉପସ୍ଥାନ ପକାଇ ଦେଇଛନ୍ତି । ଛାତ୍ରର ଜନ୍ମଗତ ଦାବୀକୁ ସଂହାର କରିଛନ୍ତି, ଶକ୍ତି ଓ ସ୍ୱାତନ୍ତ୍ର୍ୟକୁ ଦାବି ଦେଇଛନ୍ତି ।"

ପ୍ରତ୍ୟେକ ବିଦ୍ ଯେପରି ଶାଣଦିଆ ତୀକ୍ଷ୍ଣତାରେ ସୁତୀକ୍ଷ୍ଣ । କୁଣ୍ଠା, ସଂଶୟ, ଇଚ୍ଛା ଓ ଅନିଚ୍ଛାର ସ୍ଥାନ ନାହିଁ । ଅଧ୍ୟାପକମାନେ ସ୍ୱତଃ କ୍ଷୁବ୍ଧ ହୋଇ ଉଠିଲେ । ସେମାନେ ଅସହିଷ୍ଣୁ କଣ୍ଠରେ ପ୍ରତିବାଦ କଲେ—"ଛାତ୍ରମାନେ ସ୍ୱାର୍ଥାନ୍ୱେଷୀମାନଙ୍କ ଖପ୍ପରରେ ପଡ଼ି ଅଯଥା ଦୋଷାରୋପ କରୁଛନ୍ତି । ଆମେ ଯଦି ଶ୍ରେଣୀକୁ ନ ଆସିଲୁ, ତାହିଁକି ଛାତ୍ରମାନେ ପୂର୍ବରୁ ଏହି ଆପତ୍ତି ଉଠାଇଲେ ନାହିଁ ? କାହିଁକି ପୂର୍ବରୁ ଆନ୍ଦୋଳନ ନ କରି ବର୍ଷଶେଷକୁ ରହିଲେ ? କାହିଁକି ଆନ୍ଦୋଳନର ପ୍ରଥମ ପର୍ଯ୍ୟାୟରେ ଏହି ଦାବୀ କଲେନାହିଁ ? ଏହା ଏକ ପରିକଳ୍ପିତ ଚକ୍ରାଧାର ।"

ବସ୍ତୁତଃ ଆରମ୍ଭ ହୋଇଗଲା ଏକ ପ୍ରକାର ପ୍ରଚ୍ଛନ୍ନ ପ୍ରତିଯୋଗିତା । ଅସୀମ ଜ୍ଞାନ ସମୁଦ୍ରର ବେଳାଭୂମିରୁ ଛାତ୍ରମାନେ କେତୋଟି ଖଣ୍ଡ ଉପଳ ସଂଗ୍ରହ କଲେ କିମ୍ବା ଅଧ୍ୟାପକମାନେ କେତେ ପରିମାଣରେ ସେହି ସଂଗ୍ରହର ନିର୍ଭୁଲ ମୂଲ୍ୟାୟନ କଲେ ସେଥିପାଇଁ କୌଣସି ପ୍ରକାର ମାପୁଣି କାଠିର ବ୍ୟବହାର ସମ୍ଭବ ନୁହେଁ । ନିଜେ ଜ୍ଞାନଗରୀୟାନଗଣ ଯେତେବେଳେ ଅସ୍ୱୀକାର କରୁଛନ୍ତି, ସେତେବେଳେ ସେମାନେ ସବୁ ଜାଣି ମଧ୍ୟ ଦଳଗତ ଭାବରେ କିଛି ଜାଣି ନାହାନ୍ତି ବୋଲି କହିବା ବିଚିତ୍ର କଥା ନୁହେଁ । ଏଠାରେ ଜ୍ଞାନଦାତା ଅଧ୍ୟାପକମାନେ ନିଜକୁ ଜାଳି ଜାଳି, ଜଳାଇ ଜଳାଇ ଯେଉଁ ଜ୍ଞାନାଲୋକ ଓ ଦୀପ ବିତରଣ କରିଗଲେ ତାର ଫଳଶ୍ରୁତି କାହିଁ ? ଛାତ୍ର ଓ ଅଧ୍ୟାପକର ସମ୍ପର୍କ ହେଲାଣି ଶୋଷକ ଓ ଶୋଷିତର ସମ୍ପର୍କ ଭଳି । ଛାତ୍ରନେତାଙ୍କ ମାଇକ୍ ବାରମ୍ବାର ଗର୍ଜନ କରି ବୁଲିଲା—'କାହିଁକି ପାଠପଢ଼ା ଶେଷହେଲା ନାହିଁ—ଅଧ୍ୟକ୍ଷ ଜବାବ ଦିଅ, ଅଧ୍ୟକ୍ଷ ଜବାବ ଦିଅ, ଅମଲାତନ୍ତ୍ର ଜବାବ୍ ଦିଅ, ଜବାବ ଦିଅ, ଜବାବ୍ ଦିଅ !' ସେମାନଙ୍କ ଜନପ୍ରିୟତା ହେଲାଣି କ୍ରମବର୍ଦ୍ଧମାନ । ଏ କ୍ଷେତ୍ରରେ ଅନନ୍ତ ବିତର୍କର ସ୍ଥାନ କାହିଁ ?

ପରିବେଶର ଶୋଧନ ନିମନ୍ତେ ସରକାରୀ ମହଲରେ ଭ୍ରୂକୁଞ୍ଚନ ଦେଖାଗଲା । ମୁଣ୍ଡରେ କୁଟିଳଚକ୍ର ଘୂରିଲା । ସେମାନେ ଧୀରେ ଧୀରେ ରୁଷ୍ଟ ହେଲେ ସୁଦ୍ଧା, ଏଣେ ଛାତ୍ର ସମାଜର ଦାବୀକୁ ଅଧିକ ସ୍ପଷ୍ଟତର ଓ ଦୃଢ଼ତର କରିବା ପାଇଁ ବହୁମୁଖୀ କାର୍ଯ୍ୟ ଆରମ୍ଭ ହୋଇଗଲା । ଯିଏ ଶୁଣିଲା ସିଏ ମହାବିସ୍ମୟରେ ସହିତ କହିଲା—ପାଠ ନ ପଢ଼ାଇ ନିଘଞ୍ଚ—ଗୋବରଖିଆ ପିଲାମାନଙ୍କୁ ଶିକ୍ଷା ଦେଇଦେବା ପାଇଁ ହୀନତମ ଚକ୍ରାନ୍ତ ସର୍ବଥା ନିନ୍ଦନୀୟ । ନିବେଦନ ପତ୍ର ଛପା ହୋଇ ଘରେ ଘରେ ବଣ୍ଟାଗଲା—"ଛାତ୍ରଙ୍କର ଜ୍ଞାନଲାଭ ପାଇଁ ଦୁର୍ବାର କାମନା ।" ଖବର କାଗଜ ମଧ୍ୟରେ ପୂରିଇ ତାହା ପାଠକ-ମାନଙ୍କୁ ଯୋଗାଇ ଦିଆଗଲା, ବସ୍ ପଛରେ ମାରି ସାରା ଓଡ଼ିଶାର ଯାତ୍ରୀମାନଙ୍କୁ ଜଣାଇ ଦିଆଗଲା । ଅଚିରେ ଠାକୁର ଭିଣ୍ଡରେ ଛେଳି ହେଲା କୁକୁର । ଅଧ୍ୟାପକ-ମାନେ ମୁଣ୍ଡରେ ହାତ ଦେଇ ବସି ରହିଲେ । ଗ୍ଲାନିରେ, ଲଜ୍ଜାରେ, ଆଉ ଅପ-ମାନରେ ସେମାନଙ୍କର ଲକ୍ଷିତ ଗୌରବ ଯେପରି ଧୂଳିରେ ମିଳାଇଗଲା । ଶିକ୍ଷାଯୁକ୍ତ-ନର ନିର୍ମମ-ନିଷ୍କରୁଣ ପଥରେ ସେମାନେ ଦେଖାଗଲେ ଯେପରି ଜଣେ ଜଣେ ପାଥେୟ-ହୀନ ଭିକ୍ଷୁକ ଭଳି । ଯେଉଁ ଛାତ୍ରମାନେ ଆଗକୁ ଭରସି କରି ଆସି କଥା କହିବାକୁ ସାହସ କରୁ ନ ଥିଲେ, ସେମାନେ ଦୂରରୁ ଡାକିବାର ଶୁଣାଗଲା—"ଗୋବନ୍ଧା, ଗୋବନ୍ଧା, ଅବେ ଶ୍ରୀ ଗୋବନ୍ଧାବେ !" କାନ୍ଥରେ-କବାଟରେ ଚାଉରେ ଗୋଲି ଲେଖି ଦିଆଗଲା—'ଆରେ ବାପ ଗୋବିନ୍ଦ, ଆଉ ନ କର ଆନନ୍ଦ !' ଶିକ୍ଷାଦାନ ବୃତ୍ତିକୁ ଯେ ଆଦର୍ଶ ବୃତ୍ତି ବୋଲି କୁହାଯାଉଥିଲା, ତାହାର ସ୍ୱର ବଦଳିବାକୁ ବାଧ୍ୟ ହେଲା ।

ଦ୍ୱିଧାହୀନ ଶ୍ୱାପଦର ଅନ୍ୟ ନାମ ହେଉଛି ଅନ୍ଧତା ! ଏଠାରେ ସେହି ଅନ୍ଧତା ହିଁ ହୋଇ ଉଠିଲା ପୀଡ଼ାପ୍ରଦ । ନିକଟରୁ ଦେଖିଲେ ଅନେକ ଶ୍ରେଷ୍ଠ ଜିନିଷ ବଡ଼ ଦେଖା-ଯାଏ । କଲେଜର ପାଖ-ଆଖ, ଗାଆଁ-ଗଣ୍ଡା, ହାଟ-ବଜାରଠାରୁ ଆରମ୍ଭ କରି ନିକଟସ୍ଥ ସରକାରୀ-ବେସରକାରୀ ଦପ୍ତର ଗୁଡ଼ିକରେ ଏହି କଥା ବେଶ୍ କିଛିକାଳ ପାଇଁ ତୀବ୍ର ଆଲୋଚନା ବିଷୟ ହେଲା । ସାଧାରଣରେ ବହୁମତ ଉଠିଲା, ପୁଣି ତାହା ଦଳ-କାଳି ମତର ସ୍ୱରରେ ମିଳାଇଗଲା । ବହିର୍ଗତ ଛାତ୍ରମାନଙ୍କର ସମଷ୍ଟି ଚିନ୍ତାକୁ ନବ ସ୍ଥିତ ହେବାକୁ ଆରମ୍ଭ କଲା । ପ୍ରାତ୍ୟହିକ ଜୀବନର ଶତଶତ ତୁଚ୍ଛତା ମଧ୍ୟରେ ଯେଉଁ ଅନାସ୍ୱାଦିତ ପୂର୍ବ ଆନନ୍ଦ ଉପଲବ୍ଧି କରିଗଲା, ଆକାଶ ପାତାଳ କମ୍ପାଇ ଦିଆଗଲା, କଲେଜର ପ୍ରଚଳିତ ଅଭିଧାନରେ ତାହାର ଅର୍ଥ ମହତ୍ତ୍ୱ, ବୀରତ୍ୱ ଓ ଆତ୍ମସମ୍ମାନବୋଧ ; ପ୍ରଚଳିତ ଜୀବନ ଧାରାରେ କ୍ଷଣିକ ଆମୋଦ, କ୍ଷଣିକ ଉତ୍ତେଜନା, କ୍ଷଣିକ ବ୍ୟତିକ୍ରମ କିଏ ନ ଚାହେଁ ? ପ୍ରୌଢ଼ ଓ ବୃଦ୍ଧବ୍ୟକ୍ତିମାନେ ମଧ୍ୟ ଏ କ୍ଷେତ୍ରରେ ହୋଇ ଉଠିଲେ କିଶୋର କୁମାର, ଅପରିଣାମଦର୍ଶୀ ଶକ୍ତିର ଆଧାର !

ପାଠପଢ଼ା ନ ହୋଇ ପରୀକ୍ଷା ଦେବା ପାଇଁ ବାଧ୍ୟ କରାଯାଉଥିବାରୁ ବୃଦ୍ଧ ଅଧ୍ୟକ୍ଷଙ୍କୁ ଧରିଆଣି ସର୍ବସାଧାରଣଙ୍କ ସମ୍ମୁଖରେ ଲାଞ୍ଛିତ କରିଗଲା । ଏକାଧିକବାର ତାଙ୍କର କୁତ୍ସିତ

ବର୍ଣ୍ଣନ ଭୁଣପତ୍ରଲିକାକୁ ଦାହ କରାଗଲା । ପୁଣିଥରେ ଛାତ୍ରୀମାନଙ୍କ ମଧ୍ୟରୁ କେହିକେହି ବିପର୍ଯ୍ୟସ୍ତ ବେଶରେ କେଶ ମୁକୁଳା କରି, ହାତରୁ କାଚ ଓହ୍ଲାଇ ଅଧଃଛନ୍ନର ପତ୍ନୀ ଭୂମିକାରେ ଅବତୀର୍ଣ୍ଣ ହୋଇ ଅଶ୍ରୁଆଚ୍ଛନ୍ନ କଣ୍ଠରେ ନିରବଚ୍ଛିନ୍ନଭାବେ ବାହୁନ କାନ୍ଦିଲେ । ପୁତ୍ରପ୍ରତିମ ଛାତ୍ରମାନଙ୍କ ମଧ୍ୟରୁ କେହି କେହି ମୁଣ୍ଡିତ ମସ୍ତକରେ ଜଳୋଦକ ଉତ୍ସର୍ଗପୂର୍ବକ ପିଣ୍ଡଦାନକରି ଉଚ୍ଚାରଣ କଲେ—"କାକୋପିନାମ ଦୃଢୋପି ବାୟୁଶ୍ୱାଭ୍ୟା....''ଇତ୍ୟାଦି । ଦୃଢ଼ତା ସହିତ ସାହସପୂର୍ଣ୍ଣ ପଦ ବିକ୍ଷେପରେ ସେମାନେ ନିଜର ଲକ୍ଷ୍ୟଆଡ଼କୁ ଅଗ୍ରସର ହେଲେ । ଆଚରଣ ଉପରେ ଭଦ୍ରତାର ଯେଉଁ ସର୍ବନମ୍ନ ଆବରଣ ଥିଲା, ତାହା ଅକ୍ଳେଶରେ ଛିଡ଼ାବେଲୁନ ଭଳି ଉଡ଼ିଯିବାକୁ ବିଳମ୍ବ ଘଟିଲା ନାହିଁ ।

ଏଥର ମଧ୍ୟ ଛାତ୍ରମାନଙ୍କର ଦାବୀ ପୂରଣ ହେଲା । ପ୍ରମାଣିତ ହୋଇଗଲା ବିପ୍ଳବର ଆସ୍ଥ ଜମବର୍ଦ୍ଧମାନ, ପ୍ରମାଣିତ ହୋଇଗଲା ଛାତ୍ରସମାଜ ନିତ୍ୟନୂତନ ବିଦ୍ରୋହର ପ୍ରୟାସୀ । ଆହୁରି ପ୍ରମାଣିତ ହୋଇଗଲା ଗାନ୍ଧିଯୁଗର ସତ୍ୟାଗ୍ରହ ପୂର୍ବ ତୁଳନାରେ ଯଥେଷ୍ଟ ପରିବର୍ତ୍ତିତ ଓ ଯୁଗୋପଯୋଗୀ ହୋଇ ପାରିଛି ।

ଖେଦର ଚିହ୍ନ କିମ୍ବା ହତାଶା ଦେଖାଦେଲା ନାହିଁ ଅଧ୍ୟକ୍ଷଙ୍କଠାରେ । ବରଂ ସେ ନିର୍ଦ୍ଦେଶକଙ୍କ ସହିତ ପରାମର୍ଶ କରି ପୁନର୍ବାର ପାଠଦାନର ବ୍ୟବସ୍ଥା କରାଇଲେ । ଅଧ୍ୟାପକ ଓ ଛାତ୍ର ପାରସ୍ପରିକ ନିର୍ଭରଶୀଳତାର ଅଚ୍ଛେଦ୍ୟବନ୍ଧନ ସମ୍ବନ୍ଧରେ ପୁଣି ଥରେ ନୂଆକରି ଉପଲବ୍ଧି କରାଇବା ପାଇଁ ଫଟୋ କାନ୍ଥକୁ ଗୋବରର ପ୍ରଲେପରେ ଚକ୍ଚକ୍ କରାଇଲେ । ଶ୍ରଦ୍ଧା, ଅନୁକମ୍ପା, ମମତା, ଉଦାରତା ପ୍ରଭି ଆବଶ୍ୟକୀୟ ଦୃଷ୍ଟି ଦେବାକୁ ହେଲା । ମାଷ୍ଟରୀ ବୃତ୍ତିର ଝକମାରି ! ଉଲଟାଲ କରି ଶରୀର କ୍ଷୟକରି ଗଢ଼ିବାକୁ ହୋଇଥାଏ ଜାତିର ଜୀବନ, ଦେଶର ଭବିଷ୍ୟତ । ଅଧ୍ୟାପକମାନେ ପୁନର୍ବାର ଶ୍ରେଣୀଗୃହକୁ ସୁଦୀର୍ଘ ଭାଷଣରେ ପ୍ରକମ୍ପିତ କଲେ, କିନ୍ତୁ କଡ଼ାକର ଲାଭ ହେଲାନାହିଁ । ବିଜୟୀ ଛାତ୍ରମାନେ ଉତ୍କଟ ଅହଂକାରର ବଶବର୍ତ୍ତୀ ହୋଇ କେତେବେଳେ ଆସିଲେ, ପୁଣି କେତେବେଳେ ଆସିଲେ ନାହିଁ । ଛାତ୍ରୀମାନେ ଲଜ୍ଜିତ ଅପାଙ୍ଗରେ ଥରେ ଅଧେ ଶ୍ରେଣୀଗୃହ ଆଡ଼କୁ ଅନାଇ ଦେଇ ନିତମ୍ବ ଦୋହଲାଇ ବୁଲି ପଡ଼ିଲେ । ଛାତ୍ରଆନ୍ଦୋଳନର ଫଳାଫଳ ଯାହା ହେଉ ନା କାହିଁକି, ଛାତ୍ରୀମାନଙ୍କୁ ମନମୁତାବକ ସାଥୀ ସଂଗ୍ରହ ପାଇଁ ଦେଇଛି ଅଖଣ୍ଡ ଅଧିକାର । କଏ କମିଟି ପ୍ରକ୍ଟରର ବ୍ୟବସ୍ଥା କରି ନିଶ୍ଚିନ୍ତରେ ଛାତି ଫୁଲାଇ ବୁଲିଲେ ବଜାରରେ । ବୁଝି ପାରିଲେ ନାହିଁ କୌତୁକ-ସ୍ନିଗ୍ଧ ଚିତ୍ତରେ ଯେଉଁ ବାଟରେ ବୁଲୁଛନ୍ତି ତା'ର ଶେଷ ପ୍ରାନ୍ତରେ ରହିଛି ଆଦର୍ଶଗତ ଓ ସାଂସ୍କୃତିକ ମୃତ୍ୟୁ । ରାଜନୀତିର ହଟଚମଟ ଦେଖାଇ, ପ୍ରବଞ୍ଚନା କରି, କୌଶଳ କରି, ଶାରୀରିକ ଓ ମାନସିକ ଚାପ ସୃଷ୍ଟିଦ୍ୱାରା କୌଣସି ଉଦ୍ଦେଶ୍ୟ ସାଧନ କରିବା ଅର୍ଥ ଆଦର୍ଶର ପତନ ଘଟାଇବା ତାହା ପ୍ରକୃତ କର୍ମ ନୁହେଁ । ଏହାର ପ୍ରତିକ୍ରିୟା ସୁଦୂରପ୍ରସାରୀ ।

## ॥ ଚାର ॥

କର୍ମବୃନ୍ଦମାନଙ୍କର ଦାୟିତ୍ୱ ଜ୍ଞାନ ଶୂନ୍ୟତା ଯୋଗୁଁ କିମ୍ବା ଅନ୍ୟ ଯେକୌଣସି କାରଣରୁ ଆନ୍ଦୋଳନର ସର୍ବୋତ୍ତମ ବିସ୍ତାର ଯେପରି ଘଟିଲା, ସେହିପରି ଦ୍ରୁତ ସଂକୋଚନ ଘଟିଲା । ବିଭିନ୍ନ ସ୍ତରରୁ ରିପୋର୍ଟ ପ୍ରସ୍ତୁତ ହୋଇ ଗଲା ସରକାରଙ୍କ ପାଖକୁ । ସ୍ତୁପୀକୃତ ରିପୋର୍ଟ ମଧ୍ୟରେ ଖୋଦ ସେକ୍ରେଟାରୀ ବୁଡ଼ିଗଲେ । ପୋଷାକ ଯେଉଁପରି ମଣିଷର ମର୍ଯ୍ୟାଦା ବଢ଼ାଏ, ସେହିପରି ରିପୋର୍ଟ ହିଁ ବଢ଼ାଉଛି । ଭାରତୀୟ ଗଣତନ୍ତ୍ରର ମର୍ଯ୍ୟାଦା ରିପୋର୍ଟ ଠୁଲକର ଶାସନ ସମ୍ଭବ କରିବା ପାଇଁ ଅଧିକ ସମୟ ଲାଗିଲା ନାହିଁ । ଅନେକ ପରିମାଣରେ ଆନ୍ଦୋଳନ ପ୍ରଶମିତ ହେଲା ପରେ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ପୁନର୍ବାର ପରୀକ୍ଷା କରିବା ପାଇଁ ବ୍ୟବସ୍ଥା କଲେ । ସେମାନେ ନିଶ୍ଚିତ ଥିଲେ ଯେ ତେଲ ଚିକ୍କଣ ତରୁଣମାନଙ୍କର ହୁଙ୍କାର ଅଚିରେ ମିଳାଇ ଯିବ । ଅକୃପଣ ଭାବରେ ପରୀକ୍ଷାର ତତ୍ତ୍ୱାବଧାରକ ଇତ୍ୟାଦି ବାହାରୁ ନିଯୁକ୍ତ କଲେ । ସେମାନଙ୍କ କର୍ମରେ କୌଣସି ପ୍ରକାର ତ୍ରୁଟି କିମ୍ବା ବିଚ୍ୟୁତି ପରିଲକ୍ଷିତ ହେଲା ନାହିଁ; ବରଂ ପୂର୍ବ ଅପେକ୍ଷା ଅଧିକ ସତର୍କତାର ସହିତ ଅଧିକ ନିଷ୍ଠାର ସହିତ କାର୍ଯ୍ୟ କରିବାକୁ ଲାଗିଲେ । ବିଶ୍ୱବିଦ୍ୟାଳୟର ସୁପରଭାଇଜର ମାନେ ପରୀକ୍ଷା କେନ୍ଦ୍ର ଦେଖିବାକୁ ବାରମ୍ବାର ଆସିଲେ । ଏଣେ ଛାତ୍ରମାନେ ପରୀକ୍ଷା କେନ୍ଦ୍ରରେ ବସି କେବଳ ପରସ୍ପରର ମୁହଁକୁ ଚାହିଁ ଚାହିଁ ହେଲେ । ବ୍ୟକ୍ତିଗତ ଶୂନ୍ୟତାର ଆକ୍ରମଣରୁ କୌଣସି ଉପାୟରେ ନିଜକୁ ପ୍ରତିହତ କରି ପାରିଲେ ନାହିଁ । ସେମାନଙ୍କର ଯେଉଁ ଆନ୍ଦୋଳନର ତରଙ୍ଗ ଅଳ୍ପ ଦିନ ତଳେ ଉଚ୍ଛ୍ୱାସର ଶୀର୍ଷବିନ୍ଦୁକୁ ସ୍ପର୍ଶ କରିଥିଲା, ତାହା ଏବେ ଭଟ୍ଟାରେ ପରିଣତ ହେଲାଣି । ପ୍ରଶାସକ ସମ୍ପ୍ରଦାୟର ଅସାମାନ୍ୟ ବୁଦ୍ଧିମତ୍ତା ଓ ଚକ୍ରାନ୍ତ ଅପେକ୍ଷା ଆତ୍ମବିରୋଧ ହିଁ ଏହାକୁ ଶେଷ ସୀମାକୁ ଟାଣି ଆଣିଛି । ଦ୍ୱିତୀୟ ଥର ପାଇଁ ପାଠ ପଢ଼ା ଚାଲୁ ହେଲା, ପାଠ୍ୟ ବିଷୟ ଗୁଡ଼ିକ କଟା କଟା କରି ଚର୍ବିତ-ଚର୍ବଣ କରାଗଲା ସତ. କିନ୍ତୁ ଗର୍ବ ଓ ଦାୟିତ୍ୱହୀନତାର ଜ୍ଞାନକୋଷ ଗୁଡ଼ିକ ରହିଗଲା ଭିତ୍ତି-ଅନ୍ତଃସାର ଶୂନ୍ୟ ହୋଇ । ଛାତ୍ର ସମାଜ ଆନ୍ଦୋଳନର ବନ୍ଧପଥ ଅତିକ୍ରମ କରି ଉପସ୍ଥିତ ହେଲେ ଆସି ହୃଦୟହୀନତାର ବିଶୁଷ୍କ ମରୁପ୍ରାନ୍ତରରେ ।

ପରୀକ୍ଷା ହଲ୍‌ରୁ ନିରୀକ୍ଷକମାନେ ତୁହାକୁ ତୁହା କେବଳ କପି କାଗଜ ସଂଗ୍ରହରେ ଲାଗିପଡ଼ିଲେ । ଯେଉଁ ଛାତ୍ରନେତାମାନେ ସାଧାରଣ ଲୋକଙ୍କ ଗୋଡ଼ହାତ ଧରି, ଧୂଳିରେ ଗଡ଼ି, ଆଖିରୁ ଲୁହ ଗଡ଼ାଇ ଜାଗତିକ ଦୁନିଆଁକୁ ଚମକିତ କରୁଥିଲେ, ସେମାନେ ପରୀକ୍ଷା କେନ୍ଦ୍ରର ତତ୍ତ୍ୱାବଧାରକଙ୍କର ବିବେଚନାଧୀନ ବ୍ୟବହାର ଫଳରେ ନିଜକୁ ସମ୍ପୂର୍ଣ୍ଣ ଅସହାୟ ମନେକଲେ । କଥାର ଯାଦୁକାରୀ ଶକ୍ତି ବଳରେ ବିଶ୍ୱପାଖକୁ ଚମତ୍କୃତ କରି ଜନମତ ସଂଗ୍ରହ କରିବା ଶକ୍ତି ନିଃଶେଷ ହୋଇଛି । ଯେଉଁଠି ପ୍ରତି ମୁହୂର୍ତ୍ତରେ ବାଣୀର ବନ୍ୟା ଛୁଟୁଥିଲା, ତାହାର ବକ୍ଷ ବର୍ତ୍ତମାନ ଶୁଖିଲା । ଅଗ୍ନିବର୍ଷୀ ବକ୍ତା ତାରେ

ଯେଉଁମାନେ ଜାତି ଓ ଜନତାଙ୍କୁ ମତାଇ-ଡତାଇ ଫୁଟାଣି ଦେଖାଉଥିଲେ, ସେମାନେ ଅନ୍ୟାନ ଗଳ୍ପୀ ସ୍ୱାର୍ଥ ସନ୍ଧାନରେ । ବିପ୍ଳବ ସ୍ତିମିତ । ଉପସ୍ଥିତ ପରିସ୍ଥିତିକୁ ନିୟନ୍ତ୍ରଣ କରିବା କିମ୍ବା ବଶୀଭୂତ କରିବା କଠିନ ନୁହେଁ । ମନୋବଳ ଆଉ ନାହିଁ । କଥାଟି ମୃଣ୍ଡ ଦୁର୍ବଳ ବେଳକୁ ଚେତା ପଶିଲା । ଘୋଟାକୁ ଘୋଟା ଦାବୀ ପୂରଣ ହେବାବେଳେ ଚପଗୋଲ ଖାଇଲା ପରି ପାଟି ମିଠା କରୁଥିଲେ, ପରିବର୍ତ୍ତିତ ପରିସ୍ଥିତିରେ ବୁଇନାଇନ୍ ମିକ୍ସଚର ଗିଳିଲା ଭଳି ମୁହଁକୁ ବିକଟାଳିଆ କରି ବସି ରହିଲେ ।

ସ୍ୱାର୍ଥାନ୍ୱେଷୀମାନଙ୍କର ଧାରଣା ହୋଇ ଯାଇଥିଲା ଯେ ସେମାନଙ୍କର ସ୍ୱାର୍ଥସିଦ୍ଧିର ଉପଲକ୍ଷ୍ୟ ହେଉଛନ୍ତି ଅଧ୍ୟକ୍ଷ ଓ ଅଧ୍ୟାପକଗଣ । ସେମାନଙ୍କୁ ନିର୍ଯ୍ୟାତିତ ଓ ଭୂଲୁଣ୍ଠିତ କଲେ ଆଶାନୁରୂପ ଫଳ ମିଳି ପାରିବ । ସେଥିପାଇଁ ପରାମର୍ଶ ଦାତାମାନଙ୍କ ଗହ୍ୱରରେ ବସି ବାରମାଆର ପୁଅମାନେ ଢେର ପ୍ରକାର ଫନ୍ଦି ଫାନ୍ଦୁଥିଲେ, ସେହି ଫନ୍ଦିକୁ ଅଗ୍ରାଧିକାର ଦେଇ ଉତ୍‌ଫୁଲ୍ଲିତ ହେଉଥିଲେ । ସଦାନନ୍ଦରେ ବିଚରଣ କରୁଥିଲେ, ଧରାକୁ ସରା ମଣୁଥିଲେ । ତାହାର ବ୍ୟତିକ୍ରମ ଅଛି—ଏ କଥା ସ୍ୱପ୍ନରେ ସୁଦ୍ଧା ଭାବିପାରୁ ନ ଥିଲେ । ସେମାନେ ନଅଦଫା ସମ୍ବଳିତ ଦାବୀର ଯେଉଁ ବୋମା ବିସ୍ଫୋରଣ କରାଇଥିଲେ, ଏବେ ଭାଗ୍ୟ ନିର୍ଦ୍ଧାରଣଦିନ ତାହାର ବିଷ ବାଷ୍ପରେ ନିଜେ ମଧ୍ୟ ଊର୍ଦ୍ଧ୍ୱଶ୍ୱାସ । କେତେକ ପ୍ରଥମ ଘଣ୍ଟା ପରେ ବିଦାୟ ପତାକା ଉଡ଼ାଇ ଦେଲେ । କ, ବ, ଚ ଲେଖି କେତେକ ରୁମାଲରେ ମୁହଁ ପୋଛି ପୋଛି ବାହାରି ଆସିଲେ ବାହାରକୁ ।

ସଙ୍କୀର୍ଣ୍ଣ ସ୍ୱାର୍ଥ ଓ ଇଚ୍ଛା—ଆକାଙ୍‌କ୍ଷାର ଊର୍ଦ୍ଧ୍ୱରେ କଲ୍ୟାଣ-ସ୍ନିଗ୍ଧ ଶିକ୍ଷାକ୍ଷେତ୍ର-ଗୁଡ଼ିକର ସ୍ଥାନ । ସମାଜ ବିବେକର ଶୁଭ୍ରତା, ଶୁଚିତା ଓ ଶୀଳତା ସେଥିରେ ସୁପରିସ୍ଫୁଟ । ତାହା ପଛରେ ରହିଛି ବିଶିଷ୍ଟ ଶିକ୍ଷାବିତ୍‌ମାନଙ୍କ ସର୍ବୋମୟ କର୍ତ୍ତୃତ୍ୱ । ଛାତ୍ର-ଆନ୍ଦୋଳନ ଜନିତ ସଙ୍ଘଟିତ ବୈପ୍ଳବିକ ପରିବର୍ତ୍ତନର ସୂତ୍ରଧର କେତେକ ଚିନ୍ତାଧାରାର ଆମୂଳ ପରିବର୍ତ୍ତନ ଘଟିଲା । ପୂର୍ବରୁ ବିଶ୍ୱବିଦ୍ୟାଳୟାଧୀନ ଥିବା କେନ୍ଦ୍ରୀୟ ମୂଲ୍ୟାୟନ ପ୍ରକ୍ରିୟା ଲୁପ୍ତ ହୋଇଯିବାରୁ ପରିସ୍ଥିତି ନେଲା ଏକ ବିପଦଜନକ ମୋଡ଼ । ପରୀକ୍ଷକମାନଙ୍କ ଘରକୁ ଯାଇ ମାଛ, କଙ୍କଡ଼ା ଭେଟି ଦେଇ, ପିଲାଙ୍କୁ ଫିଲମ୍ ଦେଖାଇ ଆଣି, ଆବଶ୍ୟକ ସ୍ଥଳେ ଇତ୍ୟାଦି ପ୍ରଭୃତି କର୍ମକରି ଉପରକୁ ଉଠିଯିବାର ଉପାୟ ଆଉ ସହଜ ହେଲାନାହିଁ ।

ଶେଷକୁ ଶତ ହୁଣ୍ଡିନ୍ତାରେ ଅବସନ୍ନ ଅଧ୍ୟକ୍ଷ ମହାଶୟ ବାଦ ସାଧିବେ ବୋଲି କେହି ଭାବିପାରି ନ ଥିଲେ । ଉପରୁ ଚୁପ ପକାଇ ମାଇଚିଆ, ଡରୁଆ, ଅର୍ଦ୍ଧଲେଖା ପୁରୁଣା ଅଧ୍ୟକ୍ଷ ମହୋଦୟଙ୍କୁ ବଦଳି କରି ଦିଆଗଲା । ତାଙ୍କ ସ୍ଥାନରେ ଯେଉଁ ଯଶସ୍ୱୀ, କୃତିମାନ ବ୍ୟକ୍ତି ଡେପୁଟେଡ଼ ହୋଇ ସେ ଦାୟିତ୍ୱ ଗ୍ରହଣ କଲେ, ତାପରେ, ଅନୁକମ୍ପା କିମ୍ବା

ଅନୁଗ୍ରହ ପ୍ରଦର୍ଶନ ପରିବର୍ତ୍ତେ ସେ ପଦ୍ମପତ୍ର ଉପରେ ପାଣିବୁନ୍ଦା ଭଳି ହୋଇ ରହିଲେ ସର୍ବଦା ଟଳମଳ, ତରଳ । ତାଙ୍କ ସ୍ୱୀକୃତିକୁ ଏଠାରେ ଆଶା ନାହିଁ କିମ୍ବା ବଡାପ ନାହିଁ । ସେ ସବୁ ବିଷୟ ଚୁମ୍ବକରେ ପୁରୁଣାଙ୍କଠାରୁ ବୁଦ୍ଧି ନେବାକୁ ଅଧିକ ସମୟ ଲାଗି ନ ଥିଲା । ଶୀର୍ଣ୍ଣ ସ୍ୱାସ୍ଥ୍ୟ, ହାଡ଼ଚମଡ଼ା ସମ୍ବଳିତ ଚେହେରା ସମ୍ପନ୍ନ ହେଲେ ସୁଦ୍ଧା ଆଖି ଦୁଇଟିରେ ତୀବ୍ର ଜ୍ୱଳନ । ସେ ସମସ୍ତ ଉପସ୍ଥାନ ଖାତାର ଜେରକ୍ସ କପି ସହିତ ନିର୍ଦ୍ଦେଶକଙ୍କ ପ୍ରତିନିଧିଙ୍କଠାରୁ ଆଦାୟ କରିଥିବା ସମାଧାନ ପତ୍ରର ଅବିକଳ ନକଲ ସୁଦ୍ଧା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ବିସ୍ତୃତ ଆଲୋଚନା ନିମନ୍ତେ ସିଣ୍ଡିକେଟକୁ ପଠାଇଦେଲେ । ସାମଗ୍ରିକ ଚୟନ ପ୍ରକ୍ରିୟା ଓ ପଦ୍ଧତିରେ ଘଟିଲା ନାଟକୀୟ ପରିବର୍ତ୍ତନ । ତାହା ସିଣ୍ଡିକେଟରେ ଶିକ୍ଷାବିତ୍‌ମାନଙ୍କ ମନରେ କଲା ଗଭୀର ରେଖାପାତ । ସେମାନେ ଜିଦ୍‌ ଧରି ବସିଲେ—

'ଆମର ଦାବୀ ପୂରଣ ହେଉ, ଶିକ୍ଷାକ୍ଷେତ୍ରରୁ କଳା କାରବାର ବନ୍ଦ ହେଉ ।'

(ନବବର୍ଷ ବିଶେଷାଙ୍କ ସମାରୋହରେ ପ୍ରକାଶିତ, ୧୯୮୯)

—※—

# ନଗ୍ରହର ଉପଗ୍ରହ

ଏହି ସେହି ଭୁବନେଶ୍ୱର, ଯେଉଁଠାରେ ଗୁଡ଼ାଏ ଅଫିସର ଓ ଅମଲ ମିଶି ଦୈନିକ ଏ ଦେଶର ଶାସନ କଳକୁ ଚୈଳାକ୍ତ କରୁଥାନ୍ତି ।

ସେଦିନ ବିପିନ୍ ବିହାରୀ ଚଟ୍ଟୋପାଧ୍ୟାୟ ଖୁବ୍ ତରତର ହୋଇ ଓହ୍ଲାଇ ପଡ଼ିଲେ ବସରୁ । ବଡ଼ ଚିନ୍ତିତ ଓ ଅବସନ୍ନ । କେଉଁ ପାହାନ୍ତା ପହରୁ ଘରୁ ବାହାରିଥିଲେ ସେ ଦିନ ପ୍ରାୟ ଏଗାରଟା ଉପରେ ହେଲାଣି । ଅପ୍ରେଲମାସର ସମସ୍ତ ସୁଗନ୍ଧ ଖସି କ୍ରମେ ଝାଳ ଧରି ଗଲାଣି । ସହରୀ ଜୀବନର ଧୋ-ଧାଆ ଭିତରେ ନିଜକୁ ଓଟାରି ନେଇ ଥୋଇଲେ ଶିକ୍ ସାରେ । ସ୍ୱିଲେ ଚିର ପରିଚିତ ନଅ ମହଲା କୋଠା ଆଡ଼କୁ ।

ଆଗ କାଳରେ ଓଡ଼ିଶାରେ ପ୍ରସିଦ୍ଧ ନବତଳହର୍ମ୍ୟ ଥିଲା ବାରବାଟୀ କଟକରେ, ତାର ଗ୍ରୁଇ ପଡୁଥିଲା ମହାନଦୀ ପାଣିରେ ଏବକାଳକୁ କଙ୍କସିକାର୍ଣ୍ଣି ଭୁବନେଶ୍ୱରଠାରେ ଆଧୁନିକ ଯୁଗର ଦିବ୍ୟ ଧବଳ ନଅ ମହଲା କୋଠା ହେଉଛି ଓଡ଼ିଶା ସରକାରଙ୍କର ଡିରେକ୍ଟରେଟ୍—ଠିକ ସଚିବାଳୟର ପଛ ପଟକୁ ଠିଆ ହୋଇଛି ସଦର୍ପରେ । ଶିକ୍ଷା, ସ୍ୱାସ୍ଥ୍ୟ, ଯୋଜନା, ବିକାଶ, ସଂଗଠନ, ନିର୍ମାଣ, ଦାରିଦ୍ର୍ୟମୋଚନ, ଗୋଷ୍ଠୀ ଉନ୍ନୟନ ଆଦି ପାଇଁ ଫାଇଲ ପରେ ଫାଇଲ ଗଡ଼ା ହୋଇ ପର୍ବତ ପରିମାଣରେ ଗଦା ହୋଇଛି ଏହି ନଅ ମହଲା କୋଠାରେ ।

ବର୍ତ୍ତମାନ ପ୍ରଖର ବ୍ୟକ୍ତିତ୍ୱର ଅଧିକାରୀ ବିପିନ୍ ବିହାରୀ ଚଟ୍ଟୋପାଧ୍ୟାୟ କେବଳ ଜଣେ ବିଜ୍ଞ-ଅଭିଜ୍ଞ, ମର୍ଯ୍ୟାଦାଶୀଳ ଅଧ୍ୟାପକ ନୁହନ୍ତି; ସାଧୁ-ସଚ୍ଚୋଟ ସହଯୋଗୀ କର୍ମ-ବ୍ରତୀ ରୂପେ ଆପାତ ନିସ୍ତରଙ୍ଗ ଜୀବନ ଯାତ୍ରାର ଛନ୍ଦ ସହିତ ଅତି ଅଭ୍ୟସ୍ତ । ତାଙ୍କର ସ୍ୱଳ୍ପ କାଳ ମଧ୍ୟରେ ହୃଦୟ-ମନୋବୃତ୍ତି ବିବେକ ଖଟାଇ ହଜାର ହଜାର ଛାତ୍ରଙ୍କର ଜ୍ଞାନ-ଚକ୍ଷୁ ଉନ୍ମୀଳନ କରିଛନ୍ତି । ଚନ୍ଦ୍ରର ଜ୍ୟୋତ୍ସ୍ନା ପରି, ପୁଷ୍ପର ସୌରଭ ପରି, ପ୍ରଦୀପର ଆଲୋକ ପରି ନିଜକୁ ସେମାନଙ୍କ ମଧ୍ୟରେ ମିଶାଇ ଦେଇଛନ୍ତି । ଯାହା ମହତ, ଯାହା ସୁନ୍ଦର, ଯାହା ସତ୍ୟ, ସେହି ଜ୍ଞାନ ଅକାତରରେ ବିତରଣ କରି ଚାଲିଛନ୍ତି । କିରାଣୀ ଓ ଅଫିସରଙ୍କୁ

ବାଦ ଦେଲେ ବର୍ତ୍ତମାନର ଲୋକ ପ୍ରତିନିଧି ଓ ମନ୍ତ୍ରୀମାନଙ୍କ ମଧ୍ୟରୁ ହୁଏତ ପୁଞ୍ଜାଏ ଦୁଇ ପୁଞ୍ଜା ବାହାରିବେ ତାଙ୍କର ଗ୍ରୁପ । ଜଣେ ସାଧାରଣ ଲେକ୍‌ଚରରୁ ନିଜ ଶିଙ୍ଗରେ ମାତ୍ର ତାଙ୍କ ହୋଇଛନ୍ତି ପ୍ରତିଷ୍ଠାବାନ ଅଧ୍ୟାପକ । ପୁଣି ଅଧ୍ୟାପକରୁ ଅଧ୍ୟକ୍ଷ ପାହ୍ୟାକୁ ଉଠିଛନ୍ତି । ବର୍ତ୍ତମାନ ଅବସର ଗ୍ରହଣ ପାଇଁ ହୁଏତ ହାତଗଣତି ଗୋଟିଏ ମାତ୍ର ବର୍ଷ ତାଙ୍କର ରହିଛି । ଦେଖିବାକୁ ଗଲେ ବୟସ କଳି ଷଠା ମାଡ଼ିବାକୁ ବସିଲାଣି । ଚନ୍ଦା ମୁଣ୍ଡରେ ଥିବା ବାଳ କେତେକ ପାଚି ପାଚି ଆସିଲାଣି । ସମଗ୍ର ଶରୀରରେ ବୟସ ଓ ଅଭିଜ୍ଞତାର ଚିହ୍ନ ସୁସ୍ପଷ୍ଟ । ଉଜ୍ଜ୍ୱଳ ଆଖି ଦୁଇଟି ଭୀରୁତାରେ ବିବ୍ରତ ନୁହେଁ । ପାଚିଲା ଭ୍ରୂ ଦୁଇପଟ କେତେବେଳେ ସେହି ଆଖିକୁ ଘୋଡ଼ାଇ ପକାଏ । କୌଣସି ପ୍ରକାର ଆବେଗ, ଅନୁଭୂତି କିମ୍ବା ଚିନ୍ତା ଇଚ୍ଛା ନ ହେଲେ ସେ ଧରାବନ୍ଧା ଜୀବନ ଧାରାରେ ପରିତୃପ୍ତ । କାହାରି ପ୍ରତି ଆକ୍ରୋଶ ନ ଥାଏ କିମ୍ବା କାହାରି ପଥରେ ସେ କଣ୍ଟକ ନୁହନ୍ତି ।

ଗତ ଫେବୃୟାରୀ ମାସର ପ୍ରାରମ୍ଭରେ ଅଧ୍ୟକ୍ଷ ଚହ୍ନଟରାୟ ଆକସ୍ମିକ ଭାବେ ଅସୁସ୍ଥ ହୋଇପଡ଼ିଲେ । ସ୍ଥାନୀୟ ଡାକ୍ତରଙ୍କ ସତ୍ ପରାମର୍ଶ କ୍ରମେ କଟକ ବଡ଼ ଡାକ୍ତରଖାନାକୁ ଚିକିତ୍ସା ପାଇଁ ସେ ସ୍ଥାନାନ୍ତରିତ ହେଲେ । ପ୍ରଥମେ ଡିରେକ୍ଟର ଉତ୍ତମ ସାହୁଙ୍କୁ ଗୋଟିଏ ମାସ ଛୁଟି ମାଗିଲେ । ତାହାପରେ ସେହି ଛୁଟିକୁ ବଢ଼ାଇବାକୁ ପଡ଼ିଲା ଆଉ ଗୋଟିଏ ମାସ । ଡିରେକ୍ଟର ସାହୁ ମହୋଦୟଙ୍କ ନିର୍ଦ୍ଦେଶ କ୍ରମେ ନିମ୍ନସ୍ଥ ଜନୈକ ଅଧ୍ୟାପକ ଚନ୍ଦ୍ରଚୂଡ଼ ବୈରାଗଞ୍ଜନଙ୍କୁ ଅଧ୍ୟକ୍ଷ ଦାୟିତ୍ୱ ହସ୍ତାନ୍ତରିତ କରି ଯେତେବେଳେ ସେ ଛୁଟିରେ ଗଲେ, ସେହିଠାରୁ ବିଡ଼ମ୍ବିତ ଅଦୃଷ୍ଟର ଖେଳ ଆରମ୍ଭ ହୋଇଗଲା କହିଲେ ଚଳେ ।

କଟକ ବଡ଼ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ଅବସ୍ଥାରେ ଅଧ୍ୟକ୍ଷ ଚହ୍ନଟରାୟଙ୍କୁ ଡିରେକ୍ଟରଙ୍କ ପକ୍ଷରୁ ଜଣାଇ ଦିଆଗଲା ଯେ ସରକାର ବାହାଦୂର ଭାରପ୍ରାପ୍ତ ଅଧ୍ୟକ୍ଷ ଚନ୍ଦ୍ରଚୂଡ଼ ବୈରାଗଞ୍ଜନଙ୍କୁ ଆଗାମୀ ମାର୍ଚ୍ଚ ମାସରେ ସରକାରୀ ଅର୍ଥର ଆବଶ୍ୟକୀୟ ବିନିଯୋଗ ନିମନ୍ତେ ଉଚିତ କ୍ଷମତା ହସ୍ତାନ୍ତର କରିଦେଲେ ଓ ଏହି ବ୍ୟବସ୍ଥା ଅଧ୍ୟକ୍ଷ ମହୋଦୟ ଛୁଟିରୁ ଫେରିବା ପର୍ଯ୍ୟନ୍ତ ବଳବତ୍ତର ରହିବ । ଏହି ଚିଠିଟି ପାଇଲା ପରେ ରୁଗ୍ଣ ଅଧ୍ୟକ୍ଷ ଚହ୍ନଟରାୟ ଟିକେ ଶାନ୍ତିରେ ନିଃଶ୍ୱାସ ମାରିଲେ । ଆର୍ଥିକ ବର୍ଷର ଶେଷ ପର୍ଯ୍ୟାୟ ମୁଣ୍ଡ ଉପରେ ଥିବାରୁ ସେ ଯେଉଁ ଦୁର୍ବାର ଦାୟିତ୍ୱବୋଧ ଯୋଗୁ ବ୍ୟସ୍ତ ଓ ବିବ୍ରତ ହୋଇ ପଡ଼ୁଥିଲେ, ତାହା ଅନେକାଂଶରେ ଊଣା ପଡ଼ିଗଲା । କିଛିଦିନ ପରେ ଆଉ ଗୋଟିଏ ଚିଠି ମିଳିଲା ଯେ 'କଲେଜର ଷ୍ଟକ୍ ଓ ଷ୍ଟୋରଖାତା ଭାରପ୍ରାପ୍ତ ଅଧ୍ୟକ୍ଷଙ୍କୁ ହସ୍ତାନ୍ତର କରିଦିଅ ।' ଏଥିରେ ଆଦୌ ବିଚଳିତ ନ ହୋଇ କିମ୍ବା କର୍ତ୍ତବ୍ୟରେ ଅବହେଳା ନ କରି ଅଧ୍ୟକ୍ଷ ଚହ୍ନଟରାୟ ତତ୍‌କ୍ଷଣାତ ଜଣାଇଦେଲେ ଯେ 'ସେହି ଖାତା ଅଫିସରେ ଅଛି । ତାହା କେବେହେଲେ କୌଣସି ଅଧ୍ୟକ୍ଷ ସାଙ୍ଗରେ ଘେନି ଡାକ୍ତରଖାନାକୁ ଯାଏ ନାହିଁ ଚିକିତ୍ସିତ ହେବାକୁ ।'

ଏହାର କିଛୁଦିନ ପରେ ଡିରେକ୍ଟରଙ୍କ ଦପ୍ତରରୁ ପୁଣି ଏକ ଜରୁରୀ ପତ୍ର ମିଳିଲା ଯେ 'ସମସ୍ତ ଗୋପନୀୟ କାଗଜପତ୍ର ଥିବା ଆଲମିରାର ଚାବିକାଠି ଭାରପ୍ରାପ୍ତ ଅଧ୍ୟକ୍ଷଙ୍କୁ ହସ୍ତାନ୍ତର କରିଦିଆଯାଉ ।' ସେତେବେଳକୁ ଅଧ୍ୟକ୍ଷ ଚନ୍ଦ୍ରଚୂଡ଼ ମୋଟାମୋଟି ଆରୋଗ୍ୟ ହୋଇ ସାରିଲେଣି । କେବଳ ଯାହା ଡାକ୍ତରଙ୍କ ପରାମର୍ଶ କ୍ରମେ ଭଗ୍ନସ୍ୱାସ୍ଥ୍ୟର ପୁନରୁଦ୍ଧାର ପାଇଁ ବିଶ୍ରାମ ହିଁ ନେଉଛନ୍ତି । ରୋଗର ଉପସର୍ଗ ଗୁଡ଼ିକ ଅନେକ ପରିମାଣରେ କଟି-ଗଲାଣି । ସ୍ମୃତିଶକ୍ତି ଓ ମାନସିକ ପ୍ରଖରତା ପୂର୍ବ ଭଳି ଅକ୍ଷୁଣ୍ଣ ହୋଇ ଉଠିଲାଣି । ଏହି ପତ୍ର ପାଇ ସେ ପ୍ରଚ୍ଛନ୍ନ ଅସ୍ଥିରତା ବୋଧ କରିଥିଲେ ମଧ୍ୟ ସମ୍ପୂର୍ଣ୍ଣ ଧୈର୍ଯ୍ୟଚ୍ୟୁତ ହୋଇ ନ ଥିଲେ । ଭାବିଥିଲେ, ମନେ ମନେ ବିଶ୍ଳେଷଣ କରିଥିଲେ, ଆଉ ଦମ୍ଭର ସହିତ ଜଣାଇ ଦେଇଥିଲେ ଯେ 'ଅଳ୍ପଦିନ ମଧ୍ୟରେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ସେ କାର୍ଯ୍ୟରେ ଯୋଗ ଦେଉଛନ୍ତି । ଏଣୁ କୌଣସି ପ୍ରକାର ଗୋପନୀୟ ନଥିପତ୍ର ରହିଥିବା ଆଲମାରିର ଚାବି-କାଠି ଭାରପ୍ରାପ୍ତ ଅଧ୍ୟକ୍ଷଙ୍କୁ ପଠାଇଦେବା ସରକାରୀ ନୀତିବିରୁଦ୍ଧ, ଯେହେତୁ ସେଥି ମଧ୍ୟରେ ସମ୍ପୃକ୍ତ ଅଫିସରଙ୍କ ବ୍ୟକ୍ତିଗତ ଚରିତ୍ର ପଞ୍ଜିକା ମଧ୍ୟ ରଖାଯାଇଛି ।'

ଏହାର ଉତ୍ତର ମିଳିଲା ନାହିଁ—ମିଳିବାର ନୁହେଁ । ଇତ୍ୟବସରରେ ଯେଉଁ ଥି-ପାଇଁ ଏ ଚିଠି ଲେଖା ହୋଇଥିଲା, ତାହା ମୂଳରୁ ଚୁଲିଯାଏ ଅଧ୍ୟକ୍ଷଙ୍କ ଅନୁମାନ ଭିତରକୁ ଆସି ଯାଇଥିଲା ।

ଠିକ୍ ଯେଉଁଦିନ ଅଧ୍ୟକ୍ଷ ମହୋଦୟ ଡାକ୍ତରଖାନାରୁ ମୁକ୍ତ ହୋଇ ବାହାରକୁ ଆସିବା କଥା, ସେହିଦିନ ଡିରେକ୍ଟର ଉତ୍ତମ ସାହୁଙ୍କର ଏକ ଟେଲିଗ୍ରାମ ଆଣି ହାତରେ ଧରାଇଦେଲେ ସେବିକା । ସେଥିରେ ଲେଖାଥିଲା ଯେ ଡିରେକ୍ଟରଙ୍କ ସହିତ ଜରୁରୀ ସାକ୍ଷାତ ଆବଶ୍ୟକ । ସଙ୍ଗେ ସଙ୍ଗେ ଜଣେ ଦକ୍ଷ ଓ ନିର୍ଭୀକ କର୍ମଯୋଗୀ ଭଳି ଅଧ୍ୟକ୍ଷ ଚନ୍ଦ୍ରଚୂଡ଼ କଟକ ଷ୍ଟେସନ ସ୍ଥିତ ଆର.ଏମ.ଏସ. ଡାକଘରୁ ଡିରେକ୍ଟର ମହୋଦୟଙ୍କୁ ଏକ ବ୍ୟକ୍ତିଗତ ପତ୍ର ଲେଖି ଜଣାଇଦେଲେ ଯେ 'ଡାକ୍ତରଖାନାରୁ ମୁକ୍ତ ହେଲା ପରେ ସେ ଯାଇଁ ନିଜର କର୍ମସ୍ଥଳଠାରେ ଯୋଗଦେବେ ଓ ଠିକ୍ ତାର ପରଦିନ ଆସି ଭୁବନେଶ୍ୱର ଠାରେ ଡିରେକ୍ଟରଙ୍କୁ ଦେଖା କରିବେ ।'

ଏହି ପତ୍ର ପାଇଲା ପରେ ମନେହେଲା ଯିମିତି ପ୍ରୀୟତ ବୁଦ୍ଧିମାନ ଡିରେକ୍ଟର ଉତ୍ତମ ସାହୁ ନିଜର ମାନସିକ ଭାରସାମ୍ୟତା ହରାଇ ପକାଇଲେ । ସେ ତତ୍‌କ୍ଷଣାତ ପ୍ରଚୁର ବୁଦ୍ଧି ଖଟାଇ ଅଧ୍ୟକ୍ଷ ବିପିନ ବିହାରୀ ଚନ୍ଦ୍ରଚୂଡ଼ଙ୍କୁ ଟେଲିଗ୍ରାମ କଲେ ଯେ 'କାର୍ଯ୍ୟରେ ଯୋଗଦେବା ପୂର୍ବରୁ ଆସି ତୁରନ୍ତ ସାକ୍ଷାତ କର ।' ଆଉ ମଧ୍ୟ ଭାରପ୍ରାପ୍ତ ଅଧ୍ୟକ୍ଷ ଚନ୍ଦ୍ରଚୂଡ଼ ବୈଷ୍ଣବ ଗଞ୍ଜନଙ୍କୁ ଅନ୍ୟ ଏକ ଟେଲିଗ୍ରାମରେ ଜଣାଇଦେଲେ ଯେ ଡିରେକ୍ଟର ମହୋଦୟଙ୍କ ସହିତ ସୁକ୍ଷ୍ମ ଆଲୋଚନା ନ କରି ଅଧ୍ୟକ୍ଷ କାର୍ଯ୍ୟରେ ଯୋଗ

ଦେଇ ପାରିବେ ନାହିଁ ।' ଡାକ ବିଭାଗର ମନ୍ଥର ଗତି ଯୋଗୁଁ ଟେଲିଗ୍ରାମ ଦୁଇଟି ଅପରାହ୍ଣରେ ଯେତେବେଳେ ହସ୍ତଗତ ହେଲା, ସେତେବେଳକୁ ଅଧ୍ୟକ୍ଷ ପୂର୍ବାହ୍ଣରୁ ନିଜ କାର୍ଯ୍ୟରେ ଯୋଗଦେଇଥିଲେ ଓ କେତେକ ସରକାରୀ ଫାଇଲପତ୍ର ଆଦି ଚିଠି ଇତ୍ୟାଦିରେ ଆବଶ୍ୟକୀୟ ମନ୍ତବ୍ୟ କରି ସାରିଥିଲେ । ଏକ ଅନନୁଭୂତ ଅସ୍ୱାଚ୍ଛନ୍ଦ୍ୟ ପରିସ୍ଥିତିରେ ସେ ରାତିଟି ପ୍ରାୟ ଉନ୍ନିଦ୍ରରେ କଟାଇଲେ । ପରଦିନ ପ୍ରତ୍ୟୁଷର, ବାହାରି ପଡ଼ିଲେ ଭୁବନେଶ୍ୱର ପଥରେ । ଏଣୁ ଏ ଯାତ୍ରା ଯେଉଁଭଳି ଗୁରୁତ୍ୱପୂର୍ଣ୍ଣ, ସେହିଭଳି ଅପରିହାର୍ଯ୍ୟ, ମନ ତାଙ୍କର ଭାରାକ୍ରାନ୍ତ ଥିଲା ।

ଆଶା-ନିରାଶାର ଉତ୍‌ଥାନ-ପତନ ମଧ୍ୟରେ ଲକ୍ଷ୍ୟସ୍ଥଳ, ଡିରେକ୍ଟର ମହୋଦୟଙ୍କ ଅଫିସ୍ ଦୁଆର ମୁହଁରେ ଅଧ୍ୟକ୍ଷ ଚନ୍ଦ୍ରଶେଖର ପହଞ୍ଚିଲାବେଳକୁ ଦେଖିଲେ, ଅପର ଦିଗରୁ ସ୍ୱୟଂ ଡିରେକ୍ଟର ଜଉମ ସାନ୍ଥୁ ଆଗେଇ ଆସୁଛନ୍ତି । ଗୌରବର ଝଲକରେ ସେ ଝଲସିତ । ଟିକେ ଇତଃସ୍ତତ ହୋଇ ସେ ସବିନୟ ନମସ୍କାର ଜଣାଇଲେ । ଉଭୟ ପ୍ରକୃତ ବନ୍ଧୁ ନୁହନ୍ତି । ଉଭୟଙ୍କ ମଧ୍ୟରେ ସମ୍ମାନର ମାପକାଠି ହେଲା ଜଣେ ଉଚ୍ଚ କର୍ମକର୍ତ୍ତା ଓ ଅନ୍ୟଜଣକ ଅଧସ୍ତନ କର୍ମଗୃହସ୍ଥ । ଅଲଗା ଅଲଗା ପାହାଚର ଲୋକ । ସାମାଜିକ ମୂଲ୍ୟବୋଧର ସମତା ଓ ସାଂସ୍କୃତିକ ରୁଚିବୋଧର ସମତା ଆସିବ କୁଆଡ଼ୁ ବା ବୌଦ୍ଧିକ ବନ୍ଧୁତା ଆସିବ କେଉଁଠୁ ? କେଉଁଠୁ ଆସିବ ସମଚେତନା ଓ ସମଭାବନା ? ଅଳ୍ପ ସମୟ ଭିତରେ ଅବାଧ ଘୂର୍ଣ୍ଣିବାୟୁ ଭଳି ଝଲକାଏ ଶଇତାନୀ ସୁନ୍ଦର ସ୍ମିତହାସ୍ୟ ମୁହଁରେ ଉକୁଟାଇ ଡିରେକ୍ଟର ମହୋଦୟ ପ୍ରବେଶ କଲେ ନିଜ ପ୍ରକୋଷ୍ଠ ଭିତରକୁ । ଭଦ୍ରତା ସମ୍ଭ୍ରାନ୍ତ୍ୟ ଓ ଗମ୍ଭୀରତା ରକ୍ଷାକରି ଗୁହାରିଆ ଓକୁହାରିଆଙ୍କୁ ଏଡ଼ାଇ ପଛେ ପଛେ ଅନୁଗମନ କଲେ ଅଧ୍ୟକ୍ଷ ଚନ୍ଦ୍ରଶେଖର ।

ଆସନ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଡିରେକ୍ଟର ସତେ ଯିମିତି କିଞ୍ଚିତ ବ୍ୟଙ୍ଗ ଅଥଚ କ୍ରୋଧଦୀପ୍ତ କଣ୍ଠରେ ଭ୍ରୂରୁ ନ ଗୁଇ ପ୍ରଶ୍ନ କଲେ—"ଆପଣଙ୍କୁ ଲେଖାଯାଇଥିଲା ଏଠାରେ ଆସି ଦେଖା କରିବା ପାଇଁ ।"

ପ୍ରଶ୍ନ ମଧ୍ୟରେ ଯେତିକି ଅବକାଶ ଥିଲା, ଦୃଢ଼କଣ୍ଠରେ ସେତିକି ପୂର୍ଣ୍ଣ କରିଦେଲେ ଅଧ୍ୟକ୍ଷ—"ସେଥିପାଇଁ ତ ଆସି ପହଞ୍ଚିଛି ଓ ଆପଣଙ୍କୁ ଦେଖାକରୁଛି ।"

ପୁନର୍ବାର ଅତି ତାଚ୍ଛଲ୍ୟ କଣ୍ଠରେ ସେ ପ୍ରଶ୍ନ ଫିଙ୍ଗିବାକୁ ଆରମ୍ଭ କଲେ—"ମୋର ଆଦେଶ ପାଇଲା ପରେ ମୋ ସହିତ ଦେଖା ନ କରି କର୍ମକ୍ଷେତ୍ରକୁ ଗଲ କାହିଁକି ?"

—ଡାକ୍ତର ମୋତେ କାର୍ଯ୍ୟକ୍ଷମ ଘୋଷଣା କଲା ପରେ ମୋର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ ଥିଲା କର୍ମକ୍ଷେତ୍ରରେ ଯୋଗଦେବା । ତାହା ଆପଣଙ୍କୁ ପତ୍ରଦ୍ୱାରା ଜଣାଇ ଦେଇଛି । ସେହି ଅନୁଯାୟୀ କର୍ମକ୍ଷେତ୍ରରେ ଯୋଗ ଦେଲା ପରେ ଏଠାକୁ ଆସିଛି ।

ଅଧ୍ୟକ୍ଷଙ୍କର ଶରୀର ଓ ମୁହଁ ଯେତିକି ନିରୀହ ଦେଖାଯାଉଛି, କଥାଗୁଡ଼ାକ ସେହି ପରିମାଣରେ ନିରୀହ ନୁହେଁ, ସତେ ଯିମିତି ଅଗ୍ନିଶିଖା । କଥା ପାଖରୁ କଥା ଝଟ୍କି ସେ କହିବାରେ ନିପୁଣ । ମୁହୂର୍ତ୍ତକ ଦୃଷ୍ଟିରେ ବୃଦ୍ଧି ଡିରେକ୍ଟର ବିସ୍ଫୋରଣ କରି ଉଠିଲେ —"ଟେଲିଗ୍ରାମ କରାହୋଇଥିଲା, ଦେଖା କଲା ପରେ କର୍ମକ୍ଷେତ୍ରରେ ଯୋଗ ଦେବା ପାଇଁ ।"—ତାଙ୍କ ମନର ବାରୁଦ ଭଣ୍ଡାର ଫାଟିଗଲା ଯିମିତି ।

—ଟେଲିଗ୍ରାମ ପାଇବା ପୂର୍ବରୁ ଯୋଗଦାନ କାର୍ଯ୍ୟ ଶେଷହୋଇ ଯାଇଥିଲା ଓ ସେହି ସଂସ୍ଥାନୀୟ ଚିଠିପତ୍ର ଅନ୍ୟାନ୍ୟ ସମ୍ପୃକ୍ତ ସଂସ୍ଥାକୁ ପଠାଇ ଦିଆଯାଇଥିଲା । ଏ କ୍ଷେତ୍ରରେ ଟେଲିଗ୍ରାମଟି ମୂଲ୍ୟହୀନ ମନେହେବା ସ୍ୱାଭାବିକ ।

ମୁହଁକୁ ଗମ୍ଭୀର କରି ଡିରେକ୍ଟର ଭୃଷାଏ ମାରିଲେ—"ତାହାହେଲେ ଆପଣ ଆଉ କିଛିକାଳ ଛୁଟିରେ ଯାଆନ୍ତୁ !"

ଇଙ୍ଗିତ ସୁସ୍ପଷ୍ଟ । ଅଧ୍ୟକ୍ଷ ଚନ୍ଦ୍ରଟସ୍ୱାମୀ ଚମକି ପଡ଼ିଲେ ଏହି ଅଡୁଆ କଥା ଶୁଣି । ଏଭଳି ଆଘାତ ସୁସ୍ଥ ମଣିଷକୁ ଅସୁସ୍ଥ କରିଦିଏ । ଯେଉଁ ଅସୁସ୍ଥ ମଣିଷ ନିକଟରେ ସୁସ୍ଥ-ହୋଇ ଫେରିଛନ୍ତି, ସିଏ ଆଖିରେ ଆଖିଏ ବିସ୍ମୟ ଧରି ଉଦ୍‌ବେଗ କମ୍ପିତ କଣ୍ଠରେ ଉତ୍ତର ଦେଲେ—"କିପରି ଏହା ସମ୍ଭବ ହେବ ? ଡାକ୍ତର ମୋତେ କାର୍ଯ୍ୟକ୍ଷମ ବୋଲି ସାର୍ଟି-ଫିକେଟ ଦେଇଛନ୍ତି । ପୁଣି ଆଉ ଥରେ ଯଦି ଅସୁସ୍ଥ ହୁଏ, ତାହାହେଲେ ଡାକ୍ତରଙ୍କ ପରା-ମର୍ଶ ଅନୁଯାୟୀ ଛୁଟି ନେବି ।"

—ମାନ୍ୟବର ମନ୍ତ୍ରୀ ଇଚ୍ଛା କରନ୍ତି, ଆପଣ ଛୁଟିରେ ଯାଆନ୍ତୁ ଓ ଚନ୍ଦ୍ରଚୂଡ଼ ବୈଶ୍ୟ ଗନ୍ତନଙ୍କୁ କିଛିକାଳ କାର୍ଯ୍ୟ କରିବା ପାଇଁ ଦିଅନ୍ତୁ ।

ଉତ୍ତେଜନା ସମ୍ବରଣ କରି ଅଧ୍ୟକ୍ଷ ଉତ୍ତର ଦେଲେ—"ମୋତେ ଯଦି ମୋ ଡାଇରେକ୍ଟର ମହୋଦୟ ଏହା ଲିଖିତ ଆକାରରେ ଜଣାଇ ଦେବେ, ତାହାହେଲେ ବାଧ୍ୟ କର୍ମଚାରୀ ଭାବରେ କଥାଟା ମାନିନେବା ପାଇଁ ଚିନ୍ତା କରିବି ।"

ଘୂମନ୍ତ ଆଗ୍ନେୟଗିରି ଯିମିତି ହଠାତ୍ ଚେଇଁ ଉଠିଲା—"ମନ୍ତ୍ରୀଙ୍କ ଆଦେଶ ଅବ-ମାନନା କଲେ ପରିଣତି ଅତି ଭୟାବହ ହେବ ।"

ଶ୍ୱାସ ପ୍ରଶ୍ୱାସ ଦ୍ରୁତ ହୋଇ ଉଠିଲା । ଅଧ୍ୟକ୍ଷ ଚନ୍ଦ୍ରଟସ୍ୱାମୀ ଅବିଚଳିତ କଣ୍ଠରେ ମୁହଁକୁ ବୃଦ୍ଧି ନିବେଦନ କଲେ—"ମନ୍ତ୍ରୀଙ୍କର କୌଣସି ଆଦେଶ ଯେପର୍ଯ୍ୟନ୍ତ ମୋତେ ଲିଖିତ ଭାବେ ଜଣାଇ ଦିଆ ନ ଯାଇଛି, ସେ ପର୍ଯ୍ୟନ୍ତ ମାନିବା ଓ ନ ମାନିବାର ପ୍ରଶ୍ନ ଉଠୁନାହିଁ । କୌଣସି ପ୍ରକାର ମୌଖିକ କଥାରେ କାର୍ଯ୍ୟ କରିବାକୁ ଅଧୀନ ଅକ୍ଷମ । ପ୍ରତିକ୍ରିୟା ପର୍ଯ୍ୟବେକ୍ଷଣ କରିବା ପାଇଁ ଆତଙ୍କିତ ହୃଦୟରେ ଅପେକ୍ଷା କରିବାକୁ

ଲାଗିଲେ । ଡିରେକ୍‌ଟରଙ୍କ ସାକ୍ଷ ମଧ୍ୟ ଦେଖିଲେ ଯେ ଯେତେ ସରଳ ଓ ଅନାଡ଼ମ୍ବର ହେଲେ ମଧ୍ୟ ଅଧ୍ୟକ୍ଷ କୌଣସି ମତେ ଦବଯିବାର ପାତ୍ର ନୁହନ୍ତି ବା କୌଣସି କଥାକୁ ସହଜରେ ମାନିନେବାକୁ ପ୍ରସ୍ତୁତ ନୁହନ୍ତି; ବରଂ ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା କର୍ମଚାରୀମାନଙ୍କ ମଧ୍ୟରେ ଗୋଟିଏ ଅଦୃଶ୍ୟ ଉଚ୍ଚ ସ୍ଥାନଟିଏ । ଅଜବ୍ ଦେଶର ଅଦ୍ଭୁତ ଲୋକ । ସତେ ଯିମିତ ପ୍ରତିବାଦ ଜଣାଇବା ପାଇଁ ଉଦ୍ଧତ ଫଳକକୁ ମନେ ମନେ ଲାଳନ କରି ରଖିଛନ୍ତି । ଅଳକ୍ଷଣର ନୀରବତା ଭଙ୍ଗ କରି ସେ ଘୋଷଣା କଲେ—"ତାହାହେଲେ ଆପଣ ଫୁଲବାଣୀ ଜିଲ୍ଲାର ମୁଖ୍ୟ ଚିକିତ୍ସକଙ୍କଠାରୁ କାର୍ଯ୍ୟକ୍ଷମ ବୋଲି ସାର୍ଟିଫିକେଟ ଆଣି ଦାଖଲ ନ କରିବା ପର୍ଯ୍ୟନ୍ତ କାର୍ଯ୍ୟକରି ପାରିବେ ନାହିଁ ।"

—ଏହାକଣ ମହାମାନ୍ୟ ମନ୍ତ୍ରୀ ମହୋଦୟଙ୍କର ଇଚ୍ଛା ?

—ତାହା ନୁହେଁ; ଡିରେକ୍‌ଟରଙ୍କ ଆଦେଶ । ବୁଦ୍ଧିବୋଧ ହେଉଛି, ଆପଣ ପ୍ରକୃତ ସୁସ୍ଥ ହୋଇ ନାହାନ୍ତି ।

—ସ୍ୱାସ୍ଥ୍ୟ ସମ୍ପର୍କରେ ଏଣିକି ସ୍ୱାସ୍ଥ୍ୟବିଭାଗର କର୍ମୀଙ୍କ ବ୍ୟତୀତ ଅନ୍ୟମାନଙ୍କ-ଠାରୁ ଉପଦେଶ ଗ୍ରହଣ କରିବାରେ ବାଧା ରହିବ ନାହିଁ ।

—ଆପଣଙ୍କୁ କଣ ଅଜଣା ରହିଛି ଯେ ଟଙ୍କା ଥିଲେ ଡାକ୍ତର ଜୀବନ୍ତଲୋକଙ୍କୁ ମୃତ ବୋଲି ଘୋଷଣା କରିପାରନ୍ତି ।

—ଡିରେକ୍‌ଟୋରେଟ୍ ଜାଣେ ଯେ ମୁଁ କଟକରେ ରହି ଚିକିତ୍ସିତ ହେଉଥିଲି । କଟକ ଠିକଣାରେ ମଧ୍ୟ ମୋ ସହିତ ଚିଠିପତ୍ର କାରବାର କରାଯାଉଥିଲା । ଏପରି କ୍ଷେତ୍ରରେ କଟକ ମେଡ଼ିକାଲ କଲେଜର ଅଧ୍ୟାପକଙ୍କ ପ୍ରଦତ୍ତ ସାର୍ଟିଫିକେଟ କଣ ମୂଲ୍ୟହୀନ ? ମୋତେ ପ୍ରଥମରୁ କାହିଁକି ଜଣାଇ ଦିଆଗଲା ନାହିଁ ଯେ ଫୁଲବାଣୀ ଜିଲ୍ଲାର ମୁଖ୍ୟ ଚିକିତ୍ସକଙ୍କ ନିକଟରେ ଚିକିତ୍ସିତ ହୋଇ ମଲେ ମରିବ, କିନ୍ତୁ କଟକ ବଡ଼ ଡାକ୍ତର-ଖାନା ପର୍ଯ୍ୟନ୍ତ ଯାଇ ପାରିବ ନାହିଁ—ମନର ଆବେଗରେ ଏତକ ଏକ ନିଃଶ୍ୱାସରେ କହି ପକାଇ ଦମ୍ ନେବା ପାଇଁ ଅଟକି ଗଲେ ଅଧ୍ୟକ୍ଷ ମହାଶୟ । ତାହାଙ୍କୁ ଉପରସ୍ଥ ଅଫିସରଙ୍କ ସମ୍ମୁଖରେ ଏଭଳି ଉତ୍ତେଜିତ ଭାବରେ କଥା କହିବାର କେହି କେବେହେଲେ ଦେଖି-ନାହାନ୍ତି ।

—ସେ ଯାହାହେଉ, ମୁଁ ଯୁକ୍ତିତର୍କ କରିବାକୁ ଚାହେଁ ନାହିଁ ।

ଡିରେକ୍‌ଟରଙ୍କ ଆଖିରୁ ଅଗ୍ନି ବର୍ଷିବାକୁ ଲାଗିଲା । ସେ ତରବରି ଚାହିଁ ଛଲେଇ କହିଲେ—"ଆପଣ ଯେତେବେଳେ ଚାକିରି କରୁଛନ୍ତି ଫୁଲବାଣୀ ଜିଲ୍ଲାରେ, ସେତେବେଳେ

ଯେଠାକାର ମୁଖ୍ୟ ଚକଗ୍ରିକଙ୍କର ସାର୍ଟିଫିକେଟ ଆଣି ଦାଖଲ କରିବାକୁ ପଡ଼ିବ । ଯେପର୍ଯ୍ୟନ୍ତ ବୈଷ୍ଣବଗଞ୍ଜନ ଦାୟିତ୍ୱ ହସ୍ତାନ୍ତରିତ କରିବେ ନାହିଁ ।"

ଏହି ଦରବାରୀ ସ୍ୱରରେ ଟିକିଏ ବିବ୍ରତ ହୋଇ ପଡ଼ିଲେ ଅଧକ୍ଷ । କିନ୍ତୁ କଥାରେ କୌଣସି ପ୍ରକାର ରାଗ, ବିରକ୍ତ କିମ୍ବା କୌଶଳର ସୂଚନା ନ ଦେଇ ଧୀର ସ୍ୱରରେ ଉତ୍ତର ଦେଲେ—"ତାହାହେଲେ ସେଭଳି ଆଦେଶ ହେଉ !"

—ସେଭଳି ଆଦେଶ ଦିଆଯାଉଛି । ଆମେ ମଧ୍ୟ ତାହା ଫୁଲବାଣୀ ଜିଲ୍ଲାର ମୁଖ୍ୟ ଚକଗ୍ରିକଙ୍କୁ ଜଣାଇ ଦେଉଛୁ, ଆପଣ ଫେରିଯାଆନ୍ତୁ ।

ପ୍ରାଣପଣେ ଜଣେ ଯେତେବେଳେ ଅନ୍ୟଜଣକୁ ପ୍ରାୟ ପନ୍ଦର କୋଡ଼ିଏ ମିନିଟ ପର୍ଯ୍ୟନ୍ତ କଥାବାର୍ତ୍ତା ମଧ୍ୟରେ ପ୍ରକୃତ ବିଷୟ ବୁଝାଇବାକୁ ଅକ୍ଷମ, ସେତେବେଳେ ସ୍ପଷ୍ଟ ବାରିହୋଇ ପଡ଼ିଲା, ଡିରେକ୍ଟରଙ୍କର ମସ୍ତିଷ୍କ ଅଛି-ହୃଦୟ ନାହିଁ; ମୁଣ୍ଡ ଅଛି-ଗ୍ରୀବନାହିଁ । ବାଧ୍ୟ ପୁଣୀଳ ସୁବୋଧ କର୍ମଗ୍ରୀରୀ ଭଳି ଅଧ୍ୟକ୍ଷ ବିପିନ୍ ବିହାରୀ ଚଟ୍ଟୋପାଧ୍ୟାୟଙ୍କର ଗତ୍ୟନ୍ତର ନାହିଁ । ସେ ଆଉ ଭୁଣ୍ଡ ଉଖଣ୍ଡ ନ କରି ସବିନୟ ପ୍ରଣାମ ଜଣାଇ ଡିରେକ୍ଟରଙ୍କର ପ୍ରକୋଷ୍ଠରୁ ବାହାରି ଆସିଲେ ।

ଉପରିସ୍ଥ ଅଫିସରଙ୍କର ନିଷ୍ପତ୍ତି ସବୁବେଳେ ନିରପେକ୍ଷ ଓ ନ୍ୟାୟସଙ୍ଗତ ହୋଇ ନ ପାରେ । ତଥାପି ସେ ଯେଭଳି ଆଦେଶ କରିବେ, ତାହାକୁ ପାଳନ କରିବା ଅଧସ୍ତନ କର୍ମଗ୍ରୀରୀଙ୍କ କର୍ତ୍ତବ୍ୟ । ଭାରତୀୟ ଡେମୋକ୍ରାସି ଓ ବ୍ୟୁରୋକ୍ରେସି ମଧ୍ୟରେ ଏହି ଯେଉଁ ଅଲେଖା ସମ୍ବିଧାନ ବଳବତ୍ତର ରହିଛି ଓ ଦିନକୁ ଦିନ ଅଧିକ ନିଷ୍ଠୁର ହେଉଛି, ତାହାକୁ ନିର୍ବିକାର ଚିତ୍ତରେ ଚୁଣ୍ଡାଇ ଦେଲା ଭଳି ଅମାର୍ଜନୀୟ ଅପରାଧ-ପ୍ରବଣତା ଅଧକ୍ଷ ଚଟ୍ଟୋପାଧ୍ୟାୟଙ୍କର କାହିଁ ? ପିଲାଛୁଆ ଯେଉଁ ଯେତେବେଳେ ଘରସଂସାର କରିବାକୁ ହୋଇଛି, ସେତେବେଳେ ଅନବରତ ଭୟରେ ଥରି ଥରି ମଣିଷ ମନରୁ ଆତ୍ମବିଶ୍ୱାସର ଚେର ଉପୁଡ଼ି ଗଲାଣି । ଗ୍ରାରିଆଡ଼େ ନିରାଶା-ଶୂନ୍ୟତା । ସ୍ୱର୍ଗକୁ ନିଶୁଣି ନାହିଁ, ଅମିତ କ୍ଷମତାଶାଳୀ ଉପରିସ୍ଥ କର୍ତ୍ତାଙ୍କ ନିର୍ଗତ କ୍ରୋଧର ଉପଶମ ପାଇଁ ଉପଗ୍ରର ନାହିଁ । ସେମାନଙ୍କ ବଡ଼ପଣ, ପ୍ରଭାବ, କ୍ଷମତା, ଅଧିକାର, ଆସନର ମହତ୍ତ୍ୱ ଚିରକାଳ ଦେଦୀପ୍ୟ-ମାନ । ତଥାପି ନିଜକୁ କମ ସଙ୍କୁଚିତ କରାଇ, ବିବେକାନୁମୋଦିତ ପନ୍ଥାରେ ଆନୁଗତ୍ୟ ଦେଖାଇ ଯେତିକି ଉତ୍ତର ଦେଇଛନ୍ତି, ସେଥିରେ କ'ଣ ନାହିଁ କ'ଣ ହୋଇଯିବା ଭଳି କଥା । ଦଣ୍ଡିବାର କ୍ଷମତା ଓ ତଣ୍ଡିବାର ପ୍ରବୃତ୍ତି ଜଣକ ହାତରେ । ଫାଇଲଜାଂଟ ବଡ଼-ବାବୁଙ୍କ ଠାରୁ ଆରମ୍ଭ କରି ମାଠ ପ୍ରବକ୍ତା ଗ୍ରେଟବାବୁଙ୍କ ପର୍ଯ୍ୟନ୍ତ ସମସ୍ତେ ଚିନ୍ତିତ, ସମସ୍ତେ ଶଂକିତ, ସମସ୍ତେ ଦ୍ୱିଧାଗ୍ରସ୍ତ । ମଣିଷର ସ୍ମିତ, ମଣିଷର ଭ୍ରୂକୁଟୀ ଏବେ ପୁରା ଜୀବନ ଓ ମରଣର ବୃଟି ହୋଇରହିଛି ।

କାଳବିଳମ୍ବ ନ କରି ଆବଶ୍ୟକୀୟ ଆଦେଶପତ୍ର ଟାଇପ କରି, ସଙ୍ଗୀତ ନବୀଶ ଅଧକ୍ଷ ଚନ୍ଦ୍ରହଟରାୟଙ୍କୁ ଧରାଇ ଦେଲା ପରେ ବଡ଼ବାବୁ କୃତ୍ରିମ ଉପାୟରେ ହସ ସୃଷ୍ଟି କରି ଆଖିତଳ ଚମଡ଼ାକୁ କୁଞ୍ଚେଇ ଚଶମା ଫାଙ୍କରୁ ତେରେଛେଇ ଚାହିଁଲେ । ଉପଦେଶ ଛଳରେ କହିଲେ—"ଆପଣ ଯେତେଶୀଘ୍ର ମୁଖ୍ୟ ଚିକିତ୍ସକଙ୍କ ଠାରୁ ସାର୍ଟିଫିକେଟ ଆଣି ଦାଖଲ କରିବେ, ସେତେ ଶୀଘ୍ର ସବୁ ସମସ୍ୟାର ସମାଧାନ ଘଟିବ ।"

ସେ ବଡ଼ ହିସାବୀ । ବସି ବସି ହିସାବ କରୁଥାନ୍ତି ସବୁବେଳେ । ସାଧାରଣ କଥାବାର୍ତ୍ତା ସୁଦ୍ଧା ହିସାବ କରି ମାପିଚୁପି କହନ୍ତି । ଜୀବନ ତାଙ୍କର ବହୁମୁଖୀ ଆଫିସିକ ଅଭିଜ୍ଞତାର ଆଧାର । ବ୍ୟାହତ ହୃଦୟରେ ଅଧକ୍ଷ ଚନ୍ଦ୍ରହଟରାୟ ଚୁପ୍ ହୋଇ ଫେରି-ଆସିଲେ । ମନେ ମନେ ଦମ୍ଭ ବାନ୍ଧିଲେ ଉପଯୁକ୍ତ ଶିକ୍ଷାଟାଏ ଦେବା ପାଇଁ ।

ମନେହେଲା ମୁଖ୍ୟ ଚିକିତ୍ସକ ମହୋଦୟ ଅତି ଭଦ୍ରଲୋକ, ସାହା-ସାଥୀହୀନ ଦୁର୍ଗତ ମଣିଷର ବନ୍ଧୁ । ବୁଦ୍ଧିମତ୍ତା ତାଙ୍କର ନ୍ୟୂନ ନୁହେଁ । ତାଙ୍କ ଶରଣାପନ୍ନ ହେବାକୁ ଅଧିକ ସମୟ ଲାଗିଲା ନାହିଁ । ସେ ଅଧକ୍ଷ ବିପିନ ବିହାରୀ ଚନ୍ଦ୍ରହଟରାୟଙ୍କ ଠାରୁ ସମସ୍ତ ଦୁଃଖ, ବ୍ୟର୍ଥତା, ବିଫଳତା ଓ ନୈରାଶ୍ୟର କାହାଣୀ ଶୁଣିଲେ ଧୈର୍ଯ୍ୟର ସହିତ । କଟକ ମେଡ଼ିକାଲ କଲେଜର ଅଧ୍ୟାପକଙ୍କ ସାର୍ଟିଫିକେଟକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ଯଥା ସମ୍ଭବ ସେହି ମର୍ମରେ ସାର୍ଟିଫିକେଟଟିଏ ଦେବା ପାଇଁ କିରାଣୀଙ୍କୁ ଡକାଇ ଆଦେଶ ଦେଲେ ଓ କହିଲେ, "ମଣିଷକୁ ଅଯଥାରେ ହଇରାଣ ହରକତ କରିବା ଉଚିତ ନୁହେଁ । କଟକ ମେଡ଼ିକାଲ କଲେଜ ଅଧ୍ୟାପକଙ୍କ ସାର୍ଟିଫିକେଟ ଠାରୁ ମୋ ସାର୍ଟିଫିକେଟର ଗୌରବ ଅଧିକ ନୁହେଁ । ଗଭୀରତମ ଅନୁଭୂତି ଓ ଅଭିଜ୍ଞତାକୁ ସମ୍ବଳ କରି ଅନୁମାନ କରୁଛି, କେବଳ ଏକ ପ୍ରକାର ପ୍ରତିକୂଳ ମନୋବୃତ୍ତି ଯୋଗୁ ଏଭଳି କାର୍ଯ୍ୟ କରାଯାଇଛି । ଆପଣଙ୍କୁ ଏଠାକୁ ପଠାଇବା ଅନାବଶ୍ୟକ । ସୁତରାଂ ସାବଧାନ ରହିବା ଉଚିତ । ଯେତେଦୂର ମନେହୁଏ, ଏହା ମଧ୍ୟରେ ଲୁକ୍କାୟିତ ବ୍ୟକ୍ତି ସ୍ୱାର୍ଥର ଜୀବାଣୁ ନିହିତ । ଉଭୟ ସାର୍ଟିଫିକେଟର ଜେରକ୍ସ କପି ପାଖରେ ରଖିବା ଆବଶ୍ୟକ । ଭବିଷ୍ୟତ ପାଇଁ ଅନ୍ତତଃ ନିରାପଦ ।"

କୌଣସି ପ୍ରକାର ଦକ୍ଷିଣା ନ ନେଇ ସେ ଅଯାଚିତ ସହାନୁଭୂତିର ସହିତ ଘଟଣାର ପୂର୍ଣ୍ଣଚ୍ଛେଦ ଦେଲେ । ସ୍ୱୟଂ ଚନ୍ଦ୍ରହଟରାୟ ଦକ୍ଷିଣା ପ୍ରସଙ୍ଗ ଉତ୍ଥାପନ କରିବାରୁ ଅଳ୍ପ ନୀରବ ରହି ଚିକିତ୍ସକ ସଂକ୍ଷିପ୍ତ ଉତ୍ତର ଦେଲେ—"ମୋର ଫିସ୍ ଗ୍ରହଣ କରିବା ଅନାବଶ୍ୟକ । କେବଳ ଆପଣଙ୍କ ଡିରେକ୍ଟରଙ୍କ ଆଦେଶ ଅନୁଯାୟୀ କାର୍ଯ୍ୟ କରି-ଦେଇଛି ।"

ଫୁଲବାଣୀ ଜିଲ୍ଲାର ମୁଖ୍ୟ ଚିକିତ୍ସକଙ୍କ ଠାରୁ ସାର୍ଟିଫିକେଟ ଆଣି ଦାଖଲ କଲା ପରେ ମଧ୍ୟ ଡିରେକ୍ଟର ମହୋଦୟଙ୍କର କୌଣସି ପ୍ରକାର ପ୍ରତିକ୍ରିୟା ପ୍ରକାଶ ପାଇଲା-

ନାହିଁ । ପାର୍ଟିନ ଅପେକ୍ଷା କଲେ ସୁଦ୍ଧା ସ୍ୱରପ୍ରାପ୍ତ ଅଧକ୍ଷ ବୈଷ୍ଣବଭକ୍ତଙ୍କ କ୍ଷମତା ହସ୍ତାନ୍ତର କରିବା ନିମନ୍ତେ ସର୍ବନିମ୍ନ ନିର୍ଦ୍ଦେଶ ପର୍ଯ୍ୟନ୍ତ ଦିଆଗଲା ନାହିଁ । ଉତ୍ତମ ସାଧୁଙ୍କର ମାରବତା ଅଧମ ପଣିଆକୁ ବଳପଡ଼ିଲା । ଚନ୍ଦ୍ରଚୂଡ଼ ବୈଷ୍ଣବକ୍ତନ ନିଜ ତରଫରୁ ଆଦୌ କ୍ଷମତା ହସ୍ତାନ୍ତର କରିବା କଥା ଚିନ୍ତା କଲେନାହିଁ । ଅଦ୍ଭୁତ ଔଦ୍ଧତ୍ୟ ! ସତେ ଯିମିତ ସିଏ ଭବିଷ୍ୟତର କାଣ୍ଡାରୀ । ବରଂ ଉଲ୍ଲଫୁଲ୍ଲିତ ହୋଇ ପାର୍ଶ୍ୱଚରମାନଙ୍କ ସହାୟତାରେ ନିଜକୁ ସର୍ବ କ୍ଷମତା ସମ୍ପନ୍ନ ଅଧକ୍ଷ ଭାବେ ସେ ବାଟେ-ଘାଟେ, ହାଟରେ-ବଜାରରେ ଉଦ୍‌ଘୋଷଣା କରିଚାଲିବାକୁ ଗୁରୁତର ମନ୍ତ୍ରଣା ଲଗାଇଲେ । ଛୁଟିରେ ଯିବା ସମୟରୁ ଅଧକ୍ଷ ବସୁଥିବା ପ୍ରକୋଷ୍ଠଟି ସମ୍ପୂର୍ଣ୍ଣ ବନ୍ଦ ଥାଏ । ତାହାକୁ ଯୋଗ ଯବରଦସ୍ତ ଦଖଲ କରିନେବା ପାଇଁ ସେ ପ୍ରାଣଚଞ୍ଚାନ୍ତ ପର୍ଯ୍ୟନ୍ତ ଆରମ୍ଭ କରିଦେଲେ ।

ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ଅଧକ୍ଷ ରୂପେ ବସିନ ବିହାରୀ ଚହଟରାୟ କାର୍ଯ୍ୟରେ ଯୋଗ ଦେଲା ପରେ ଚନ୍ଦ୍ରଚୂଡ଼ ବୈଷ୍ଣବଭକ୍ତନ ସୌଜନ୍ୟତା ରକ୍ଷା କରି ସତ୍ୟ, ନ୍ୟାୟ ଓ ମାନବିକତା ଦୃଷ୍ଟିରୁ କ୍ଷମତାକୁ ଓହ୍ଲାଇଯିବା କଥା । ଏ କ୍ଷେତ୍ରରେ ତାହା ତ ହେଲାନାହିଁ, ବରଂ ଡିରେକ୍‌ଟରଙ୍କ ସହାୟତାରେ ସେ ହୋଇ ଉଠିଲେ ବେଶ୍ ପ୍ରତିପତ୍ତିଶାଳୀ । ଅଧିକ ପ୍ରାପ୍ତି, ଅଧିକ ଭୁକ୍ତି, ଅଧିକ କ୍ଷମତାର ଆକାଙ୍କ୍ଷା ସେକି ଏଭଳି କାର୍ଯ୍ୟ ଆରମ୍ଭ କରିଦେଲେ, ସେଥିରେ ଅଧକ୍ଷ ଚହଟରାୟ ଚମକି ପଡ଼ିଲେ । ପ୍ରିୟ ଗ୍ରନ୍ଥଗ୍ରନ୍ଥୀମାନଙ୍କ ସହାୟତାରେ ସେ ଅଧକ୍ଷଙ୍କର ବଦ୍‌ନାମ ବା କୁତ୍ସା ରଟାଇବାରେ ଲଗିଲେ । ପୁଙ୍ଖର କଳ୍ପନା ସାହାଯ୍ୟରେ ଦିନକୁ ରାତି ଓ ରାତିକୁ ଦିନ ବୋଲି ଦେଖାଇ ବୁଲିଲେ ଅତି ସ୍ୱାଧୀନ ଓ ନିର୍ଲଜ ଭାବରେ । ଯେଉଁ ନିଷ୍ପାପ, ସରଳ ଓ ନିର୍ମଳ ଅନ୍ତର ସେନି ଅଧକ୍ଷ ମହାଶୟ କ୍ଷମତା ହସ୍ତାନ୍ତର କରି ଛୁଟିରେ ଯାଇଥିଲେ, କୁଟୀଳତାପୂର୍ଣ୍ଣ ଦୁନିଆରେ ତାହା ବ୍ୟର୍ଥ ହୋଇ ଯାଇଛି । ଏହି ବ୍ୟର୍ଥତା ହିଁ ତାଙ୍କ ଭାବନାର ଏକ ସୁବୃହତ ପରିସର ଅଧିକାର କରି ରହିଛି । ଏଣୁ ବ୍ୟୁରଆଡ଼କୁ ଦେଖି ବ୍ୟୁହ ପରିହାରି ସେ ଡିରେକ୍‌ଟର ଅଫ୍‌ ଟ୍ରେଜେରୀଙ୍କୁ ସବୁ ବିଷୟ ସଂକ୍ଷେପରେ ଲେଖି ଜଣାଇଦେଲେ । ଆଉ ମଧ୍ୟ ଜଣାଇଦେଲେ ଯେ ଛୁଟିରୁ ଫେରି କାର୍ଯ୍ୟରେ ଯୋଗ ଦେଲା ପରେ ଯଦି ଖୋଦ୍ ଅଧକ୍ଷଙ୍କ ବିନା ସ୍ୱାକ୍ଷରରେ କୌଣସି ବିଲ୍‌କୁ ସ୍ଥାନୀୟ ଟ୍ରେଜେରୀ ଅଫିସର ସମ୍ମାନ ଦିଅନ୍ତି, ତାହାହେଲେ ସେହି ସରକାରୀ ଅର୍ଥ ଓ କ୍ଷମତାର ଅପପ୍ରୟୋଗର ଦୁର୍ଭାଗ୍ୟଜନକ ପରିସ୍ଥିତି ନିମନ୍ତେ ସ୍ୱୟଂ ଟ୍ରେଜେରୀ ଅଫିସର ଦାୟୀ ରହିବେ । ଏଥିସହିତ ନିଜେ କାର୍ଯ୍ୟକ୍ଷମ ଥିବା ଦର୍ଶାଇ ଫୁଲବାଣୀର ମୁଖ୍ୟ ଚିକିତ୍ସକ ଓ କଟକ ମେଡ଼ିକାଲ କଲେଜ ଅଧ୍ୟାପକଙ୍କର ସାର୍ଟିଫିକେଟ ଦୁଇଟିର ଜେରକ୍‌ସ ନକଲ ଯୋଡ଼ିଦେଲେ ପ୍ରତ୍ୟକ୍ଷ ପ୍ରମାଣ ସମ୍ବନ୍ଧରେ ଅବଧାରଣା ପାଇଁ । ଏହାର ନକଲ ଅର୍ଥ ବିଭାଗର ସଚିବ ଓ ଏକାଉଣ୍ଟାଣ୍ଟ ଜେନେରାଲଙ୍କୁ ପଠାଇ ଦେଲା ପରେ ଗଭୀର ଅନ୍ତର୍ଦାହକୁ ସମ୍ବଳ କରି ରହିଲେ ସରକାରଙ୍କ ପ୍ରତିକ୍ରିୟାର

ଅପେକ୍ଷାରେ । ସ୍ୱୀକାରରେ ନିର୍ଯ୍ୟାତନା ସ୍ରୋତ ଓ ସଂଗ୍ରାମର ଏକ ନୂତନ ଅଧ୍ୟାୟର ସୂଚନା ମିଳିଲା । ବନ୍ଦୁକର ଅଙ୍କୁଶ ଯିମିତ ଅତି ତୀବ୍ର ଓ ନିର୍ଦ୍ଦୟ ଭାବରେ କର୍ଣ୍ଣମୂଳରେ ଆଘାତ ଦେଇଯାଇଛି ।

ଏକଦା କ୍ଷମତା ଓ ପ୍ରତିପତ୍ତି ସମ୍ପନ୍ନ ବ୍ୟକ୍ତି ନିଜ ଅନୁଷ୍ଠାନ ମଧ୍ୟରେ ସମ୍ମାନ, ସୁବିଧା ଓ ସୁଯୋଗ ହରାଇ କେବଳ ବସି ରହିଲେ କହିଲେ ଠିକ୍ ହେବନାହିଁ, ବରଂ ଚନ୍ଦ୍ରଚୂଡ଼ ବୈଶ୍ୱରଞ୍ଜନଙ୍କ ନିଷ୍ଠୁରତା ଓ ପ୍ରତାରଣାପୂର୍ଣ୍ଣ ଅମଲାତାନ୍ତ୍ରିକ ଅହଂକାରର ମହୋତ୍ସବକୁ ଲକ୍ଷ୍ୟ କରିବାକୁ ଲାଗିଲେ । ଦିନକୁଦିନ ତାଙ୍କର ମହତ୍ତ୍ୱ ଫୁଟିବାକୁ ଲାଗିଲା । ଖଟୁଆ, ଚୁଗୁଲି ଖୋର, ସୁବିଧାବାଦୀମାନଙ୍କ ପାଇଁ ତାଙ୍କ ଦୁଆର ମୁକୁଳା ହେଲା । କାହାକୁ ଚପରାସି ସ୍ୱୀକାର କରାଇଦେବେ, କାହାକୁ ଫଟୋଗ୍ରାଫର କରାଇ-ଦେବେ, କାହାକୁ କିରାଣୀ ସ୍ୱୀକାରରେ ଆଠଦିନ ନ ପୂରୁଣୁ ନିଯୁକ୍ତି ମିଳିଯିବ, ଏପରିକି କାହାକୁ କାହାକୁ ଅଧ୍ୟାପକ କରାଇ ଦେବା ପାଇଁ ଅତ୍ୟନ୍ତ କର୍ମବ୍ୟସ୍ତ ଭଳି ଲାଗିପଡ଼ିଲେ । ମୁହୂର୍ତ୍ତିଟିଏ ପୁଚ୍ଛା ବିଶ୍ରାମ ମିଳିଲା ନାହିଁ । ବେପରୱା କାରବାର । ହେଲକୁହେଲ ଗାତ ଭିତରେ ନାନାରୂପ ଓ ନାନା ଭେକ ଧରି ଅଜ୍ଞାତ ଓ ଦୁର୍ନୀତ ସବୁ ଯିମିତ ଧସାଇ ପଶିଲା । କେବଳ ଶ୍ରୁତି ଓ ପ୍ରତିଶ୍ରୁତିକୁ ଭିତ୍ତିକରି ହଜାର ହଜାର ଟଙ୍କା ସ୍ୱୀକାର ହେଲା । ମଣିଷପଣିଆ ଯେଉଁ ଆଡ଼କୁ ଯାଉ ପରବାଏ ନାହିଁ, ହଟଚମକ ଯୋରଦାର । ଓରେ-ଲ୍‌ଟର ଉତ୍ତମ ସାଙ୍ଗ ଆନନ୍ଦୋଲ୍ଲାସ ମଧ୍ୟରେ ସମ୍ପୂର୍ଣ୍ଣ ଉପଲବ୍ଧି କଲେ ଯେ ପ୍ରକୃତରେ ବୈଶ୍ୱରଞ୍ଜନ ହେଉଛନ୍ତି ଜଣେ କରିତ୍‌କର୍ମା ଅଫିସର । ସେ କଲେଜର ଅଧ୍ୟକ୍ଷ ପଦରେ ରହିଥିବାରୁ ଶୁଖିଲା କାଠରୁ ମଧ୍ୟ ରସ ଝରାଇ ପାରୁଛନ୍ତି । ମୋଟା ଅଙ୍କର କମିଶନ-ଭିତ୍ତିକ ଶାସନ ସ୍ୱୀକାରପାଉଛି, ଅନୁଷ୍ଠାନରେ କର୍ମତତ୍ପରତା ବୃଦ୍ଧି ପାଉଛି । ଶିକ୍ଷା-ଜଗତରେ ଏହିଭଳି ଅଫିସରଙ୍କୁ ପୂର୍ବ ଜନ୍ମର ତପସ୍ୟା ଥିଲେ ଦେଖିବାକୁ ମିଳେ ।

ହାରାହାରି ଗୋଟିଏ ମାସ ଅତିବାହିତ ହେଲାବେଳକୁ କଲେଜର ଏକାନ୍ତ ବିଶ୍ୱସ୍ତ ଓ ଅନୁଗତ କିରାଣୀ ମହାପାତ୍ରେ କର୍ମଚାରୀମାନଙ୍କ ଦରମାବିଲ ପ୍ରସ୍ତୁତ କରି ବୈଶ୍ୱରଞ୍ଜନଙ୍କ ଦସ୍ତଖତରେ ଟ୍ରେଜେରୀରେ ପଇଠ କରି ନିଜର କର୍ମ ସମ୍ପାଦନ କଲେ । ଟ୍ରେଜେରୀ ଅଫିସର ତାହା ଗ୍ରହଣ କଲେନାହିଁ । ଏଥିରେ ବୈଶ୍ୱରଞ୍ଜନଙ୍କ ଆଭିଜାତ୍ୟ-ଉତ୍କ୍ଷିପ୍ତ ହୋଇ ଉଠିଲା, ମୁଣ୍ଡକୁ ରକ୍ତ ଉଠିଗଲା । ସମସ୍ତ କର୍ମଚାରୀଙ୍କୁ ଏକାଠି କରି ଗୋଟିଏ କ୍ଷୁଦ୍ର ଶୋଭାଯାତ୍ରାରେ ସେ ଚାଲିଲେ ଟ୍ରେଜେରୀ ପର୍ଯ୍ୟନ୍ତ । କଥାହେଲା, ହୃଦୟ-ହୀନ ଟ୍ରେଜେରୀ ଅଫିସରଙ୍କୁ ଘେରାଉ କରାଯାଉ, ସେଠାରେ ସତ୍ୟାଗ୍ରହ କରାଯାଉ । ଅନ୍ତତଃ ଉପସ୍ଥିତ ପରିସ୍ଥିତିର ମୁକାବିଲା ପାଇଁ ତାଙ୍କ ଦ୍ୱାରା ବିଲ ପାସ୍ କରାଯାଉ । ପାପ ମନରେ ହିଁ ଯେଉଁଭଳି ଉଲ୍ଲେଖଯୋଗ୍ୟ ପ୍ରପଞ୍ଚ ବୁଦ୍ଧି, ତାହାର ଆଚରଣ ଗତ ହାବ-ଭାବ ହେଉଛି ତତୋଽଧିକ ଗୁରୁତ୍ୱପୂର୍ଣ୍ଣ ।

ଯେଉଁ କର୍ମଚାରୀମାନେ ଆରମ୍ଭ ଦେଖାଇ ବୈଷ୍ଣବଚରଣଙ୍କ ପଛେ ପଛେ ଚାଲିଥିଲେ, ଟ୍ରେଜେରୀ ଅଫିସର ବାଗେଣ୍ଡାକୁ ଫେରିଗଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଦେଲେଣି ପୃଷ୍ଠଭଙ୍ଗ ! ବହୁ ଆଡ଼ମ୍ବର ଲଘୁ କ୍ରିୟାର ଏକ ସାର୍ଥକ ଉଦାହରଣ ଭଳି ଅଫିସରଙ୍କ ଚଉକି ପାଖକୁ ଗଲେ ମାତ୍ର ବୈଷ୍ଣବଚରଣ ଓ ତାଙ୍କ କରଣୀ ମହାପାତ୍ର । ପାଦ ବୁଲାଇବାକୁ ଯାଗା ନାହିଁ । ଦୁଆର କବାଟ ଦେହକୁ ଅନ୍ଧାରରେ ନେଇ ଯାଇ ଠିଆହେଲେ ଟ୍ରେଜେରୀ ପିଅନ ଗୋପାଳ ସାଆନ୍ତେ । ଚୋଲା ଲେଉଟାଇ, ନିଜ ଫାଇଲ ନିଜ ପକ୍ଷରୁ ବୈଷ୍ଣବଚରଣ କେତେ ପ୍ରକାର ଯୁକ୍ତି ବାଢ଼ିଲେ, ହଟଚମଟ ଦେଖାଇଲେ; ବିଲ ଫେରସ୍ତ କରିଦେଲେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହେବ ସେଥିପାଇଁ ସେ ଆଦୌ ଦାୟୀ ହୋଇ ପାରିବେ ନାହିଁ ବୋଲି ପ୍ରକାରାନ୍ତରେ ଧମକ ଦେଲେ । ଅଦ୍ଭୁତ ଟାଉକାପଣ ପ୍ରକଟିତ କରି କାମ ହାସଲ ପାଇଁ ନାନାପ୍ରକାର ଚାପ ପକାଇଲେ । ଯେଥିରେ ଟ୍ରେଜେରୀ ଅଫିସର ବିଚଳିତ ହେଲେ ନାହିଁ କିମ୍ବା ପ୍ରଭାବିତ ହେଲେ ନାହିଁ । ଶେଷକୁ ଜଣାଗଲା ଯେ ସେ ହେଉଛନ୍ତି ଗୋଟିଏ ନିଦା ବସ୍ତୁ—ଜମାଟବନ୍ଧା ପଥର ଖଣ୍ଡେ । ହୁର୍କିବେ ନାହିଁ କିମ୍ବା ଚୁର୍କିବେ ନାହିଁ । ମନେହେଲା ବସନ୍ତ ଯିମିତି ସେଠାରେ ଫୁଲ ଫୁଟାଏ ନାହିଁ କିମ୍ବା ବର୍ଷା ସେଠାରେ ପାଣି ଝରାଏ ନାହିଁ । ପଥରର ବନ୍ଧୁରତା ଓ କର୍କଶତା ଯେମିତି ସେ ସରକାରୀ ତହବିଲକୁ ମୁଠାଇ ଧରିଛନ୍ତି, ପରିଚ୍ଛନ୍ନତାମୟ ଗମ୍ଭୀର ପରିବେଶ ମଧ୍ୟରେ ଆତଯାତ ହେଉଛନ୍ତି । ପରିଶେଷରେ ଧୈର୍ଯ୍ୟ ଓ ପ୍ରତ୍ୟୁତ୍ପନ୍ନମତିତ୍ୱର ଚୂଡ଼ାନ୍ତ ପ୍ରତୀକ ଭଳି ସେ ଡିରେକ୍ଟର ମହୋଦୟଙ୍କୁ ଏକ ପଥୁରିଆ ପତ୍ରରେ ଜଣାଇଦେଲେ ଯେ ଏହି କଲେଜର ପ୍ରକୃତ ଅଧ୍ୟକ୍ଷ କିଏ, ତାହା ନ ଜଣାଇଲା ପର୍ଯ୍ୟନ୍ତ କୌଣସି ବିଲ୍‌କୁ ସମ୍ମାନ ଦିଆଯାଇ ପାରିବ ନାହିଁ ।

ଏ ଅପମାନ, ଏ ଆଘାତ, ଏ ହତାଶା ଚନ୍ଦ୍ରଚୂଡ଼ ବୈଷ୍ଣବଚରଣଙ୍କ ମନକୁ ମ୍ରିୟମାଣ କରି ପକାଇଲା । ସେ ମଧ୍ୟ ଉପାୟହୀନ ଓ ନିରୁତ୍ସାହ ନ ହୋଇ ଛୁଟିଗଲା ଯିଅକୁ ଗଁଠେଇ କର୍ମଚାରୀମାନଙ୍କ ମନରେ ପରିଆସ ସୃଷ୍ଟି ପାଇଁ ଉଦ୍ୟମ କଲେ । ବିବାଦ-ବିସମ୍ବାଦର ବିବରଣୀ ସହିତ ନିଜ କାର୍ଯ୍ୟର ଅବାଧ ସଫଳତାର କାମନା କରି ଜନୈକ ବିଶ୍ୱସ୍ତ କର୍ମଚାରୀଙ୍କୁ ଭୁବନେଶ୍ୱର ପର୍ଯ୍ୟନ୍ତ ପଠାଇଦେଲେ । ଭିତରମନରେ ଯେତିକି ଆଶା-ଉତ୍ସାହ ଓ ଉଦ୍ଦୀପନା ସମ୍ଭବ, ସେତିକି ନେଇ ଆଶ୍ରୟ ବତ୍ସଳ କରୁଣାର୍ଦ୍ର ଡିରେକ୍ଟରଙ୍କର ସାହାଯ୍ୟ ଲୋଡ଼ିଲେ । କିନ୍ତୁ ତାଙ୍କ ଦପ୍ତରରୁ କୌଣସି ପ୍ରକାର ଲିଖିତ ଆଦେଶ ଆସି-ପାରିଲା ନାହିଁ । ଭଗବାନ ହେଲେ ଭଗାରୀ । ବରଂ ଟ୍ରେଜେରୀ ଅଫିସରଙ୍କ ଚିଠିକୁ କେନ୍ଦ୍ର କରି ବୈଷ୍ଣବଚରଣଙ୍କ ଅଧିକାର ଓ ଆଧିପତ୍ୟ ସମ୍ବନ୍ଧରେ ଯେଉଁ ଜଟିଳ ପରିସ୍ଥିତି ଉଦ୍‌ଭବ ହେଲା, ତାହା ଡିରେକ୍ଟର ଉତ୍ତମ ସାହୁଙ୍କ ସମାଧାନର ସୀମା ମଧ୍ୟରେ ଆଉ ରହିଲା ନାହିଁ । ବାସ୍ତବରେ ସେ ପଡ଼ିଗଲେ ଏକ କଠୋର ପରୀକ୍ଷାରେ । କିଛି ସମୟ ଚୁପ୍-ହୋଇ ବସି ରହିଲେ ଗ୍ଲାପଣ ବ୍ୟଥା ଓ ଗଭୀର ଦୁଃଖରେ ।

ବିଜୟ ବୈଜୟନ୍ତୀ ଉଡ଼ାଇ ଫେରିବା ପାଇଁ ବହୁଦିନରୁ ଚେଷ୍ଟା କରି ଯାଉଥିବା ମୁଖ୍ୟପାତ୍ର ଜଣଙ୍କ ସନ୍ଦିଗ୍ଧ ସମ୍ବାଦ ସଂଗ୍ରହ କରି ଫେରିଆସି ନିଜ ବନ୍ଧୁ ମହଲରେ ପ୍ରଚାର କରାଇଦେଲେ ଯେ ଖୋଦ ଡିରେକ୍ଟର କୁଆଡ଼େ ଖୁବ୍‌ଜୋର ମନରେ ଝାଡ଼ିଦେଲେ—'ଅଧ୍ୟକ୍ଷ ଷ୍ଟିଫେନ୍ ଗ୍ରହାଣ୍ଡ ଚକ୍ରାନ୍ତଗ୍ରସ୍ତ ଟିକେ କରି ନ ପାରି ନିଜ ଚପରାସି ନାଇଁଟା ସରକାରୀ ଫାଇଲ ଭିତରେ ଭର୍ତ୍ତି କରାଇ ଦେଇଛନ୍ତି । ତାହାଙ୍କୁ ବାହାର କରି ଫିଙ୍ଗିଦେବା-ପାଇଁ କଡ଼ାହାତର ଚାକରି ଲୋଡ଼ା ।'

ଏଥିରେ ସମସ୍ତେ ସ୍ତବ୍ଧ ଓ ଚକିତ ହୋଇ ଗୁହାରିଲେ । ଯେଉଁ ଡିରେକ୍ଟରଙ୍କ କଥା ତାଙ୍କ ପକ୍ଷରେ ବେଦବାଣୀ ଥିଲା, ବର୍ତ୍ତମାନ ତାହା ଯିମିତି କୁତ୍ସିତ ବାସ୍ତବତାକୁ ପ୍ରାଚୀର ଭଳି ଠିଆ କରାଇଦେଲା ।

ଗୋଟିଏ ମାସ ଯାଇଥିଲା । ସେହିପରି ଭାବରେ ଧୀର ମନ୍ଥର ଗତିରେ ଆଉ ଦୁଇଟି ମାସ ବିତିଗଲା । ଚତୁର୍ଥମାସ ବେଳକୁ ନ୍ୟାୟ ଓ ଶାନ୍ତିକାମୀ ପ୍ରତ୍ୟେକ କର୍ମଚାରୀ ଧୈର୍ଯ୍ୟ ହରାଇ ବସିଲେ । ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ ଜୀବନଯାତ୍ରା ଆଉ ସମ୍ଭବ ହେଉ-ନାହିଁ, ଅବସ୍ଥା ଅସମ୍ଭାଳ ହେଲା । ହାଣ୍ଡି ଚୂଲି ଶେଷକୁ ମାଙ୍କଡ଼ ଚଢ଼ି ମାରିଲା । ରୋଗ ବାଧକାରେ ଔଷଧ ପାଣି ଟୋପାଏ ଦେବାକୁ ହାତରେ ପଇସା ନାହିଁ । ଚତୁର୍ଥଶ୍ରେଣୀ କର୍ମଚାରୀଗଣ ମାଳ ମାଳ, ଦଳ ଦଳ ହୋଇ ଶୁଖିଲା ମୁହଁ, ଶୁଖିଲା ଓଠରେ ଅନୁକମ୍ପା-ପ୍ରାର୍ଥୀ ଭଳି ଦାନ୍ତ ନିକୁଟି ବୁଲିଲେ । ଦଣ୍ଡକରେ ମୀନ ପ୍ରାଣ ! କଙ୍କାଳପୂର୍ଣ୍ଣ ଜୀବନ । ପ୍ରକୃତ ସତ୍ୟକୁ ହୃଦୟଙ୍ଗମ କରିବା ପାଇଁ ଏଣିକି ଅଧିକ ସମୟ ଲାଗିଲା ନାହିଁ । ସେମା-ନଙ୍କର ନିଷ୍ପ୍ରଭ ଆଖି ଗୁଡ଼ିକ ଠଉରି କରିନେଲା ଯେ ଯାହାଙ୍କର ଗଣ୍ଡାଏ ଦରମା ଦେବାର ଅଧିକାର ନାହିଁ, ସେ କୁଆଡ଼ୁ ଅଧ୍ୟକ୍ଷ ପଦବାଚ୍ୟ ହୋଇ ପାରିବେ ? କେବଳ ଫାଉମରୀ ମାମୁଲିକ ଲୋକଟାଏ । ଭୁଲି ବେକାରିଆ କାରବାର ।

ଚନ୍ଦ୍ରଚୂଡ଼ଙ୍କର ଚକ୍ରାନ୍ତର ଚକ ସତେ ଯିମିତି ଓଲଟା ଘୂରିଲା । ଘଟଣାର ଘଟା ପ୍ରକଟ ହେଲା । ପିଠି ଉପରୁ ମିଛ ବାଦର ଖୋଲଟା ଆପେ ଆପେ ଖସି ପଡ଼ିଲା । କର୍ମ-ଚାରୀମାନେ ଐକ୍ୟବଦ୍ଧ ହୋଇ ନିଜର ଦାବୀ ଉପସ୍ଥାପନ ପାଇଁ ସଂକଳ୍ପବଦ୍ଧ ହେଲେ । ସେହି ଅନୁସାରେ ସେକ୍ରେଟାରୀ ଓ ମନ୍ତ୍ରୀ ମହୋଦୟଙ୍କ ଦ୍ୱାରସ୍ଥ ହେବା ପାଇଁ ଗୋଡ଼ କାଢ଼ିଲେ । ଆବଶ୍ୟକ ହେଲେ ମହାମାନ୍ୟ ରାଜ୍ୟପାଳଙ୍କ ପର୍ଯ୍ୟନ୍ତ ଯିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । ନିଜର ବଳର ବୁଦ୍ଧି ପ୍ରୟୋଗ କରି କର୍ତ୍ତବ୍ୟ ଓ ସିଦ୍ଧାନ୍ତର ଚୂଡ଼ାନ୍ତ ସୋପା-ନରେ ଉପନୀତ ହେବା ପାଇଁ ଅଭାବ ଓ ଅସୁବିଧା ଗୁଡ଼ିକ ହିଁ ରୋମାଞ୍ଚକର ଉନ୍ମାଦନା ଓ ପ୍ରେରଣା ଯୋଗାଇଲା । ଉତ୍ସାହ ଉଚ୍ଛୁଳିଲା ।

ଯେଉଁ ଅଖ୍ୟାତ-ଅବଜ୍ଞାତ ଯୁବକ କେତେଜଣ ସରକାରୀ ଚାକିରି ଆଶାରେ ହଜାର ହଜାର ଟଙ୍କା ସ୍ୱତଃ ପ୍ରବୃତ୍ତ ହୋଇ ଚନ୍ଦ୍ରଚୂଡ଼ ବୈରାଗଞ୍ଜନଙ୍କ ହାତକୁ ଟେକ

ଦେଇଥିଲେ, ଯେଉଁମାନେ ତାହାଙ୍କ ପୃଷ୍ଠପଟରେ ଘୂରି ବୁଲୁଥିଲେ, ଯେଉଁ କର୍ମଚାରୀମାନେ ଯେକୌଣସି ଉପାୟରେ ସଦ୍ୟ ପ୍ରମୋଶନ ପାଇବା ଆଶାରେ ନଜର ଭେଟମାନ ବନ୍ଧା ପକାଇ କମ୍ବା ସ୍ତ୍ରୀର ଅଳଂକାରପତ୍ର ବନ୍ଧକୀ କରି ଆବଶ୍ୟକୀୟ ମାମୁଲ ପଇଠ କରି ଦେଇ-ଥିଲେ, ସେମାନେ କିଂକର୍ତ୍ତବ୍ୟ ମନେକଲେ; ବ୍ୟସ୍ତ ଓ ବିବ୍ରତ ହୋଇ ପଡ଼ିଲେ । ଭବିଷ୍ୟତ ଅନିଶ୍ଚିତ, ଅକଳ୍ପିତ ଅନ୍ଧକାରରେ ମୂର୍ତ୍ତି । ଉଜ୍ଜ୍ୱଳସ୍ୱପ୍ନର ରେଖା ଭଳି ଦ୍ରୁତ ଅବାସ୍ତବ । ମୁଣ୍ଡ ଚକ୍କର ଖାଇବାକୁ ଲାଗିଲା । ଏତେଗୁଡ଼ାଏ ଟଙ୍କା ସେମାନେ କିଭଳି ଫେରି ପାଇବେ, ସେଥିପାଇଁ ତଣ୍ଡିଚିପା, ଗଣ୍ଠିକଟା ଚନ୍ଦ୍ରଚୂଡ଼ଙ୍କ ସହିତ ଆଲୋଚନା କରିବାକୁ ବାହାରିଲେ । ସୁବିଧା ହେଲେ ଭଲକରି ପଦେ ଅଧେ ଶୁଣାଇ ଦେବା ପାଇଁ ଦମ୍ଭ ବାନ୍ଧିଲେ ।

ସବୁ କଥା ଗୁଡ଼ାକ ଚନ୍ଦ୍ରଚୂଡ଼ ବାଏଁ ବାଏଁ ଉଡ଼ାଇ ଦେବାକୁ ବସିଲେ । ଦେହ ହାତ ଉପର ଭିଡ଼ ମୋଡ଼ି ନେଇ ଗଳ୍ପ-ଧାପ୍ପାଗଲାରେ ଏକ ମିଥ୍ୟାଚାର ନାଟକୀୟ ଢଙ୍ଗରେ ଥୋଇବାକୁ ଲାଗିଲେ । ତାହାର ସାର କଥା ହେଲା ଯେ, 'ସେ ନିଶ୍ଚିତ ରୂପେ ଅଧକ୍ଷ ହେଉଛନ୍ତି । ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ଏକ ନୂତନ ଇତିହାସ ସୃଷ୍ଟି କରୁଛନ୍ତି । ତାହାଙ୍କର ଚରିତ୍ର ଓ ପ୍ରତିଷ୍ଠାକୁ ଡିରେକ୍ଟର ଓ ଡେପୁଟି ସେକ୍ରେଟାରୀ ପସନ୍ଦ କରନ୍ତି । ପ୍ରଚୁର ବୁଦ୍ଧି ଖର୍ଚ୍ଚ କରି ସରକାରୀ ଦପ୍ତରରେ ତାଙ୍କ ପକ୍ଷରୁ ଯେଉଁ ଫାଇଲ ଖୋଲା ହୋଇଛି, ସେହି ଶ୍ରମାର୍ଜିତ ଫାଇଲକୁ ବନ୍ଦ କରିବା ପାଇଁ କାହାର ଶକ୍ତି ନାହିଁ । କେତେକ ନ୍ୟସ୍ତସ୍ୱାର୍ଥୀ କର୍ମଚାରୀ ବେଳେବେଳେ ଅବାଞ୍ଛିତ ପରିସ୍ଥିତି ସୃଷ୍ଟି କରୁଛନ୍ତି, କିନ୍ତୁ କାହିଁ ସେମାନଙ୍କର ତାକତ୍ ? ଛେଳି ଗୋଡ଼ରେ କଣ ଧାନ ମଳା ହେଉଛି ନା । ହେବ ? ସେମାନେ ଆପଦ ବିପଦରେ ମୁଅ ମୁହଁରେ ପଥର ଖଣ୍ଡେ ଭଳି ଖସିଯିବେ । ଯେଉଁ କରିତ୍‌କର୍ମା ଅଫିସର ମାମୁଲ ନେଇ ଫାଇଲ ଗଢ଼ିଛନ୍ତି, ଉପରକୁ ଉଠାଇ-ଛନ୍ତି, ସେମାନଙ୍କର ସାଧନାରେ ବ୍ୟତିକ୍ରମ ନାହିଁ କି ହୋଇ ପାରିବ ନାହିଁ । ତମେ ସମସ୍ତେ ଧୈର୍ଯ୍ୟର ସହିତ ଅପେକ୍ଷା କର ଓ ପରିସ୍ଥିତି କ'ଣ ହେଉଛି ଲକ୍ଷ୍ୟକର । କେଉଁ ପାଣି କେଉଁଆଡ଼େ ଯାଉଛି ବଳେ ଦେଖିବାକୁ ପାଇବ ।'

ଏ ଧାତର ବୟାନ ଶୁଣି ସେମାନେ ବହୁ ଦମ୍ଭ ଓ ସାହସ ପାଇଲେ । କଥା-ଗୁଡ଼ାକ ମନେହେଲା ଲୋଭନୀୟ ଓ ଚିତ୍ତାକର୍ଷକ । ଅର୍ଥ ବିନିଯୋଗ କରି ସ୍ୱାର୍ଥସିଦ୍ଧି ପାଇଁ ଆଗେଇବା ତ ଜଣକର ସମସ୍ୟା ନୁହେଁ, ବହୁ ଲୋକଙ୍କ ପକ୍ଷରେ ଜୀବନ ମରଣର ସମସ୍ୟା । ଯେଉଁ ଅଫିସରମାନେ ଭାଗ ବାଣ୍ଟି ନେଇଛନ୍ତି, ସେମାନେ ଭଣ୍ଡ କମ୍ବା ଧପ୍‌ପାବାଜ ନୁହନ୍ତି । ସେମାନେ ହେଲେ ଶାସନ କୁଶଳୀ କର୍ମଚାରୀ । କଳାକୁ ଧଳା ଓ ଧଳାକୁ କଳା କରିବାରେ ଓସ୍ତାଦ୍ । ସେମାନେ କିଛିନା କିଛି ଗୋଟାଏ ଫନ୍ଦି ଫିକର କରିବେ ବୋଲି ହୃଦ୍‌ବୋଧ ହେଲା ।

କର୍ମଚାରୀ ମାନଙ୍କର ମର୍ମଦାହୀ କାହାଣୀ ଶୁଣି ଉଦାର-ସହାନୁଭୂତିଶୀଳ, ଦୟାର୍ଦ୍ରଚିତ୍ତ ମାନ୍ୟବର ମନ୍ତ୍ରୀ ବିଚଳିତ ହୋଇ ପଡ଼ିଲେ । ସେକ୍ରେଟାରୀଏଟ୍‌ର ଫାଇଲ

ଗଡାରେ ଅଭୂତପୂର୍ବ କମ୍ପନ ସୃଷ୍ଟି ହେଲ । କି ବଭତ୍ସ ବସମ୍ବାଦ । ଗୋଟାଏ ଅନୁଷ୍ଠାନର କର୍ମଚାରୀମାନେ ଯେତେବେଳେ ଦିନ ଦିନ ମାସ ଧରି ଦରମା ପାଉନାହାନ୍ତି, ଛାତ୍ରମାନେ ବୃତ୍ତି ପାଉନାହାନ୍ତି, ଅନ୍ୟାନ୍ୟ ଆନୁସଙ୍ଗିକ ଖର୍ଚ୍ଚ ମଧ୍ୟ ହୋଇ ପାରୁନାହିଁ, ସେତେବେଳେ ଏ ଦେଶରେ ସରକାର ଅଛି ବୋଲି କିଏ ବିଶ୍ୱାସ କରିବ ? ଉଚ୍ଚ ଆଦର୍ଶ ରକ୍ଷା କରି ଶାସନ ଚାଲିଛି ବୋଲି କାହାର ଆସ୍ଥା ଜନ୍ମିବ ? କର୍ମଚାରୀମାନଙ୍କ ନିମନ୍ତେ ମୁଖ୍ୟତଃ ଡିରେକ୍ଟର କିଛି କରିପାରି ନ ଥିବାରୁ ସେକ୍ରେଟାରୀ ସ୍ୱୟଂ ଚମକି ପଡ଼ିଲେ । ସରକାରୀ ନୀତି ନିର୍ଦ୍ଦେଶିତ ହୋଇଥାଏ କେନ୍ଦ୍ର ଚନ୍ଦ୍ରାଧାର ସାହାଯ୍ୟରେ—କୌଣସି ପ୍ରକାର ନେତିବାଚକ, ସ୍ତୁତିବାଚକ କିମ୍ବା ଚଣ୍ଡ ମନୋବୃତ୍ତି ଦ୍ୱାରା ନୁହେଁ । ଚରମ ସିଦ୍ଧାନ୍ତ ପାଇଁ ସେକ୍ରେଟାରୀଏଟ୍‌ରୁ ଧନୀ ଜଣେ ବିଶ୍ୱସ୍ତ ଓ ଅନୁଗତ ଅଫିସର ଆସି ପହଞ୍ଚିଲେ ଅଗ୍ନିଜନକ ସ୍ଥବରେ ।

ଆଗନ୍ତୁକ ଦେଖିଲେ ଅଫିସ୍‌ର ନଥିପତ୍ର ଥିବା ପ୍ରତ୍ୟେକ ଆଲମାରୀରେ ଦୁଇଟା ଲେଖାଁ ତାଲା ଝୁଲୁଛି । ଯେଉଁଠାରେ ସରକାର ଓ ଶାସନ ସମ୍ପୃକ୍ତ, ସେହି ଅଫିସ ଦୁଆରେ ମଧ୍ୟ ଦୁଇଟା ତାଲା । ସମସ୍ତ ପ୍ରକାର ପ୍ରଚଳିତ ବିଧି ବ୍ୟବସ୍ଥାର ଓଲଟ ପାଲଟ ଘଟିଛି । ଚାରିଆଡ଼େ ଆତଙ୍କ ଓ ଅଭିଶାପର ରାଜୁତି । ଖବର ନେବାରୁ ଜଣାଗଲା ଯେ, ଚନ୍ଦ୍ରଚୂଡ଼ ବୈଶ୍ୟରଞ୍ଜନଙ୍କର ଏହା ହେଉଛି ସ୍ୱତନ୍ତ୍ର ବ୍ୟବସ୍ଥା । କାଳେ ଅଧ୍ୟକ୍ଷ ବଳପୂର୍ବକ ଅଫିସ ଦଖଲ କରି ନିଜର ଅଧିକାର ସାବ୍ୟସ୍ତ କରିବେ, ସେଥିପାଇଁ ସେ ଏହିଭଳି ବ୍ୟବସ୍ଥା ଚାଲୁ କରି ସମସ୍ତ ଚାବିକାଠି ନିଜ ହାତ ମୁଠାରେ ରଖିଛନ୍ତି । ଅତି ଜରୁରୀ ଚିଠିମାନଙ୍କର ପ୍ରତ୍ୟେକ ପୃଷ୍ଠା ମଧ୍ୟ ଚଳ ଫାଇଲ ପରି ଉଠାଇ ନେଇ ନିଜ ବାସଗୃହରେ ସାଇତିଛନ୍ତି । ଜଣ ଜଣ କରି ଛାତ୍ରଙ୍କୁ ଘରକୁ ଡାକନେଇ ତମ୍ବା, ତୁଳସୀ, ରୁଦ୍ରାକ୍ଷମାଳା, ଗୁବାକେଶ, ଗୁରୁଚର୍ମ ଛୁଆଁଇ, ଅଗ୍ନି ସାକ୍ଷୀରଖି ଶପଥ କରାଇ ନେଇଛନ୍ତି । ସେମାନେ ଭୟ କମ୍ପିତ ଅନ୍ତରରେ ନାନାପ୍ରକାର ପ୍ରରୋଚନାର ଦୂଷିତ ପରିବେଶ ମଧ୍ୟରେ ଦିନ କଟାଉଛନ୍ତି କହିଲେ ଚଳେ ।

ଆଗନ୍ତୁକଙ୍କ ପରିଚୟ ପାଇ ଗର୍ବୀତ ଓ ଉଦ୍ଧତ ଚନ୍ଦ୍ରଚୂଡ଼ ବୈଶ୍ୟରଞ୍ଜନ ବିସ୍ମୁ କାମୁଡ଼ିଲା ପରି ଶିହରି ଉଠିଲେ । ତାଙ୍କର ବିବ୍ରତ ଆତ୍ମା ଭସ୍ମୀଭୂତ ହୋଇ ପଡ଼ିଲା । କାନ ଦୁଇଟି ଲାଲ ପଡ଼ିଗଲା । ଛାତି ଭିତରେ ଅତଡ଼ା ଖସି ପଡ଼ିଲା । ସେ କପାଳର ବିନ୍ଦୁ ବିନ୍ଦୁ ଝାଳକୁ ରୁମାଲରେ ପୋଛି ପକାଇଲେ । ସେଥିରେ ହୁଏତ ପୋଛି ହୋଇଗଲା ଦୁର୍ଦମନୀୟ ଲୋଭର ତୀବ୍ର ଆକର୍ଷଣ । ତାହାଙ୍କୁ ଏକ ପ୍ରକାର ବାଧ୍ୟ କରିବ କ୍ଷମତା ହସ୍ତାନ୍ତର କରାଗଲା । ଯେଉଁମାନେ ଏହି ଜବରଦସ୍ତ ଅଧ୍ୟକ୍ଷଙ୍କୁ ଯଶ ଓ ପ୍ରତିପତ୍ତିର ଉତ୍ତୁଙ୍ଗ ଶିଖରକୁ ଉଠାଇଥିଲେ, ସେହିମାନଙ୍କର କ୍ଷମତାପ୍ରାପ୍ତ ସାଧାରଣ କର୍ମଚାରୀ ଜଣେ ଆସି ତାଙ୍କୁ ତଳକୁ ଗଡ଼ାଇଦେଲେ । ମଦଓଡ଼ା, କାମ ସରିଲେ ଗଡ଼ଗଡ଼ା । ମୁହୂର୍ତ୍ତେ ପୁଞ୍ଚା ସେ ତିଷ୍ଠି ପାରିଲେ ନାହିଁ । ଯେଉଁ କୁଟବୁଦ୍ଧି ଓ ସ୍ୱାର୍ଥସିଦ୍ଧିର ଅଦ୍ଭୁତ ସମନ୍ୱୟରେ ଅପନ୍ତରିଆ

ବା ଅଧା ମଇଁଷିଆ ଭଳି ଶାସନ ଗ୍ଭଲୁଥିଲା, ଗ୍ରାବଣର ବିଜୁଳି ଚମକ ଭଳି ତାର ଅବସାନ ଘଟିଲା । ଏହି କଥା କେହି ବୁଝନ୍ତି ବା ନ ବୁଝନ୍ତୁ, ବୁଝିଲା ଅନୁଷ୍ଠାନର ଇଟାମାଟି, କାଠ ଟେବୁଲ, ଚୌକି, ବେଞ୍ଚ, ଆଲମାରି, ଦୁଆର, କଲମ, ଫାଇଲ ପତ୍ର । 'ଚକ୍ରବତ୍ ପରିବର୍ତ୍ତିତେ ଜଗତ ।'

ଆଗନ୍ତୁକ କର୍ମଗ୍ଭରୀ ତତ୍‌କ୍ଷଣାତ୍ ଅଧକ୍ଷ ଚନ୍ଦ୍ରଚୂଡ଼ଙ୍କୁ ଅନୁରୋଧ କରିଗଲେ, ପ୍ରଥମେ କର୍ମଗ୍ଭରୀମାନଙ୍କ ଦରମା ଆଣି ବଣ୍ଟାଇ ଦେବା ପାଇଁ । ଅକ୍ଳାନ୍ତ ପରିଶ୍ରମ କରି ସେଦିନ ଅଧ୍ୟକ୍ଷ ଅନ୍ତତଃ କୋଡ଼ିଏଟି ବିଲ୍ ଟ୍ରେଜେରୀକୁ ପଠାଇ ସ୍ୱସ୍ତିରେ ନିଃଶ୍ୱାସ ମାରିଲେ ।

ଯେଉଁମାନେ ମହାମାନ୍ୟ ମନ୍ତ୍ରୀ ମହୋଦୟଙ୍କ ପର୍ଯ୍ୟନ୍ତ ଭୟ ଦେଖାଇ କହିଥିଲେ ଯେ ଚନ୍ଦ୍ରଚୂଡ଼ଙ୍କର ପ୍ରାଧାନ୍ୟ ଦୃଢ଼ମୂଳ, ତାହାଙ୍କୁ କ୍ଷମତାଚ୍ୟୁତ କରିଗଲେ ଗୁରୁ ବିକ୍ଷୋଭ ଉତ୍ପନ୍ନ ହେବ, କର୍ମଗ୍ଭରୀମାନେ ବିଦ୍ରୋହୀ ହେବେ ଓ ଜନସାଧାରଣ ଆନ୍ଦୋଳନ କରିବେ; ସେମାନେ ସ୍ପଷ୍ଟ ଦେଖି ପାରିଲେ ଯେ କୌଣସି ପ୍ରକାର ବିକ୍ଷୁବ୍‌ଧତା ଦେଖାଗଲା ନାହିଁ । ପ୍ରକୃତ ଅଧ୍ୟକ୍ଷଙ୍କର ପ୍ରଖର ବ୍ୟକ୍ତିତ୍ୱ, ଅକଳୁଷ ଚରିତ୍ର, ଉଦାର ଆଦର୍ଶବାଦ, ଅନନ୍ୟ ସାଧୁତା ଓ ସ୍ୱାର୍ଥ ଲେଶହୀନ କର୍ମକୁଶଳତାର ପ୍ରଭାବ ଖର୍ବ ହୋଇ ପାରି ନାହିଁ । ସ୍ୱୈରତନ୍ତ୍ରର ସାଧାରଣ ପ୍ରଭାବ ସେଭଳି ବ୍ୟକ୍ତିତ୍ୱକୁ ମଳିନ କରି ପାରିନାହିଁ । ନଈବଢ଼ି ହେଲେ ଯେଉଁପରି ଓହରି ଗୁଣ୍ଡି ଫେଣ ସହିତ ଭାସି ଆସି ଜଞ୍ଜାଳ ସୃଷ୍ଟି କରିଥାଏ, ସେହିପରି ପାରିପାର୍ଶ୍ୱିକ ଆନୁକୂଲ୍ୟ, ଘଟଣା ଚକ୍ରର ସୁବିଧା ଓ ରାଜଶକ୍ତିର ଗୂଢ଼ ମଣ୍ଡଳକୁ ସମ୍ବଳ କରି ଚନ୍ଦ୍ରଚୂଡ଼ ଅଯଥା ଗୁଡ଼ାଏ ଜଞ୍ଜାଳ ସୃଷ୍ଟି କରିଥିଲେ ।

ଏହି ଘଟଣା ଫୁଲବାଣୀ ଭଳି ଗ୍ରେଟ ସହରଟିରେ ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଆଲୋଡ଼ନ ସୃଷ୍ଟି କରିଦେଲା । ତା'ର ପରଦିନଠାରୁ ସେହି ସହରରେ କେହି ଅତି ମାରାତ୍ମକ ଭଣ୍ଡ ଚନ୍ଦ୍ରଚୂଡ଼ ବୈଶ୍ୟ ରାଉତନଙ୍କୁ ଦେଖି ନାହାନ୍ତି । ସେ ବେକାହତ ପଶୁ ଭଳି ପଳାୟନ କରି କେଉଁଠି ଆତ୍ମଗୋପନ କରିଛନ୍ତି, ତାହାର ସଙ୍କେତ ବା ସୂଚନା ସୁଦ୍ଧା କାହାକୁ ଜଣାଇ ନାହାନ୍ତି । ପ୍ରତ୍ୟେକ ମାସରେ କେବଳ ଡାକ ଯୋଗେ ନିଜର ଛୁଟି ଦରଖାସ୍ତ ପଠାଇ ଦେଉଛନ୍ତି ଅଧ୍ୟକ୍ଷଙ୍କ ଦପ୍ତରକୁ ।

ଯେଉଁମାନେ ଆଶା ଭରସାର ଅଂଶୁମାଳୀ ରୂପେ ତାଙ୍କୁ ମୁଣ୍ଡରେ ମୁଣ୍ଡାଇ ବୁଲୁଥିଲେ, ସେମାନେ ଅବ୍ୟକ୍ତ ସ୍ନାୟୁ ପୀଡ଼ାରେ ହା' ହୁତାଶ କରୁଛନ୍ତି । ଅଦ୍ଭୁତ ରୂଢ଼ ହସ୍ତକ୍ଷେପ ଫଳରେ ଉତ୍ତମ ସାହୁ ଡିରେକ୍ଟର ପଦରୁ ଅପସୃତ ହେଲା ପରେ ଯେଉଁ ଅଂଶାର କ୍ଷୀଣତମ ସୂତା ଖିଅଟି ଯୋଡ଼ି ହୋଇ ରହିଥିଲା, ତାହା ଛିଡ଼ି ଯାଇଛି ।........

(୧୯୮୯, ଏପ୍ରିଲ ସଂଖ୍ୟା ସମାରୋହରେ ପ୍ରକାଶିତ)

—*—

# ଫେଷ୍ଟ

ଅନେକ ପିଲାଙ୍କ ସମ୍ବନ୍ଧରେ ଅନେକ କଥା ଶୁଣାଯାଏ । ସବୁକଥା ମନେ ରଖିହୁଏ ନାହିଁ, ମନେ ରଖିବା ମଧ୍ୟ ସମ୍ଭବ ନୁହେଁ । ମନେ ରହେ ସେହିଭଳି ସ୍ମରଣୀୟ କଥା, ଯେଉଁମାନଙ୍କ ସହିତ ସ୍ଥଳ ବିଶେଷରେ ପରିଚୟ ଘଟେ ଓ ଘନିଷ୍ଠ ସମ୍ପର୍କ ସ୍ଥାପିତ ହୁଏ । ତାହା କାହାଣୀ ଭଳି ଅପରିଚିତ ଆବରଣ ମଧ୍ୟରୁ କଠୋର ସତ୍ୟ ଆଡ଼କୁ ଟାଣି ନେଇଯାଏ । ମନ ଜଗତରେ ଝରକା ଓ ଦରଜାଗୁଡ଼ିକ ଆପେ ଆପେ ହୋଇଯାଏ ଉନ୍ମୁକ୍ତ । ଶେଷରେ ତାହା ହିଁ ହୋଇଉଠେ ମର୍ମାଗତ । ସେହିଭଳି ପିଲାଙ୍କ କାହାଣୀ ମୋ ମତରେ ସାହିତ୍ୟରେ ସ୍ଥାନ ପାଇବା ଉଚିତ । ସେହିମାନେ ହିଁ ଦିନେ ବୋଲାଇବେ ଆମ ପରମ୍ପରାର ସଂସ୍କୃତିର ପ୍ରତୀକ !

କଟକରେ ଥିବା ସମୟରେ ଶ୍ରୀ ଚଣ୍ଡୀଙ୍କ ସାନ୍ଧ୍ୟଦର୍ଶନକୁ ମୁଁ ପ୍ରାୟ ଯାଉଥାଏ । ଧର୍ମ କର୍ମରେ ମନ ବଳାଇବାର ସ୍ପୃହା ଯେତେ ନ ଥାଏ, ସେହି ଅଞ୍ଚଳରେ ବୁଲିଚାଲି କରି ସାନ୍ଧ୍ୟ ପରିବେଶକୁ କିଞ୍ଚିତ ଉପଭୋଗ କରିବାର ଲୋଭ ଥାଏ ତାହାଠାରୁ ଅଧିକ । ସେଦିନ ଶ୍ରୀଚଣ୍ଡୀଙ୍କ ଦର୍ଶନ ଶେଷ କରି ମନ୍ଦିର ସାମ୍ନାରେ କିଛି ସମୟ ଆଡ଼ ହୋଇ ଠିଆ ହୋଇଥାଏ । ଦେଖୁଥାଏ ଯାଦୁକରର ଟୋପିରୁ ବିଭିନ୍ନ ପ୍ରକାର ଜିନିଷ ବାହାରିଲା ଭଳି ମନ୍ଦିର ଭିତରୁ ବିଭିନ୍ନ ଧରଣର ମଣିଷ ବାହାରି ରାଜପଥ ଉପରେ ମିଳାଇ ଯାଉଥାନ୍ତି । କିଏ ଗେଡ଼ା, କିଏ ମୋଟା, କିଏ ଡେଙ୍ଗା, କିଏ ରୋଗା, କିଏ ମୁଖଦନ୍ତୀ, କିଏ କୁଦନ୍ତୀ, କିଏ ଅଲଥଲ ଅନ୍ତ୍ରଲ ପେଟା, କିଏ ଚକଚକ ଚନ୍ଦା ମୁଣ୍ଡିଆ, କିଏ ଡୁଳୁଡୁଳୁ, କିଏ ଟୁଳୁଟୁଳୁ, କିଏ ବୃଦ୍ଧ, କିଏ ବୁଧ, କିଏ ଖୁରୁ କେଶୀ, କିଏ ମୁଦୁହାସୀ, କିଏ ତଟୁ ଘୋଡ଼ା, କିଏ ଚଷମା ଘୋଡ଼ା, ଏହିପରି ଭଲକ ଭଲ ମଣିଷ । ଅଥଚ କାହାରି ପ୍ରତି କାହାର ଲକ୍ଷ୍ୟ ନାହିଁ । କେହି କାହାର ସମସ୍ୟା ସହିତ ଜଡ଼ିତ ନୁହନ୍ତି । ସମସ୍ତେ ନିଶ୍ଚିନ୍ତ, ସମସ୍ତେ ଚଞ୍ଚଳ । ସମସ୍ତଙ୍କ ମସ୍ତକରେ ମହାମାୟାଙ୍କର ଅଯାଚିତ ଆଶୀର୍ବାଦ ।

କିଛି ସମୟ ପରେ ଏହି ପରିବେଶ ଓ ପରିବେଷ୍ଟନୀ ଚଟା ଲାଗିବାରୁ ଆଉ ସେଥିପ୍ରତି ଦୃକ୍‌ପାତ ନ କରି ଲମ୍ବପାଦ ପକାଇ କାଜିକାଛକ ଆଡ଼କୁ ଆଗେଇଲି । ଦିଅଁ ଦର୍ଶନ

ହେଲା, ଏଥର ନୈମିତ୍ତିକ ସାନ୍ଧ୍ୟ ସମୀରଣ ସେବନରେ ତଲାର୍ଜ ଆପତ୍ତି ନାହିଁ । ଏହିପରି ସମୟରେ ପଛକୁ ଚାହିଁ ଦେଖିଲି—ଦୁଇଟି ପିଲା ମୋର ପିଚ୍ଛା ଧରିଛନ୍ତି, ଗୋଟିଏ ପାଞ୍ଚ କି ଛଅ ବର୍ଷର ପୁଅ, ଅନ୍ୟଟି ଦଶ, ବାର ବର୍ଷର ଝିଅ । ଗଙ୍ଗ ନିପଣ୍ଡ ଜଳା । ସେଥିରେ ପୁଣି ଧୂଳି ମଳିର ପ୍ରଲେପ ଦେହମୟ । ସତେ କି କ୍ଷୁଧିତତା ଅତ୍ୟନ୍ତ ସ୍ପଷ୍ଟ । ମୁଁ ଚାହିଁବା ମାତ୍ରେ ଝିଅଟି କହି ଉଠିଲା—"ବାବୁ, ଦଶପଇସାଟିଏ.......।"

ପୁଅଟି ଅବିକଳ ତା କଥାର ପୁନରାବୃତ୍ତି କଲା ଭଳି କହିଲା । ଶିଶୁକଣ୍ଠର ଆତଙ୍କ ଆଶ୍ରିତ ଅନୁନୟ । ଟିକେ ବିରକ୍ତି ପ୍ରକାଶ କରି ଆଗକୁ ମାଡ଼ି ଚାଲିଲି । କଟକ କିମ୍ବା ଭୁବନେଶ୍ୱର ରାସ୍ତାରେ ମଳିନ, ଦୁର୍ଗନ୍ଧ, ଅପରିଚ୍ଛନ୍ନ ପିଲାମାନଙ୍କର ବିଭତ୍ସ ସଂଗ୍ରାମ ଦେଖି ଦେଖି ସାଧାରଣ ଭାବରେ ମୋ ମନର ସମସ୍ତ ପ୍ରତିକ୍ରିୟା ପ୍ରାୟ ଲୋପ ପାଇ ଆସିଛି । ଦେଶର ବିଭିନ୍ନ ରାଜ୍ୟରୁ, ବିଭିନ୍ନ ଅଞ୍ଚଳରୁ ବହୁ ଶିଶୁ ସହରକୁ ଦୈନିକ ଆମଦାନୀ ହେଉଛନ୍ତି । କିଏ ଚାହା ଦୋକାନରେ କପ୍‌ପ୍ଲେଟ ଧୋଉଛି, ଆଉ କିଏ କାରଖାନାରେ ବିଡ଼ି ବାନ୍ଧୁଛି, କିଏ ରାସ୍ତାକଡ଼ରୁ ଭଙ୍ଗା ଟିଣ, କାଚବୋତଲ, ପ୍ଲାଷ୍ଟିକ୍ ଜିନିଷ, ଛିଣ୍ଡା କାଗଜ, ଚିଡ଼ିକନା ଆଦି ସଂଗ୍ରହ କରୁଛି, କିଏ ଭିକ ମାଗୁଛି । କିଛିଟା ବଡ଼ ହୋଇଗଲେ ବସ୍‌ଷ୍ଟାଣ୍ଡରେ ପକେଟମାରୁ ଦଳରେ ସାମିଲ ହୋଇଯାଉଛି କିମ୍ବା ସିନେମା-ଟିକେଟରେ ହାତ ସଫେଇ କରୁଛି । ଝିଅ ପିଲାଟିଏ ହେଲେ କଥା ନାହିଁ । କେତେ ବଦନାମ, କେତେ ବିପଦ, କେତେ ଗ୍ଳାନି ଦୁଖୁଦୁଖୁ, କେତେ ଅଶାନ୍ତିର ସୀମାନାହିଁ । ଗୁଣ୍ଡା, ମଦ୍ୟପ, ଲମ୍ପଟ, ଦଲାଲ, ଛତରା, ଚୋରମାଲ ବିକୃତକାମୀମାନଙ୍କ କାମନା ଚରିତାର୍ଥର ଉପଜୀବ୍ୟ ହେଉଛନ୍ତି । ଏମାନଙ୍କ ନିରାପତ୍ତାର କୌଣସି ପ୍ରକାର ବନ୍ଦୋବସ୍ତ ନାହିଁ । ମନୋଯୋଗ ଓ ସହାନୁଭୂତିର ସହିତ ଏମାନଙ୍କ କଥା କେହି ଚିନ୍ତା କରନ୍ତି ନାହିଁ । ଘୃଣା, ଅବିଶ୍ୱାସ, ଅତ୍ୟାଚାର, ଅଶାନ୍ତି ମଧ୍ୟରେ ଏମାନେ ଦୈନିକ ନିଷ୍ପେଷିତ । ଅଥଚ ମହାନଗରୀ ଗୁଡ଼ିକ ଅଶାନ୍ତ, କୋଳାହଳ ଓ ସଂଗ୍ରାମ ମଧ୍ୟରେ ଦିନକୁ ଦିନ ଗଗନ ଚୁମ୍ବିତ ସୌଧ ଶୋଭିତ ହୋଇ ଉପରକୁ ଫୁଲି ଫୁଲି; ଉଠୁଛି ଅବିକଳ ବିଷାକ୍ତ-ପୂଜରେ ଭର୍ତ୍ତି ବ୍ରଣ ଭଳି । ପ୍ରାଣରେ, ମର୍ମରେ, ଚିନ୍ତାରେ ଓ ଚେତନାରେ କେହି ହେଲେ ଏହି ବାଳୁତ ମାନଙ୍କର ସମସ୍ୟାକୁ ବିଚାରକୁ ଆଣି ସମାଧାନର ସୂତ୍ର ଯୋଗାଇ ଦେଉନାହାନ୍ତି । ଚାଳକ, ପାଳକ, ରକ୍ଷକ, ଭକ୍ଷକ, ଶାସକ, ଶୋଷକ, ଆଦି ବହୁବିଧ ଭୂମିକାରେ ଦୈନିକ ଅବତୀର୍ଣ୍ଣ ହେଉଥିବା ମନୀଷୀମାନେ ଏଥିପ୍ରତି ଆଦୌ ଦୃଷ୍ଟି ଦିଅନ୍ତି ନାହିଁ । ଏପରି କ୍ଷେତ୍ରରେ ଶସ୍ତା ବଦାନ୍ୟତା ଦେଖାଇ ସେମାନଙ୍କ ହାତରେ ପାଞ୍ଚପଇସାଟିଏ କି ଦଶପଇସାଟିଏ ଗୁଞ୍ଜିଦେଇ ଜୀବନ ସଂଗ୍ରାମର ସ୍ଥୂଳ ଓ ରୁଚି ହୀନ ସନ୍ଧିପତ୍ରରେ ସ୍ୱାକ୍ଷର ଦେବା ଅବସ୍ଥାରେ ମୁଁ ଆପାତତଃ ନ ଥିଲି ।

ତଥାପି ପିଲା ଦୁଇଟି ବାବୁ ବାବୁ କହି ମୋର ପିଛା ଧରି ପ୍ରାୟ ଦୌଡ଼ିବାର ଉପକ୍ରମ କରୁଥାନ୍ତି । ଏହିପରି ଭାବେ ଯେତେବେଳେ ଆସି ଖ୍ରୀଷ୍ଟ କଲେଜ ପାଖାପାଖି

ପହଞ୍ଚିଗଲାକ୍ଷି, ସେତେବେଳେ ଅନୁଭବ କଲି ସେମାନେ ପଛରେ ଦୌଡ଼ି ଦୌଡ଼ି ଅଣନିଶ୍ୱାସୀ ହୋଇ ପଡ଼ିଛନ୍ତି, କିନ୍ତୁ ଆଶା ହରାଇ ନାହାନ୍ତି । ଯେତେ ସମୟ ପର୍ଯ୍ୟନ୍ତ ଶ୍ୱାସକ୍ରିୟା ରହିଛି, ସେତେକ୍ଷଣ ପର୍ଯ୍ୟନ୍ତ ଆଶା ଅଛି । ମନେ ମନେ ଭାବିଲି, ଏମାନେ ନିଶ୍ଚୟ ଯେ କୌଣସି ଭଦ୍ରଲୋକ ପଛରେ ଯୋକଭଳି ଲାଗି ରହୁଛନ୍ତି । ଏହି ଉପାୟଟିକୁ ଜୀବନ ଧାରଣର ପ୍ରଧାନ ସୂତ୍ର ଭାବେ ଗ୍ରହଣ କରି ନେଇଛନ୍ତି ସେମାନେ । ଶ୍ରୀଚଣ୍ଡୀଙ୍କ ମନ୍ଦିର ସାମ୍ନାରେ ବୁଲିବୁଲି ବହୁବ୍ୟକ୍ତିଙ୍କ ହାତ ପତାଇ ନିରାଶ ହେବା ଅପେକ୍ଷା ଜଣଙ୍କର ପଛେ ପଛେ କିଛି ବାଟ ଯାଇ ତାହାକୁ ବିରକ୍ତ କରାଇ କିଛି ପଇସା ପାଇବା ଏକ ଚମତ୍କାର ଫିକର ।

ଗତି ଶିଥିଳ କରି ଫେରି ଚାହିଁଲି । ସେମାନଙ୍କ ମତଗତି ଠଉରାଇବାକୁ ଚେଷ୍ଟାକଲି । ଝାସି ପଡ଼ୁଥିବା ଅତି ମଇଳା ଧୂଳିଧୂସର ଚଡ଼ିପ୍ୟାଣ୍ଟଟିକୁ ଗୋଟିଏ ହାତରେ ପେଟ ପାଖରୁ ମୁଠାଇ ଧରି ପୁଅଟି ପ୍ରାୟ ଦୌଡ଼ିବା ଭଳି ଚାଲିଆସୁଛି । ଆଖିରେ ତାର ପ୍ରଜ୍ଜ୍ୱଳ ବୁଭୁକ୍ଷା ସାଙ୍ଗକୁ ଭୟ ଓ ଆତୁରତା । ତାର ହାତ ମୋର ପଞ୍ଜାବୀ ଧାରକୁ ଛୁଏଁ କି ନ ଛୁଏଁ ଏହିଭଳି ଅବସ୍ଥା । ଅସ୍ପଷ୍ଟ ସ୍ୱରରେ ପାଟିରୁ ବାହାରୁଛି ଶବ୍ଦ—"ବାବୁ, ହେ··· ବା....ବୁ ।" ଝିଅଟି ଚାଲିଛି ପ୍ରାୟ ଡବଲମାର୍ଚ୍ଚ ଢଙ୍ଗରେ । ମଝିରାସ୍ତାରେ ବାଧ୍ୟ ହୋଇ ଠିଆହୋଇ ପଡ଼ିଲି । ତେଜୋଦୀପ୍ତ କଣ୍ଠରେ କହିଲି—"ତୁମମାନଙ୍କୁ କିଛି ଦିଆଯିବନାହିଁ । ତୁମେ ସବୁ ଭଦ୍ରଲୋକଙ୍କୁ ବାଟ ଚଲାଇ ଦେଉନାହଁ, ସେମାନଙ୍କ ପିଛା ଧରି ଅପ୍ରସ୍ତୁତ କରୁଛ ।"

ମୋର ଏ କୃତ୍ରିମ କୋପରେ ସେମାନେ ଆଦୌ ଶଙ୍କି ଗଲେ ନାହିଁ । ବରଂ ଏକ ପ୍ରକାର ବ୍ୟବହାର ପ୍ରଦର୍ଶନ କଲେ, ଯେଉଁଥିରୁ ସହଜରେ ଜାଣି ହୋଇଯିବ ଯେ ଏଭଳି କଥା ବହୁ ପୂର୍ବରୁ ସେମାନଙ୍କ ଦେହସୁହା ହୋଇ ଯାଇଛି । ମୋର ପ୍ରସ୍ତର କଠିନ ମୁହଁଆଡ଼କୁ ଅନାଇ ପୁଅଟି ହସିଦେଲା ଏକ ଅଦ୍ଭୁତ ନିଷ୍ପାପ ହସ । ହଳଦିଆ ଦାନ୍ତ ଗୁଡ଼ାକ ମଧ୍ୟରୁ ଯେପରି ଦୁଇଟା ଗଳି ପଡ଼ି ତାର ବୟସ ସମ୍ବନ୍ଧରେ ସୂଚନା ଦେଉଛି । ପାଟିକୁ କଷ୍ଟିତ ଲାଗିଆସି ଝିଅଟି କେବଳ ଲମ୍ବ ଲମ୍ବ ନିଃଶ୍ୱାସ ଛାଡ଼ୁଥାଏ । ଶୂନ୍ୟ ଦୃଷ୍ଟିରେ ଅନାଇ ରହିଲି କିଛିକ୍ଷଣ ସେମାନଙ୍କ ଆଡ଼କୁ । ତାହା ପରେ ଧୀରେ ଧୀରେ କହିଲି—"ପଇସା ପାଇଲା ପରେ କଣ କରୁଛରେ ?"

—ଖାଇବୁ । ସାହସ ସଂଚୟ କରି ପୁଅଟି ଉତ୍ତର ଦେଲା ।

—ଯେତେ ପଇସା ପାଉଛ, ସବୁ କଣ ଖାଇଦେଉଛ ?

ଏଥର ଝିଅଟି ଗମ୍ଭୀର ବିଷାଦଭରା କଣ୍ଠରେ ପ୍ରକାଶ କଲା—"କେତେ ପଇସା ଆଉ ପାଉଛୁ ବାବୁ ? କେହି ପ୍ରାୟ ଦେଉନାହାନ୍ତି । ଦେଖୁନାହାନ୍ତି କେତେ କୋଡ଼ି

ଆଲୋକ ମନ୍ଦିର ଆଗରେ ପଡ଼ିଛନ୍ତି । ସେମାନେ ପ୍ରାୟ ସେଠି ଘର କରି ଗଲେଣି । ଆମେ ତାଙ୍କ ପାଖରେ ବୁଲି ବୁଲି ମାଗିଲେ ଆମ ଉପରେ ରାଗ କରୁଛନ୍ତି । ଆମକୁ ଗାଳି ଗୁଲଜ ଦେଇ ବାହାର କରି ଦେଉଛନ୍ତି, ଗୋଡ଼ି ପକାଇ ଘଉଡ଼ାଉଛନ୍ତି । ସେଥିପାଇଁ ଆମେ ବାବୁମାନଙ୍କ ପଛରେ ଗୋଡ଼ାଇ ଗୋଡ଼ାଇ ମାଗୁଛୁ । କେତେବେଳେ ମିଳୁଛି, କେତେବେଳେ ମିଳୁ ନାହିଁ ।

ଏକାଥରକେ ଏତେ ଗୁଡ଼ାଏ କଥା କହି ପକାଇ ସେ ପୁଅଟିକୁ ଆଦର କରିବା ଭଙ୍ଗୀରେ ପାଖକୁ ଟାଣିନେଲି । ସ୍ବୀକୃତ ସାମାଜିକ ବୈଷମ୍ୟର ସେପରି ଏମାନେ ମୂର୍ତ୍ତିମାନ ପ୍ରତୀକ, ଏକବିଂଶ ଶତାବ୍ଦୀର ସ୍ୱାଧୀନ ନାଗରିକ ।

ସନ୍ଧ୍ୟାପରେ ଧୀରେ ଧୀରେ ଏ ଅଞ୍ଚଳଟି ପ୍ରାୟ ନିର୍ଜନ ହୋଇଆସେ । ଧୂସର ସରଳରେଖା ପରି ଲମ୍ବି ଯାଇଥିବା ରାସ୍ତାରେ ଆଲୁଅର ବ୍ୟବସ୍ଥା ଅପ୍ରଚୁର । ଆକାଶରେ ଶୁକ୍ଳପକ୍ଷ ତ୍ରୟୋଦଶୀର ଜହ୍ନ ଥିଲେ ମଧ୍ୟ କୁହୁଡ଼ିର ଆବରଣ ଭେଦ କରି ଆସୁଥିବା ଜ୍ୟୋତ୍ସ୍ନାରେ ନିଷ୍ପ୍ରଭ ଉଜ୍ଜ୍ୱଳତା । ସେହି ନିଷ୍ପ୍ରଭ ଅଲୋକ ମଠରେ ଦେଖିଲେ ସେପରି ସେମାନଙ୍କ ଦେହର ସ୍ୱାଭାବିକ ରଙ୍ଗ ବାରି ହେଉନାହିଁ । କେବଳ ଆଖିର ତାରା ଦୁଇଗୋଟି ଚକ୍ ଚକ୍ କରୁଛି ମାତ୍ର । ପ୍ରକୃତ ସ୍ନେହ, ଭଲ ପାଇବା ଭଳି ଉପଯୁକ୍ତ ପରିବେଶରୁ ବଞ୍ଚିତ ହୋଇ ଏହି ଶିଶୁମାନଙ୍କ ମନରେ ପ୍ରାୟ ହୀନମନ୍ୟତା ଜନ୍ମେ । ସେଥିରୁ ସେମାନଙ୍କ ସ୍ୱଭାବ ହୋଇଉଠେ ବିଶୃଙ୍ଖଳ । ଅତି ପିଲାଟି ଦିନରୁ ଅଭାବ, ଅନିଶ୍ଚିତତା, ଉଦବେଗ, ନିରାପତ୍ତା-ବିହୀନ ପରିବେଶ ମଧ୍ୟରେ ବଢ଼ିବା ସଙ୍ଗେ ସଙ୍ଗେ ଆକ୍ରମଣାତ୍ମକ ଓ ବିଦ୍ରୋହୀ ମନୋଭାବ ଗଢ଼ିଉଠିବା ସ୍ୱାଭାବିକ । ଏହି ସନ୍ଧ୍ୟାରେ କୁହୁଡ଼ିଭରା ରାସ୍ତା ଘାଟରେ ବିକ୍ଷିପ୍ତଭାବେ ବୁଲୁଥିବା ଲଙ୍ଗଳା ପିଲାଙ୍କର ଫୁଙ୍ଗୁଳା ଅପସହତ କ୍ରମେ ସମାଜ ଉପରକୁ ଓହ୍ଲାଇ ଆସୁଛି ।

ସେମାନଙ୍କର କାକୁତିପୂର୍ଣ୍ଣ ଆଖିରେ କାତର ପ୍ରାର୍ଥନା । କହିଲି—"ମୋ ସାଙ୍ଗରେ ଆମ ଘରଯାଏ ଯାଇ ପାରିବ ? ସେଠାରେ ତୁମକୁ ଖାଇବାକୁ ଦିଆଯିବ, ପଇସାପତ୍ର ଦିଆଯିବ ନାହିଁ ।"

ଦୁହେଁ ଉତ୍ସାହର ସହିତ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ । ଏଥର ମୁଁ ଚାଲିଲି ଆଗେ ଆଗେ । ସେମାନେ ପରମ ଆଗ୍ରହର ସହିତ ମୋ କଡ଼େ କଡ଼େ ଚାଲୁଥାନ୍ତି । ଭାରତ ଯେତେବେଳେ କୃଷିଭିତ୍ତିକ ସମାଜ ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା, ସେତେ-ବେଳେ ନିଜର ଗୋଷ୍ଠୀଗତ ଜୀବନ ମଧ୍ୟରେ ପୁରୁଷ, ନାରୀ ଓ ଶିଶୁ ଏକସଙ୍ଗେ କାର୍ଯ୍ୟ କରୁଥିଲେ । ଏକତ୍ର ଗୋଟିଏ ଗୋଟିଏ ପରିବାର ଗ୍ରାମୀଣ ସମାଜ ମଧ୍ୟରେ ନିବିଡ଼ ଜୀବନ କଟାଉଥିଲେ । ଶିଳ୍ପର ପ୍ରସାର ସଙ୍ଗେ ସଙ୍ଗେ ସହରୀ ସଭ୍ୟତାର ବ୍ୟାଦିତ ମୁଖ

ଗ୍ରାମର ସରଳ ଆଡ଼ମ୍ବର ବର୍ଜନ ଜୀବନକୁ ଗ୍ରାସ କରିବାକୁ ବସିଲାଣି । ଏହାର ମଧ୍ୟରେ ଗୋବରଲିପା ମାଟି ପିଣ୍ଡାର ସମ୍ଭାର କ୍ରମଶଃ ଲୁପ୍ତପ୍ରାୟ । ପ୍ରକୃତି ସହିତ ଏକାତ୍ମ ହୋଇ ବାସ କରିବାର ରହସ୍ୟ ମନର ବିବର୍ଣ୍ଣ ମାନଚିତ୍ର ମଧ୍ୟରୁ କେଉଁଆଡ଼େ ଉଭେଇଗଲାଣି । ଶିଳ୍ପାୟନର ଔରସରୁ ଯେଉଁ ଆଧୁନିକ ଜନଜୀବନ ଜନ୍ମ ହୋଇଛି ସେଥିରେ ଏହି, ଅବହେଳିତ ନେହୁରୀ ଆଖି, କାନ୍ଦୁରା ମୁହଁ ଶିଶୁମାନେ ହିଁ ଅନ୍ୟାୟ, ଅବିଚାର, ଦୁଃଖ, ବେଦନାର ପ୍ରତିନିଧି ଭଳି ଚାରିଆଡ଼କୁ ବ୍ୟାପି ଯାଉଛନ୍ତି । ଚାରିଆଡ଼େ ନିଜର କୁତ୍ସିତ ଅଧିକାରକୁ ସାବ୍ୟସ୍ତ କରୁଛନ୍ତି ।

ଚାଲୁଥିବା ଅବସ୍ଥାରେ ଝିଅଟିକୁ ନିରେଖି ଚାହିଁ ପଚାରିଲି—"ତମମାନଙ୍କ ଘର କେଉଁଠି ?"

ଝିଅଟି କେବଳ ଉତ୍ତର ଦେଲାନାହିଁ, ଅକସ୍ମାତ ଉବୁଡ଼ା ମାଠିଆର ପାଣି ଭଳି ଢାଳି ଦେଇଗଲା ତାର ଦୁଃଖ ପିନ୍ଧା ଜୀବନର କାରୁଣ୍ୟ !

—ତା ଘର ଏଇଠି, ଆଉ ଆମ ଘର ନୟାଗଡ଼ । ମୋର ବାପା କେବେଠାରୁ ମରିଛି, ମୁଁ ଜାଣିନାହିଁ କି ବାପାଙ୍କୁ ଦେଖିଲା ଭଳି ମନେ ପଡ଼ୁନାହିଁ । ବୋଉ ମୋର ସବୁ । ସେ କେତେ ନିଜର, କେତେ ଭଲ ତାହା କହିହେବ ନାହିଁ । କିଛି-କାଳ ପରେ ବୋଉର ବି ମନ ବଦଳିଲା । ଆମ ଗାଆଁର ଆଉ ଜଣକୁ ସେ ଦୁତୀୟ ହେଲା । ମୁଁ ବୋଉ ସହିତ ଯାଇଁ ରହିଲି ତାଙ୍କ ଘରେ । ସେମାନେ କିନ୍ତୁ ସେଠାରେ ମୋତେ ଭଲ ବ୍ୟବହାର କଲେନାହିଁ । ବହୁ ସମୟରେ ଅତି ଛୋଟକଥା ପାଇଁ ସେଠାରେ ମାଡ଼ ଗାଳି ଖାଇଲି । ଏ ସବୁ ଦେଖି ବୋଉ କେବଳ ମୁହଁ ଶୁଖାଇ ପକାଏ । ଆଉ ସେ ରାକ୍ଷସମାନଙ୍କ କବଳରୁ ମୋତେ ମୁକୁଳାଇ ପାରେନାହିଁ ।

—ପରିସ୍ଥିତି ଓ ଅବସ୍ଥା. ଦୃଷ୍ଟିରୁ ମୋର ନୂଆବାପା ଥରେ ବୋଉ ସହିତ ନାନାପ୍ରକାର ପରାମର୍ଶ କରି ମୋତେ ଭୁବନେଶ୍ୱରଠାରେ ଛାଡ଼ିବା ପାଇଁ ଠିକ୍ କଲେ । ସେଠାରେ କିଛିଦିନ ରହିବି କେଉଁ ବାବୁର ଘରେ । ତାହାହେଲେ ମୋ ଉପରୁ ଅଯଥା ଜୁଲମ ବନ୍ଦ ହୋଇଯିବ, ଆଉ ମଧ୍ୟ ମୁଁ ଖାଇ ପିଇ ସୁଖରେ ରହିବ । କିଛିଦିନ ନୂଆ ସ୍ଥାନରେ, ନୂଆଲୋକଙ୍କ ମେଳରେ ରହିଲେ ବଦଳିଯିବ ମନ । ସେଦିନ ରାତିରେ ବୋଉ ତାର ନୟନ ପିତୁଳା ମୋତେ କୋଳରେ ପୂରାଇ ବହୁତ କାନ୍ଦିଲା । ମୁଁ ମଧ୍ୟ କାନ୍ଦି କାନ୍ଦି ଶୋଇପଡ଼ିଲି ।

—ପରଦିନ ସକାଳୁ ଗାଧୋଇ ପାଧୋଇ ଭଲ ଜାମାପଟା ପିନ୍ଧି ନୂଆବାପା ସହିତ ବାହାରି ଆସିଲି । ବୋଉ ଆମକୁ ବଳାଇ ଦେଇଗଲା ଗାଁ ମୁଣ୍ଡରେ । ଥରକୁ-ଥର ମୁଁ ଅନାଉଥାଏ ପଛକୁ । ଦେଖୁଥାଏ ପଥର ମୂର୍ତ୍ତିଟାଏ ଭଳି ବୋଉ ଯିମିତି

ପୋଖରୀ ହୁଡ଼ାରେ ଠିଆ ହୋଇଛୁ । ଶେଷକୁ ଯେତେବେଳେ ବୋଉ ଆଉ ଅଖିକୁ ଦୁଶିଲ ନାହିଁ, ମୁଁ ପଛକୁ ନ ଗ୍ଧହିଁ ଆଗମୁହାଁ ହେଲି । ମୋର କରଗ ଅସହାୟ ଜୀବନର ଏକମାତ୍ର ଯାହା ଭରସା ଥିଲା ବୋଉ ! ତା ପାଖରୁ ଆସି କେବଳ ହନ୍ତସନ୍ତ ହେଉଛୁ । କେବେ ଆଉ ବୋଉକୁ ଦେଖି ପାରିବି କି ନାହିଁ ଠାକୁର ଜାଣନ୍ତି ।

ଏତକ କହୁ କହୁ ଝିଅଟିର ଆଖିରୁ ବନ୍ଦ୍ବନ୍ଦ୍ ଲୁହ ଝରି ପଡ଼ିଲା । ସେହିପରି ସେ କୋହ ଉଛୁଳା କଣ୍ଠରେ କହି ଗ୍ଧଲିଥିଲା—

—ନୂଆ ବାପା ମୋତେ ଆଣି ରଖାଇ ଦେଇଗଲେ ଗୋଟିଏ ଗ୍ଧହଆ ଦୋକାନରେ । ସେ ଦୋକାନୀର ଘର କୁଆଡ଼େ ଆମର ଗାଆଁ ପାଖରେ । ଲେଖାଯୋଖାରେ ବନ୍ଧୁ ବାନ୍ଧବ ହେବେକ କଣ ? ମୋର ସେଠାରେ କାମ ହେଲା, ଅଇଁଠା ବାସନ ସଫା କରିବା, ଆଉ ଗରାଖମାନଙ୍କୁ ଗିଲାସ ଭର୍ତ୍ତି କରି ପାଣି ଯୋଗାଇଦେବା । କଲ ତଆର କଣ୍ଢେଇ ଭଳି ଏହି କାମ ମୁଁ ସକାଳ ପହରୁ ଗ୍ଧତଯାଏ କରି ଯାଉଥାଏ । ପାଣିରେ ସବୁବେଳେ ଘାଣ୍ଟି ଚକଟି ହୋଇ ଗୋଡ଼ହାତ ଶେତା ପଡ଼ିଯାଇଥିଲା, ଆଙ୍ଗୁଠି ସନ୍ଧିରେ ପାଣି କନ୍ଦା ହୋଇ ଯାଇଥିଲା ।

—ଦିନେ ସ୍ତ୍ରୋକ ବଇଲରେ ଦିଖଣ୍ଡି ଗରମ ପୁରି ଲେଉ ସମ୍ଭାଳି ପାରିଲିନାହିଁ, ପାଟି ମାରି ପଡ଼ିରହି ପାରିଲି ନାହିଁ । ଯିମିତି ଭୂଇଁରେ ଦେଇଛୁ, ସାଙ୍ଗେ ସାଙ୍ଗେ ମାଲିକ କୁଆଡ଼ୁ ଆସି ପ୍ରତାପୀ ଗ୍ଧହାଣୀରେ ଗ୍ଧହିଁ ଗୋଟାଏ ଧକ୍କା ଦେଲା ଯେ ଅଣ୍ଟେଇ ପଡ଼ିଲି । ତାହା ଉପରେ ଚଟକଣା, ବିଧା, ଗୋଇଠାରେ ମୋର ଦେହ ଦରଜ ହୋଇଗଲା । ତଥାପି ସେହି ସକାଳ ପହରୁ ଗ୍ଧତଯାଏ ହାଡ଼ଭଙ୍ଗା ଖଟଣି ଖଟି ଯାଉଥାଏ । ପ୍ରବୋଧନା ଦେଇ ଆହା ପଦେ କହିବାକୁ କେହିନାହିଁ । ଦିନେ ସମସ୍ତେ ଶୋଇ ପଡ଼ିଲା ପରେ ଗ୍ଧତିର ଅନ୍ଧାର ଭିତରେ ଅଣ୍ଡାଳି ଅଣ୍ଡାଳି ବାହାର ଦରଜା ଫିଟାଇ ଗ୍ଧସ୍ତାକୁ ଗୋଡ଼ କାଢ଼ିଲି ଜଅଁଘୀ ଅରକ୍ଷିତା ଭଳି । ସେ ଦୋକାନୀ ମୋତେ ଆଉ ଖୋଜିଲାକି ନାହିଁ ଜାଣି ପାରିଲି ନାହିଁ । ତାହା ମୁଣ୍ଡରୁ ଗୋଟାଏ ବୋଝ ଖସିଗଲା । ଶେଷକୁ ଆସି ପହଞ୍ଚିଛୁ ଏଠାରେ ।

ଅଭ୍ରସ୍ତ ସନ୍ଧାନରେ ଅମାନୁଷିକ ଅତ୍ୟାଗ୍ଧରରୁ ପଳାଇ ଆସି ଗ୍ଧସ୍ତା ଘାଟରେ ମାଗି ଖାଉଥିବା ଝିଅଟିର ଗଢ଼ଣ ଆଦୌ ଅସୁନ୍ଦର ନୁହେଁ—ଯଦିବା ତାହାକୁ ସୁନ୍ଦରୀ ତାଲିକାଭୁକ୍ତ କରିଯାଇ ପାରିବ ନାହିଁ । ଏହି ଅବହେଳିତ ଦୁଃସ୍ଥ ଶିଶୁମାନଙ୍କ ପାଇଁ ସରକାରୀ ସ୍ତରରେ ସଫଳ ଆଇନ୍‌ର ବ୍ୟବସ୍ଥା ଦିନେ ହୁଏତ ସମ୍ଭବ ହେବ । ବର୍ତ୍ତମାନ କନ୍ଦୁ ଯିଏ ଗ୍ଧସ୍ତା କଢ଼ର ପିମ୍ପୁଡ଼ି ଭଳି ଜୀବନ କଟାଉଛୁ, ଆଉ ଦୁଇ ତିନିବର୍ଷ ମଧ୍ୟରେ ମହାନଗରୀର ଗ୍ଧଜପଥ ଧାରରେ ସେ ଯେଉଁ ସମସ୍ୟାର ସମ୍ମୁଖୀନ ହେବ, ସେଥିରେ

କେତେଦୂର ସ୍ୱରକିକ ଦୃଢ଼ତା ଓ ନିଷ୍ଠା ରକ୍ଷାକରି ପାରିବ ? କେତେ ଦୂର ନିସ୍ୱ-ପଦରେ ଚଳପ୍ରଚଳ ହୋଇ ପାରିବ—ଚିନ୍ତା କରିବା ମାତ୍ରେ ମୋର ଦେହ ସ୍ୱତଃ ଶୀତେଇ ଉଠିଲା । ଅଜଣା ଭୟ, ଆଶଙ୍କା ଓ ଉତ୍ତେଜନାରେ ମସ୍ତିଷ୍କର ସ୍ନାୟୁକେନ୍ଦ୍ର ଗୁଡ଼ିକ ଅଡ଼ୁଆ ତଡ଼ୁଆ ହେବାକୁ ଆରମ୍ଭ କଲା ।

ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ କୈଫିୟତ୍ ତଲବ କରିବା ଢଙ୍ଗରେ ପ୍ରଶ୍ନ କଲି— "ଏ ପିଲାଟି ତ ତୋର ଭାଇ ନୁହେଁ, ଏହାକୁ ସାଙ୍ଗରେ ଆଣିଲୁ କେଉଁଠୁ ?"

ଏ ପ୍ରଶ୍ନ ମଧ୍ୟରେ କୌଣସି ପ୍ରକାର ଆତ୍ମୀୟତା କିମ୍ବା ମାଧୁର୍ଯ୍ୟର ସୂଚନା ନ ଥିଲା, ବରଂ ଥିଲା ଅଳ୍ପକିଛି କୌତୂହଳ ପ୍ରବୃତ୍ତି । ଏଥର କିନୁ ହିଁ ଅଟି ଉପରକୁ ମୁହଁ ଉଠାଇଲା । ପ୍ରଶ୍ନଟି ଯିମିତି ତାର ହୃଦୟର ଗମ୍ଭୀରତମ ପ୍ରଦେଶରେ ଆଲୋଡ଼ନ ସୃଷ୍ଟି କରୁଛି । ଆଖିର ତାରା ଦୁଇଟି ଯେପରି ଗମ୍ଭୀର ଆତ୍ମବିଶ୍ୱାସରେ ଚକ୍ ଚକ୍ କରୁଛି । ନାକପୁଡ଼ା ଦୁଇଟିକୁ ଫୁଲେଇ ଈଷତ୍ ସଙ୍କୋଚର ସହିତ ପ୍ରକାଶ କଲା— ଏମାନଙ୍କ ଘର ଏହି ବାଉଁଶ ପଟିଆ ଗଳିରେ, ଅପନ୍ତରା ରାସ୍ତାରେ । ମାଟିଗୁଳାର କୋଠରୀ ବଖରାଏ, ଗ୍ରେଟିଆ ପିଣ୍ଡା ତେନାଏ, ଘରପାଖରେ ଅଳିଆ ଅମ୍ବାର, ଆହୁ ପଚା ଶୁଖୁଆ ପୋଡ଼ାର ଗନ୍ଧ, ଭଣ ଭଣ ମାଛି, ମଶା; ଜୀଅନ୍ତା ନରକ ପୁଣି ବାବୁ ! ମଣିଷ ସେଠାରେ ଚଳେ ଘୁଷୁରି ଭଳି ।

ପ୍ରକୃତରେ ଭାରତୀୟ ଧର୍ମଶାସ୍ତ୍ରରେ ଏହି କୁତ୍ସିତ ପ୍ରାଣୀଗୁଡ଼ିକୁ ଯଥେଷ୍ଟ ମର୍ଯ୍ୟାଦା ଦିଆ-ଯାଇଛି । ସେ ସ୍ଥାନ ପାଇଛି ଭଗବାନ ବିଷ୍ଣୁଙ୍କର ତୃତୀୟ ଅବତାର ରୂପେ । ପର୍ଯ୍ୟାପ୍ତ ଜଞ୍ଜାଳ ଓ ପଙ୍କିଳ ପରିବେଶ ମଧ୍ୟରେ ଭାରତର କେତେ ଶିଶୁ ସନ୍ତାନ ଦୈନିକ ଜନ୍ମ ନିଅନ୍ତି । ମଣିଷ ହେବା ପାଇଁ ଜୀବନସଂଗ୍ରାମକୁ ସେମାନେ ଓହ୍ଲାଇ ଆସନ୍ତି । ସାପବେଙ୍ଗ ମୂଷା ଚୁଚୁନ୍ଦ୍ରାଙ୍କ ସହିତ ଏକାଠି ବାସ କରନ୍ତି, ଆଉ ନର୍ଦ୍ଦମାର ଧାରରୁ ଖାଦ୍ୟ ଗୋଟାଇ ଖାଇ ଶରୀରକୁ ପୁଷ୍ଟ କରନ୍ତି । ତାର କ'ଣ ହିସାବ ରଖିଛନ୍ତି ଏ ଦେଶର ଗଣତନ୍ତ୍ରୀ କିମ୍ବା ସମାଜ ତନ୍ତ୍ରୀମାନେ ? ସେମାନଙ୍କ ନିମନ୍ତେ କି ଶିକ୍ଷା ଦରକାର, କି ସଂସ୍କୃତି ଦରକାର, କି ନୀତି ଦରକାର, କିଭଳି ଦୁର୍ନୀତି ଦରକାର, ଉଗ୍ରତା ଦର-କାର, ବ୍ୟଗ୍ରତା ଦରକାର, ମାରିବା ଦରକାର, ମରିବା ଦରକାର, ମୁଣ୍ଡ ଟେକିବା ଦରକାର ମୁଣ୍ଡ ନୁଆଁଇବା ଦରକାର--ତା'ର କଣ କୌଣସି ଶୃଙ୍ଖଳାବଦ୍ଧ ସୁଚିନ୍ତିତ ଯୋଜନା କରାଗଲାଣି ? ସବୁ ଆବଶ୍ୟକତା, ସବୁ ସମସ୍ୟା, ସବୁ ସଙ୍କଟ, ସବୁ ନିବେଦନ, ସବୁ ଆବେଦନ ଯିମିତି ଆସି ଠିଆ ହୋଇଛି କ୍ଷମତା ଦୁର୍ଗର ପାଚେରି ପାଖରେ ବର୍ଷାତିଆ ପଟୁଆର ଭଳି ।

ଅତ୍ୟନ୍ତ ବିପର୍ଯ୍ୟସ୍ତ ଲୁଖୁରା ମାଖରା ବାଳ କେରାକୁ ଦୁଇପାଖକୁ ଝୁଲାଇ ହଲାଇ ସେ କହି ଚାଲିଥାଏ—"ଏହାର ବାପା ରିକ୍ସା ଟାଣେ । ମାଆ ଘର ପାଞ୍ଚ ଘରର କାମ କରେ । ଚୁଲି ଚୁଲି ବାସନ ମାଜେ, ବୋଲହାକ କରେ । ବଡ଼ଭାଇ ଦୁ'ଜଣ ଷ୍ଟେସନ

ବଜାରରେ ଭିକ ମାଗନ୍ତି, ଆଉ ସୁଯୋଗ ଦେଖି କେଉଁଠୁ କିଛି ହାତ ସଫେଇ କରନ୍ତି । ସେଥିପାଇଁ ଷ୍ଟେସନ ବଜାରରେ ଥିବା ସରଦାରଙ୍କୁ ସବୁ ରବିବାର ଦିନ ଦୁଇଟଙ୍କା ଲେଖାଏ ସଲାମି ଦିଅନ୍ତି । ଶୁଣିଛି, ସେହି ସରଦାର ପାଖରେ ପ୍ରାୟ ଦେଢ଼ଶହଜଣ ପିଲା ଅଛନ୍ତି । ଖରାପ, ଅଧମ, ନୀଚ, ହୀନ ବେଉସା କରି ପେଟ ପୋଷୁଛନ୍ତି । ପେଟପୋଷ, ନାହିଁ ଦୋଷ ! ସେମାନଙ୍କ ତଳକୁ ଯେଉଁ ଭାଉଣୀ, ସେ ପ୍ରାୟ ମୋ ଭଳି କି ମୋଠାରୁ ଟିକେ ଗ୍ରେଟ । ରାସ୍ତାକଡ଼ରୁ ଭଙ୍ଗାଟିଣ, ଶିଶି, ବୋତଲ, କାଚଚୂଡ଼ି, ପ୍ଲାଷ୍ଟିକ୍ ଜିନିଷ ସଂଗ୍ରହ କରିନିଏ ଘରକୁ । ଜିନିଷ ଅଧିକ ହେଲାପରେ ମାଆ ତାର ବୁଲା ବେପାରୀଙ୍କୁ ଡାକିଆଣି ଦେଇଦିଏ । ଟଙ୍କାଏକ ଦିଟଙ୍କା ମିଳେ ।”

କେତୋଟି ମୁହୂର୍ତ୍ତରେ ନୀରବତା ପରେ ସେ ପୁଣି କହିଲା—“ସେହିମାନଙ୍କ ପାଖରେ ମୁଁ ମୁଣ୍ଡ ଗୁଞ୍ଜିଛି । ଦୁଇ ବର୍ଷଦିନ ହେବ ଏ ପିଲାଟି ମୋ ସାଙ୍ଗରେ ଆସୁଛି ମାଗିବା ପାଇଁ ।”

କଥାର ଛିଅ ସରି ଆସିଲା ବେଳକୁ ଆମେ ପ୍ରାୟ କଟକା ଛକ ଟପି ସିଦ୍ଧେଶ୍ୱର ସାହି ଭିତରକୁ ପଶିସାରିଥିଲୁ । କଥିତ ଅଧର୍ମିତା, କଥିତ ସ୍ୱାର୍ଥପରତା, କଥିତ ନିଷ୍ଠୁରତା, କଥିତ ସଂକୀର୍ଣ୍ଣତା, କଥିତ ଅନ୍ଧତା, କଥିତ ମୂର୍ଖତା, କଥିତ ନୀଚତାର ନିର୍ଯ୍ୟାସ ହେଉଛି ଆଜିର ମଧ୍ୟବିତ୍ତ ନାଗରିକ । ମୁଁ ସେହି ପ୍ରଜାତି ଭିତରୁ ଭିନ୍ନ ହୋଇ ନ ପାରେ । ତଥାପି ଏହି ନିର୍ଯ୍ୟାସର ମହାବେଷ୍ଟଣ ମଧ୍ୟରେ ଯେତିକି ମାନବିକତାର ସ୍ପର୍ଶ ରହିଛି, ତାହାରି ଫଳରେ ଏକ ଅବ୍ୟକ୍ତ ବେଦନାରେ ମୋର ଅନ୍ତଃସ୍ଥଳ ଗୁମରି ଉଠିଥିଲା । ‘ହାୟ ଈଶ୍ୱର !’ ପଚାରିଲି—“ଏତେ ରାତି ହେଲାଣି, ତମେ ଦୁହେଁ ଫେରିବ କିମିତି ?”

ପୁଅଟି ଆବା କାବା ହୋଇ କେବଳ ଅନାଇଲା । ତାର ମୌନ—ନିର୍ବେଦ ମୁଖ-ମଣ୍ଡଳରେ ଆନନ୍ଦ କମ୍ପା ବିସ୍ମୟର ଚିହ୍ନବର୍ଣ୍ଣ ସୁଦ୍ଧା ନ ଥିଲା । ଝିଅଟି କହିଲା—“ଏହି ଗଳି ମୁଣ୍ଡ ଟପିଗଲେ ମନ୍ଦିର ଯାଏ ଯିବାକୁ ସିଧା ଗୋଟିଏ ରାସ୍ତା ପଡ଼ିଛି । ଏ ଟୋକାର ବାପା ରିକ୍ସା ଠିଆ କରି ଛକମୁଣ୍ଡରେ ଆମକୁ ଖୋଜୁଥିବ ଯେ !”

ପିଣ୍ଡା ଉପରକୁ ଉଠିବା ସଙ୍ଗେ ସଙ୍ଗେ ସ୍ତ୍ରୀଙ୍କୁ କହିଲି—“ଦିନର ଭାତ, ଡାଲି, ଓ ତରକାରୀ ଯଦି କିଛି ବଳି ପଡ଼ିଛି, ପଲିଥିନ ଖଣ୍ଡିକରେ ଏ ବାଳୁତ ପିଲାଙ୍କୁ ସେଥିରୁ ମୁଠେ ଅଧେ ଦେଇଦେ ।”

ଲୁଗାପଟା ବଦଳି, ଗୋଡ଼ ହାତ ଧୋଇ ଆସି ଦେଖେ ତ ସେ ପିଲା ଦୁଇଟି ପଲିଥିନ ଧରି ଚାଲି ଭଳି ଉଭେଇ ଗଲେଣି । ପିଣ୍ଡା ତଳକୁ ଓହ୍ଲାଇ ପଡ଼ି ଗଳି ମୁଣ୍ଡ ଯାଏ ନିରେଖି ଚାହିଁଲି । ସେମାନଙ୍କ ଚିହ୍ନ ବର୍ଣ୍ଣ ନାହିଁ । ଚଉଆଡ଼ ନିଥର—ନିସ୍ତବ୍ଧ । ଗଛର ପତ୍ରଟିଏ ସୁଦ୍ଧା ହଲୁ ନ ଥାଏ ।

(୧୯୮୮ ମସିହା ‘ନବପତ୍ର’ରେ ପ୍ରକାଶିତ)

—*—

# ଟିଳା ପରିବାରର ବୃତ୍ତାନ୍ତ

ଗୋଟିଏ ସ୍ଥାନ ଅଛି, ଯେଉଁଠାକୁ ଯିବା ପାଇଁ ବହୁଲୋକ ଆଗ୍ରହୀ ହୁଅନ୍ତି ନାହିଁ । ଏପରିକି ସେହି ସ୍ଥାନର ପକ୍ଷ୍ଯଙ୍କୁ ଆସିଲେ ଶଂକିତ ଚିତ୍ତରେ ଚଞ୍ଚଳ ଚଞ୍ଚଳ ପାଦ ପକାଇ ଚାଲି ଯାଆନ୍ତି । କାଳେ କିଏ ଦେଖିନେବ ବୋଲି ସ୍ୱରଆଡ଼କୁ ସତର୍କ ଦୃଷ୍ଟି ବୁଲାଇ ନିଅନ୍ତି । ସେହି ଭୟଙ୍କର ଆତଙ୍କ ଜନକ ସ୍ଥାନଟିର ନାମ ହେଉଛି ଥାନା । କେହି କେହି ଏହି ଥାନା ଶବ୍ଦଟିକୁ ଅକାରଣରେ ଲମ୍ବାଇ କହିବାର ଶୁଣାଯାଏ—ଥାଆ-ନାଁ । ଥିଲେ କମ୍ପା ରହିଲେ ଅହେତୁକ ବିପଦର ଆଶଙ୍କା ଅଛି । ଥାନା କେବଳ ଯେ ଚୋର, ଡକାୟତ, ଗଣ୍ଠିକଟା, ପକେଟମାରୁ, ଗୁଣ୍ଡା, ଗୁଣ୍ଡା ପ୍ରଭୃତି କେତେକ ଅସାମାଜିକ ଲୋକଙ୍କ ଅକଥନୀୟ ଦମନ ପାଇଁ ଉଦ୍ଦିଷ୍ଟ, ତାହା ନୁହେଁ । ସେଠାରେ ମଧ୍ୟ ଦେଖିବାକୁ ମିଳନ୍ତି ପ୍ରବୀଣ ମାମଲତକାର, କୁଳ ଟାଉଟର, ଦର୍ପୀ ଜନନେତା, ଅହଂକାରୀ ସାହୁକାର, ସୁଧଖୋର ମହାଜନ, ଗର୍ବୀ ସରପଞ୍ଚ, ସରବରାହକାର ପ୍ରଭୃତି ଶକ୍ତି ଓ ସାମର୍ଥ୍ୟଧର ବ୍ୟକ୍ତିମାନେ, ଯେଉଁମାନେ ବଡ଼ ବଡ଼ କଥା କହି କାମ କରାଇ ନେବାରେ ଓସ୍ତାଦ୍ । ସେମାନେ ମଧ୍ୟ ଥାନା ସହିତ ଓ ଥାନା ବାବୁମାନେ ତାଙ୍କ ସହିତ ଫୁସ୍ ଫାସ୍ ହୋଇ କଥାବାର୍ତ୍ତା କରୁଥିବାର ଦେଖାଯାଏ ଓ ଶୁଣାଯାଏ । ଏଣୁ ସେମାନଙ୍କ କମନ୍ରେ ଭୟ କମ୍ପା ସତର୍କତାର ସ୍ଥାନ ନିର୍ଦ୍ଦିଷ୍ଟ ପରିମାଣରେ ନ୍ୟୁନ ।

ସେଦିନ ବୋଧହୁଏ ଭାଦ୍ରବ ମାସର ଅଧାଅଧି ହୋଇଥାଏ କି କ'ଣ ? ବର୍ଷାଅନ୍ତେ ପ୍ରାପ୍ତ ଅନାଗତ ଆଶ୍ୱିନର ଶ୍ୟାମଳ ସମାରୋହ ସାଙ୍ଗକୁ ସୁନାପାଣିଦିଆ ତରଳ ଖରାଟିକେ ଖରା ମନ ମଧ୍ୟରେ ମଧୁର ରୋମାଞ୍ଚ ସୃଷ୍ଟି କରୁଥାଏ । ମନେ ହେଉଥାଏ ଧବଳ ବକ ପଂକ୍ତି ଭଳି ଡେଣା ଦୋହଲାଇ ଆକାଶ ମାର୍ଗରେ ଉଡ଼ି ଯିବା ପାଇଁ ଦୂରକୁ, ବହୁତ ଦୂରକୁ । ତାହା କ'ଣ ଆଉ ଏ ବୟସରେ ସମ୍ଭବ ? ତଥାପି ମନ ଫୁଲିଣିଆ ଚେହେରା ସଜାଇ ବାହାରି ପଡ଼ିଲି ବଜାରକୁ କିଛି ପଦ୍ୟ ପନିପରିବା ସଂଗ୍ରହ ପାଇଁ । ବ୍ୟାଗଟି ଝୁଲୁଥାଏ ହାତରେ । କିଛି କଖାରୁ, ଡମଣା ପୋଇ, କଣ୍ଟିଆଳି କାକୁଡ଼ି, ଗୋଟିଏ ବଇଗଣ, ପେଣ୍ଡିକଦଳି, କଟକ ପୋଟଳ ଆଦି ଯାହା ଯେଉଁଠାରୁ ମିଳିଲା, ସେଥିରେ ବ୍ୟାଗ୍ ବୋଝାଇ କରି ଫେରିଲି ବେଳକୁ ଘଟିଲା ଦୁର୍ଯୋଗ । ଥାନା ପାଖ

ହୋଇଛି କ ନାହିଁ ଗୋଟି ଆସିଲା କୁଆଡ଼ୁ ମେଘ । କୁଣ୍ଡାଙ୍କଗ ଝାବୁଝାବୁ ପଡ଼ିଲା ବର-କୋଳିଆ ଚୋପା ।

ସର୍ବନାଶ ! ଅବଶିଷ୍ଟ ପଥ ଅତିକ୍ରମ କରିବ କିପରି ? ମୂହୂର୍ତ୍ତେ ଠିଆ ହୋଇ ଯିବା ପାଇଁ ସ୍ଥାନ କଢ଼ରେ ଛାଇ ଚକଡ଼ାଏ ନାହିଁ । ଘୁରିଆଡ଼ ଉଲଗ୍ନ, ଫୁଙ୍ଗୁଳା । ଅଗତ୍ୟା ବାଧ୍ୟ ହେଲି ନ ଯିବା ସ୍ଥାନକୁ ପାଦ ଉଠାଇବା ପାଇଁ । ଥାନା ବାରଣ୍ଡା ଦାଢ଼ରେ ଅତି ସନ୍ତର୍ପଣରେ ଟିକଏ ମୁଣ୍ଡ ଗୁଞ୍ଜିବା ପାଇଁ ଆକସ୍ମିକ ଓ ତତ୍କ୍ଷଣିକ ସିଦ୍ଧା-ନ୍ତରେ ପହଞ୍ଚିଲି । ଠିକପଣରେ ପ୍ରାୟତଃ ଠିକଣିକାରୁ ଓ ମୁଣ୍ଡ ଉପରେ ଚେନାଏ ଛାତ । ସେଇଠି ଗୁଞ୍ଜି ଗାଞ୍ଜି ହୋଇ ଠିଆ ହୋଇ ପଡ଼ିଲି ।

ମେଘ ଛାଡ଼ିଲା ପରେ ମୁଁ ମୋ ବାଟରେ ବାହାରି ଯାଇଥାନ୍ତି, ଯଦି ସବ ଶତ୍ରୁ-ମାନ ଥାନାବାବୁ ଜଣେ କନେଷ୍ଟବଲ ଦ୍ୱାରା ମୋତେ ଭିତରକୁ ଡକାଇ ପଠାଇ ନ ଥାନ୍ତେ, ଆଉ ତାଙ୍କ ତୀକ୍ଷ୍ଣ ନଜରର ପରିସୀମା ମଧ୍ୟରେ ପଡ଼ିଥିବା ଚଉକିଟି ଉପରେ ବର୍ଷା ବନ୍ଦ ହେବା ପର୍ଯ୍ୟନ୍ତ ବସି ଅପେକ୍ଷା କରିବାକୁ ସଦୟ ଅନୁରୋଧ ଜଣାଇ ନଥାନ୍ତେ । ଥାନା ଭିତରେ କୌଣସି ପ୍ରକାର ବ୍ୟକ୍ତିଗତ ସାମାଜିକତାର ଉତ୍ତାପ କେବେହେଲେ ଆଶା କରିଯାଇ ନ ପାରେ । ସୁତରାଂ ପ୍ରଥମେ ଖବରଟା ପାଇ କମ୍ପିତ ଜଡ଼ତା ଆସିଯାଇ-ଥିଲା । ଭୟ ଓ ଆତଙ୍କରେ ମୋର ଗୋଡ଼ ହାତ ସତେ ଯିମିତି ପେଟ ଓ ଗ୍ରୀବା ଭିତ-ରକୁ କାକହୋଇ ଗଲା ପରି ମନେ ହୋଇଥିଲା—ଯିମିତି ମୁଁ ଗୋଟାଏ ବଡ଼ ଧରଣର ପେଣ୍ଡୁଟିଏ ଭଳି ଚଉକି ଉପରେ ସବୁରି ଦର୍ଶନୀୟ ବସ୍ତୁ ହୋଇ ବସି ରହିଲି । ପରିଚୟ ପ୍ରଦାନ ଓ ମାମୁଲି ଧରଣର ସୁଖ ଦୁଃଖର ଭଦ୍ରତା ଓ ବିଶିଷ୍ଟ ସମାଦର ଅନ୍ତେ ଥାନାବାବୁ ମନ ଦେଲେ ନିଜର କର୍ତ୍ତବ୍ୟ ସମ୍ପାଦନରେ ।

ଦୁଇଜଣ ଯୁବକଙ୍କୁ ହାଜତରୁ ଆଣି ତାଙ୍କ ନିକଟରେ ହାଜର କରାଇବା ପାଇଁ ପାଖରେ ଥିବା ହାବିଲଦାରକୁ ସେ କଡ଼ା ନିର୍ଦ୍ଦେଶ ଦେଲେ । ତାଚ୍ଛଲ୍ୟ ବ୍ୟଞ୍ଜିତ ମୁହଁରେ ନିଶର ମୁନିଆ ଅଂଶକୁ ଟେକିଦେଇ ଚାହିଁ ରହିଲେ ସେହି ଦିଗକୁ । ସେତେବେଳର ମୁହଁର ଭାବକୁ ସହ୍ୟ କରିବା ସାଧାରଣ ମଣିଷ ପକ୍ଷେ କଠିନ । ଯଥାଶୀଘ୍ର ଥାନା-ବାବୁଙ୍କ ନିର୍ଦ୍ଦେଶ ମଧ୍ୟ କାର୍ଯ୍ୟକାରୀ ହେଲା । ହାଜତରୁ ଅଣା ହେଲେ ଦୁଇଜଣ ଯୁବକ । ଦେଖିବାକୁ ପ୍ରାୟ ସମବୟସ୍କ । ଆଧୁନିକ ଯୁବକମାନଙ୍କର ବେଶଭୂଷା ଯାହା ହେବାର କଥା, ସେଥିରେ ଆଦୌ ତ୍ରୁଟି ନ ଥିଲା । କ୍ଷୀଣ ସ୍ୱାସ୍ଥ୍ୟ, ବିଶୀର୍ଣ୍ଣ ବଦନ । ଦୀର୍ଘ ସମୟ ହାଜତ ଘରେ ଆବଦ୍ଧ ହୋଇ ରହିଥିବାରୁ ଚେହେରାମାନ ଓ ଚେହେରାମିଞ୍ଜାସ୍ କମ୍ପିତ ମ୍ଳାନ ପଡ଼ି ଆସିଥାଏ । କୋଟରଗତ ଆଖି ଯୁଗଳଗୋଟିରେ ସ୍ୱାଭାବିକ ଯୌବନ ସୁଲଭ ଦୀପ୍ତି ନ ଥିଲେ ମଧ୍ୟ ବୁଦ୍ଧିମତ୍ତାରେ ପୂର୍ବର ଦୁର୍ବିନୀତ ଭାବ ଫୁଟି ଉଠୁଥାଏ । ଥାନାବାବୁଙ୍କର

ନିକଟରେ ତାଙ୍କୁ ମୁହଁ ପୋଛ ଠିଆ ହୋଇଥାନ୍ତି ସେମାନେ, ସତେଯିମିତ ସମ୍ପୂର୍ଣ୍ଣ ଜୀବନ-ମୁକ୍ତ; ଯିମିତ ସଦ୍ୟ ଖୁଣୀ ଆସାମୀ ।

ଶ୍ୱାସ ବନ୍ଦ କରି, ମନକୁ ଶାନ୍ତ, ସଂଯତ ଓ ଯୋଗାରୁଢ଼ ଅବସ୍ଥାକୁ ଆଣିଲା ପରି କରି ମୁଁ ଘଟଣାକୁ ଲକ୍ଷ୍ୟ କରୁଥାଏ କେବଳ ! କହିବାକୁ କିଛି ନ ଥାଏ, କରିବାକୁ ମଧ୍ୟ । ଥାନା ଭିତରର ଧୂମ୍ର ଓ ଆରାମଦାୟକ [illegible] ବରଂ ହାଲୁକା ଭାବରେ ଆଖିପତା ମୁଦି ଦେବାକୁ ଚେଷ୍ଟା କରୁଥାଏ । କଥାବାର୍ତ୍ତା ଓ ପ୍ରଶ୍ନ ଉତ୍ତରରୁ ଯାହା ଜଣାଗଲା ଏକନମ୍ବର ଯୁବକର ନାମ ହେଉଛି ପିଲ୍ ପଣ୍ଡା । ତାର ବାପାର ନାମ ସତ୍ୟବାଦୀ ପଣ୍ଡା ଓ ମାତା ନାମ ସୁଶୀଳା ଦେବୀ । ବୟସ ୨୭ ବର୍ଷ, ବର୍ଣ୍ଣ ପାଟଳ ନାରଙ୍ଗଲେମ୍ବୁ ଭଳି ସଫା, ଗୋରି ତକତକ । ଯୋଗ୍ୟତା ସାଧାରଣ ଭାବେ ବିଶ୍ୱବିଦ୍ୟାଳୟର ଉପାଧି ଧାରୀ ବେକାର । ଦୁଇନମ୍ବର ଜଣକ ଏକ ନମ୍ବରର ବନ୍ଧୁ କାଳି ଦାସ । ବୟସ ଓ ଯୋଗ୍ୟତା ଏକା ପ୍ରକାରର । ଉଚ୍ଚତାରେ ଅଧଇଞ୍ଚ ଛୋଟ, ବର୍ଣ୍ଣ ନିରସ । ଏଠାରେ ସେ ତାଙ୍କ ଭଣୋଇ ଘରେ ରହି ଚାକିରି ସନ୍ଧାନ କରୁଛି । ବୃତ୍ତି ଯାଉଥିବା ବୋଝାଇ ଜାହାଜର ସହଯାତ୍ରୀ ରୂପେ ଉଭୟଙ୍କ ମଧ୍ୟରେ ବଢ଼ିଛି ବନ୍ଧୁତା । ପରିଜନଙ୍କର ଦୁଃଖ, ହତାଶାର ଗ୍ଲାନି, ଦୁର୍ବହ ମନସ୍ତାପ ଓ କ୍ଷଣିକ ଆନନ୍ଦ ଉପଭୋଗର ଉଦ୍ଦାମ ଓ ଲାଗାମହୀନ ଆଗ୍ରହ ସେ ଦୁହିଁଙ୍କୁ ନିକଟରୁ ନିକଟତର କରିଛି; ଯାହା ଫଳରେ ଦୁହେଁ ହାତକୁ ହାତ ଛନ୍ଦାଛନ୍ଦି ହୋଇ ଗୋଟିଏ ଖାଲେଇର ମୀନ ଭଳି ଦେଖାଯାଉଛନ୍ତି ।

ପିଲ୍ ପଣ୍ଡା ନାମରେ ଅଭିଯୋଗ ସାଂଘାତିକ ନ ହେଲେ ମଧ୍ୟ ନ୍ୟୂନ ନୁହେଁ । ସେ ନିଜକୁ ନକଲି ହାକିମ ସଜାଇ ବିଭିନ୍ନ ହାଟକୁ ଯାଇ ସେଠାରେ ବିକ୍ରି କରୁଥିବା ମଫସଲି ଲୋକଙ୍କଠାରୁ ହାଟ ମାହାସୁଲ ଆଦାୟ କରେ । ବଡ଼ ବଡ଼ ଦୋକାନର ଦୁଆର ମାଡ଼େନାହିଁ । ବେଳ କାଳ ଦେଖି ସେହିମାନଙ୍କ ନିକଟରେ ଯାଇଁ ପହଞ୍ଚେ, ଯେଉଁମାନେ ନାରଙ୍ଗଲେମ୍ବୁ ଦସ୍ତା କିମ୍ବା ଗଣ୍ଡାକୁଆଁଟାଏ ଧରି ବସିଥାନ୍ତି ହାଟର ଅନାବୃତ ଓ ଅନାଦୃତ ଅଞ୍ଚଳରେ—ଯେଉଁଠାରେ ଲୋକଗହଳି ଊଣା, ଯେଉଁଠାରେ ହାଣ୍ଡି, ମାଠିଆ, ଚୁଲି, ଟୋକେଇ, ପସାଦହୁଡ, କୁକୁଡ଼ାଅଣ୍ଡା ଆଦି ମଫସଲ ଅଞ୍ଚଳରୁ ଆଣି ଲୋକମାନେ ବିକା କିଣା କରୁଥାନ୍ତି । ସେଠାରେ ପିଲ୍ ପଣ୍ଡା ଚକର କାଟୁଥାଏ । ଯେଉଁ ମଳି ମୁଣ୍ଡିଆ ମଣିଷମାନେ ତେଲ ଲୁଣର ଗୁଜୁରାଣ ମେଣ୍ଟାଇବା ପାଇଁ ହାଟକୁ ଆସିଥାନ୍ତି, ସେହିମାନଙ୍କୁ ସେ ଡିମା ଡିମା ଆଖିରେ ଚାହେଁ । ଦଶ ମୋଟ କଡ଼ା ଭାଷାରେ କଥା କେତେ ପଦ ଶୁଣାଏ । ଅନଧିକାର ବାହାଦୁରି ଦେଖାଇବାରେ ସେ ଓସ୍ତାଦ । ଉଚିତ ମାହାସୁଲ ଆଦାୟ କରି ପକେଟରେ ପକାଏ । ବନ୍ଧୁ କାଳି ଦାସଙ୍କୁ ଇଙ୍ଗିତରେ ନିର୍ଦ୍ଦେଶ ଦିଏ । କାଳିଦାସ କାଳ ବିଳମ୍ବ ନ କରି ତତ୍‌କ୍ଷଣାତ୍ ରସିଦ୍ କାଟି ଧରାଇ ଦିଏ । ସଙ୍ଗେ ସଙ୍ଗେ ସେମାନେ ସ୍ଥାନ ତ୍ୟାଗ କରନ୍ତି । ପରିସ୍ଥିତିକୁ ଦେଖି ବୁଦ୍ଧି ବଦଳି ଯାଏ କର୍ମପନ୍ଥା । କ୍ଷିପ୍ର ସିଦ୍ଧାନ୍ତ ଗ୍ରହଣ କରିବାରେ ସେମାନେ ପଟୁ । ସାବଧାନ ସତର୍କତା

ଏ କର୍ମପନ୍ଥାର ସ୍ୱଭାବିକ ଅଙ୍ଗ । ଏଥିରେ ଉପାର୍ଜନ ମନ୍ଦ ହୁଏ ନାହିଁ । ଦୁହିଙ୍କର ଦୈନିକ ଖର୍ଚ୍ଚ ଭୁଲାଇ ମଉଜ-ମଜଲିସ୍‌ର ଆଶକ୍ତି ମଧ୍ୟ ଚଳାଇ ହୁଏ । ବାଜ୍ନ୍ କୋ, ହେରୋଇନ, କୋକେନ, ଭାଙ୍ଗ, ଗଞ୍ଜାଇ ଓ ଚରସ ଆଦି ବହୁ ଜାତି ମାଲରେ ପାଣ୍ ନମ୍ବର ରଖାଯାଇ ପାରିବ । ଯେଉଁଦିନ ଏ ସବୁ ମାଲମସଲାକୁ ପାଣ୍ଠି କିଛି ଯୁଟିଲା ନାହିଁ, ସେଦିନ ଜଣେ କିଣିଆଣେ ଔଷଧ ଦୋକାନରୁ ବେନାଡ୍ରିଲ କଫ୍ ସିରପ୍ ଓ ଅନ୍ୟ ଜଣେ ଆଣେ ମେଣ୍ଡ୍ରକ୍ସ ବଟିକା । ଉଭୟଙ୍କୁ ମିଶାଇ ସେବନଟା ଚଳାଇ ନିଆଯାଏ ନିଭୃତରେ । ବଡ଼ ବିଶୃଙ୍ଖଳିତ ଜୀବନ ମଧ୍ୟରେ ଏହା ହିଁ ହେଉଛି ଏକ ପ୍ରକାର ପ୍ରଶାନ୍ତିର ଲଘୁତମ ବ୍ୟବସ୍ଥା । ଅଧିକ ପ୍ରଶାନ୍ତିର ବ୍ୟବସ୍ଥା ହେଉଛି ପତିତାଳୟ ଗମନ, ବ୍ଲୁ ଫିଲ୍ମ ଦର୍ଶନ, ଜୁଆଖେଳ ଓ ବିଭିନ୍ନ ଅନୈତିକ ଘଟଣାର ସଦସ୍ୟ ହେବା; ସମସ୍ତ ପ୍ରକାର ପାପ, ଅଧଃପତନ, ଅବାଞ୍ଛିତତା, ସର୍ବନାଶର ପଥରେ ପଥିକ ହେବା ।

ଥାନା ଆଗରେ ବସି ସିଝା ଚନାବାଦାମ, ପୋଡ଼ାମକା ଆଦି ବିକ୍ରି କରୁଥିବା ବୃଦ୍ଧପାଞ୍ଚଟା ମଫସଲି ଲୋକଙ୍କଠାରୁ ଅଦମ୍ୟ ଉତ୍ସାହରେ ମାହାସୁଲ ଆଦାୟ କରୁଥିବା ସମୟରେ ଦୁହେଁ ଧରା ହୋଇଛନ୍ତି । ସେମାନଙ୍କ ହାତବ୍ୟାଗରୁ ବାହାରିଛି ବିଭିନ୍ନ ହାଟ ନାମରେ ଛପା ଜାଲ ରସିଦ ବଣ୍ଡାଟାଏ । ସେ ଗୁଡ଼ିକ କେଉଁଠି, କେଉଁ ପ୍ରେସରେ, କେବେ ଛପା ହୋଇଛି ତାହାର ଚିହ୍ନବର୍ଣ୍ଣ ସୁଦ୍ଧା ନାହିଁ କି ରସିଦଖାତାର ନମ୍ବର ନାହିଁ ।

ପିଲା ପଣ୍ଡାକୁ ଧମକ ଚମକ ପରେ ଏତିକି ଜଣାଗଲା ଯେ ସେ ଆବେଗ ପ୍ରବଣ, କଷ୍ଟାତୁର । ବାପା ସତ୍ୟବାଦୀ ପଣ୍ଡା ଗ୍ରାମାଞ୍ଚଳରୁ ଆସି ନିକଟସ୍ଥ ସହରତଳିର ପାଖ-ଖୋପ ଭଳି ଘରେ ବସତି ସ୍ଥାପନ କରିଛି । ଦୂରର ପାହାଡ଼ ମୁଣ୍ଡରେ ବୋଧହୁଏ ଜଗନ୍ନାଥ ମନ୍ଦିରରେ ପୂଜକ କାର୍ଯ୍ୟ କରୁଛି । ସବୁବେଳେ ପିଲାର ଆଖି ଆଗରେ ଅଶୀତିପର ବାପାର ବିପନ୍ନ ଚିନ୍ତାକ୍ଲିଷ୍ଟ ମୁହଁର ଛବିଟା ଅସ୍ପଷ୍ଟଭାବେ ଝୁଲି ପଡ଼ିଲା ଭଳି ମନେହୁଏ । ସେ ଦୁର୍ଦ୍ଦିନ ଓ ଦୁର୍ଦ୍ଦଶା ମଧ୍ୟରେ ନାନା ପ୍ରକାର କୃଚ୍ଛ୍ର ସାଧନା କରି ପିଲାକୁ ପାଠ ଦି-ଅକ୍ଷର ପଢ଼ାଇଥିଲା । ନାନାଆଡ଼ୁ ମାଗି ଯାଚି ଆଣି ଆବଶ୍ୟକୀୟ ବହି ପତ୍ର ଓ ଜାମା-ପ୍ୟାଣ୍ଟ ଯୋଗାଇଥିଲା । ଏକମାତ୍ର ଆଶା ଥିଲା 'ପିଲାର ପିଲାଳିଆ ପ୍ରକୃତି ଅଧିକ ଦିନ ରହିବ ନାହିଁ । ସେ ପାଠ ଶାଠ ପଢ଼ି ଜଣେ ବଡ଼ ମନିଷ ହେବ, ଭଲ ଚାକିରି କରିବ, ପରିବାରର ଢେର ଢେର ଉନ୍ନତି କରିବ; ଶ୍ରୀ ଜଗନ୍ନାଥେ ଦୟା କରିବେ ।' ଏଣୁ ବେଳେବେଳେ ଅନିଶ୍ଚିତ ଭବିଷ୍ୟତ ଉପରେ ଶାନ୍ତିରେ ସେ ହାତ ବୁଲାଇ ଆଣୁଥିଲା ।

ତାର ସେ ଆଶା ଆଜି ବାଲିବନ୍ଧ ଭଳି ଭୁସ୍ଡୁ଼ି ଗଲାଣି । ଏ ଠେଲପେଲ ଯୁଗରେ ଠେଲି ହୋଇ ଅବା ପେଲି ହୋଇ ଥରକୁଥର ନାନାସ୍ଥାନରେ ଦରଖାସ୍ତ ଦେଇ, ଇଣ୍ଟର-ଭ୍ୟୁରେ ହାଜର ହୋଇ ମଧ୍ୟ କିଛି ହୋଇପାରୁନାହିଁ । ମନ ଚିଟା ଧରି ଗଲାଣି । ସବୁଠାରେ

ଇଣ୍ଟରଭ୍ୟୁ ବେଳେ ଦେଖୁଛୁ ଲମ୍ବା ଧାଡ଼ି । ଗୋଟାଏ ଚାକିରି ପାଇଁ ଚାରିଶହଜାର ପ୍ରାର୍ଥୀ । କାଣ୍ଡଚାଣ୍ଡ୍ କରି ଦେଖିଲେ ଇଣ୍ଟରଭ୍ୟୁକୁ ରୋମାଣ୍ଟିକ ଭାବୋନ୍ମାଦନାରେ ପ୍ରମତ୍ତ ସ୍ୱଚ୍ଛ୍-ଉଚ୍ଛଳ ଆସନ୍ତି ଅନ୍ତତଃ ଚାରିଶହ । ସେହିମାନଙ୍କ ମଧ୍ୟରୁ ଯାହାର କପାଳ ଡାଳା ଥାଏ, ଯିଏ ହାକିମଙ୍କ ହାତ ଚକ୍‌କଣ କରିପାରେ, ଯିଏ ନେପଥ୍ୟରେ ମାମୁଲିର ବ୍ୟବସ୍ଥା କରିଥାଏ; ସେ ଦସ୍ତା ଉପରେ ଦସ୍ତୁରମସ୍ତ ଭାବେ ବସିଯାଏ । ତାଙ୍କ ଛଡ଼ା ତିନିଶହ ଅନେଶୋତ ଫେରନ୍ତି ମୁହଁକୁ ଆମ୍ବିଳା କରି, ନିଜ ଭିତରେ ଆହତି ପାହତି ହୋଇ । ପିଲୁ ପଣ୍ଡା ସେହି ତିନିଶହ ଅନେଶୋତ ଅପ୍ରୟୋଜନୀୟ ମଣିଷଙ୍କ ମଧ୍ୟରୁ ଜଣେ । ଆଉ ଜଣେ ହେଉଛି କାଳି ଦାସ ଯାହାକୁ, ବିପଦ ଆପଦରେ ସାହା ଭରସା ଭଳି ପିଲୁ ସାଙ୍ଗରେ ଧରିଛୁ । ରାଜଦ୍ୱାରରେ କାଳି ଆଜି ତାହା ସାଙ୍ଗରେ ଅଛି, ଶ୍ମଶାନକୁ ଗଲା ବେଳେ ରହିବ କି ନାହିଁ, ସେ ଭବିଷ୍ୟତର କଥା । ତେବେ ବର୍ତ୍ତମାନ ପାଇଁ ସେ ପ୍ରକୃତ ପ୍ରାଣଖୋଲା ବନ୍ଧୁ ।

ପୁଅ ପାଠ ପଢ଼ିଲା, ବେକାର ହେଲା ପରେ ସତ୍ୟବାଦୀର ଆଶା ଭରସା ନିଜ ଉପରୁ ଯେପରି ତୁଟି ଯାଇଛି, ସେହିପରି ଦିଅଁ ଦେବତାଙ୍କ ଉପରୁ ବିଗିଡ଼ିଯାଇଛି । ଦିନକୁ ଦିନ ବ୍ୟର୍ଥତା ତାହା ମନରେ ନୈରାଶ୍ୟ ସୃଷ୍ଟି କରି ଚାଲିଛି । ବେଳେବେଳେ ଏଣିକି ପହ୍ୱିକରି, ଲୋଳିତ ଚର୍ମ ବଡ଼ପଣ୍ଡା ସତ୍ୟବାଦୀ ଜଗନ୍ନାଥଙ୍କ ମନ୍ଦିରରୁ କେଉଁଆଡ଼େ ଉଭାଇ ଯାଏ; କିଛି ସମୟ ପରେ ଫେରିଆସେ ଡାଲା ବୋହାଇ ଫୁଲ, ମାଳ ଓ ଚୂଳ ଆଦି ଘେନି । ପୁଣି ତାହାକୁ ଦିଅଁଦର୍ଶନରେ ଆସୁଥିବା ଭକ୍ତମାନଙ୍କୁ ବିକ୍ରି କରିବା ପାଇଁ ବ୍ୟବସ୍ଥା କରିଦିଏ । ଯାହା ପଇସା ମିଳେ, ତାହା ହିଁ ହୁଏ ସେ ଦିନର ଉପାର୍ଜନ । ସହରର ବିଭିନ୍ନ ସ୍ଥାନରେ ଥିବା ମହାଦେବ ମନ୍ଦିର, ରାମ ଦେଉଳ, ରାଧାକୃଷ୍ଣ ଦେଉଳରେ ହଠାତ୍ ଝଡ଼ ଭଳି ପହଞ୍ଚି ଯାଇ ସେ ଫେରିଆସେ ତୋଫାନ ବେଗରେ । ସେହି ମଧ୍ୟରେ ସୁଯୋଗ ଉଣ୍ଡି ସେଠାକାର ଦିଅଁଙ୍କ ଦେହରେ ଲାଗି ହୋଇଥିବା ଫୁଲ ଓ ମାଳରୁ କିଛି ଚୋରିକରି ଗାମୁଛାରେ ବାନ୍ଧିଆଣେ । କାମଟି ସେ ଏପରି ଦକ୍ଷତାର ସହିତ ସମ୍ପନ୍ନ କରିଥାଏ ଯେ ଭକ୍ତ ତ ଭକ୍ତ ସ୍ୱୟଂ ଭଗବାନ ମଧ୍ୟ ଜାଣିବାର ସମ୍ଭାବନା ନ ଥାଏ ବାସ୍ତବ ଜୀବନର ଏହି ପରମ ସତ୍ୟକୁ । ସେହି ଫୁଲମାଳ ଓ ଚୂଳକୁ ଡାଲାରେ ସଜାଇ, ପାଣି ଛିଞ୍ଚି କଦଳୀପତ୍ର ଢୋଡ଼ାଇ ଘେନି ଆସେ । ବିକ୍ରି କରି ଯତ୍‌କିଞ୍ଚିତ ଆୟ ହୁଏ, ତାହା ପରିବାରର ଗୁଜୁରାଣ ମେଣ୍ଟାଇନେବା ନିମନ୍ତେ ଯଥେଷ୍ଟ ନୁହେଁ । ଏଣୁ ବିବେକର ଦଂଶନ ଅନୁଭବ କଲେ ସୁଦ୍ଧା ଜୀଇ ରହିବାର ତାଡ଼ନା ଆଗରେ ତାହା କିଛି ନୁହେଁ । ଜୀଇ ରହିବାର ନିର୍ମମ ତାଡ଼ନା ହିଁ ତାହାର ସାମାଜିକ ତଥା ମାନସିକ ଜ୍ଞାନ, ବୁଦ୍ଧି, ଚେତନା ଓ ବିଚାରକୁ ଧ୍ୱଂସ କରିଛି ।

ପେଟ ପୋଷ, ନାହିଁ ଦୋଷ । ସ୍ୱୟଂ ଭଗବାନ କୃଷ୍ଣଚନ୍ଦ୍ର ନିଜ ଉଦର ଭରଣ ନିମନ୍ତେ ସରଲବଣୀ ଚୋରି କରୁଥିଲେ । ତାହା ଦ୍ୱାପର ଯୁଗର କଥା । ଏହି ଉଣେଇଶି

ଣତ୍ୱ ଅଣି ଦଣକରେ ଉତ୍ତର ପ୍ରାନ୍ତରେ ଠିଆ ହୋଇ କୌଣସି ପୂଜକ ଆପଣା ପେଟ-ପାଟଣା ପାଇଁ, ଦର୍ଶ ଲାଗି ହୋଇଥିବା ଛଡ଼ା ଫୁଲକୁ ପୁନର୍ବାର ଆଣି ଯେବେ ଶ୍ରୀ ଜଗନ୍ନାଥଙ୍କ ମନ୍ଦରରେ ବଜସ୍ତ୍ର କରଥାଏ, ତେବେ ଯେ କାହିଁକି ଏହା କରୁଛ ତାହା କଣ ସ୍ୱୟଂ ଜଗନ୍ନାଥ ଅନୁଭବ କରିପାରୁ ନାହାନ୍ତି ? ଶଗଡ଼ ଚକା ଭଳି ଦୁଇଟା ବସ୍ତ୍ର ଆଖିରେ ଦେଖି ତାର ଉଚିତ ସମାଧାନ ପାଇଁ ବ୍ୟବସ୍ଥା କରିପାରୁ ନାହାନ୍ତି ? ପୃଥିବୀ ଯେ ଦିନକୁ ଦିନ ବିଷାକ୍ତ ଓ ଅନ୍ଧକାରମୟ ହୋଇଯାଉଛି, ତାହା ଅମୃତ ପାୟୀ ଦେବତାଙ୍କ କଣ ଗୋଚର ହେଉନ ?

ପୂର୍ବରୁ ନଗ୍ନ ଶାନ୍ତିପ୍ରିୟ ଗତାନୁଗତିକ ଜୀବନର ପ୍ରତୀକ ସତ୍ୟବାଦୀ ପଣ୍ଡା ଏଭଳି ମିଥ୍ୟାବୃତ୍ତିକୁ ପ୍ରଶ୍ରୟ ଦେଉ ନ ଥିଲା । ସୁସ୍ଥ, ସୁନ୍ଦର ସାମଗ୍ରିକ ଜୀବନ ଯାପନ ପ୍ରଣାଳୀ ଭିତରେ ଏକ ପ୍ରକାର ପ୍ରଚ୍ଛନ୍ନ ଆତ୍ମତୃପ୍ତି ତା'ର ଥିଲା । କେବେଠାରୁ ଏହି ଭିନ୍ନ ଅବସ୍ଥା ସହିତ ନଜର ମନକୁ ଚଳାଇ ଆଣିଲାଣି ଓ କାହିଁକି ଆଣିଲାଣି, ତାହା ଜଗତର ନାଥ ଶ୍ରୀଜଗନ୍ନାଥ କଣ ଜାଣି ଅଜଣା ଭଳି ରହିଁ ରହିଛନ୍ତି ? ବର୍ତ୍ତମାନର ଆପାତ ପରିମିତ ଜୀବନ ଯାତ୍ରାର ଛନ୍ଦ ସହିତ ସେ ଅଭ୍ୟସ୍ତ ହୋଇଗଲାଣି କହିଲେ ଚଳେ । ସମସ୍ତ ସହିତ ମଣିଷ ଅବସ୍ଥାର ପରିବର୍ତ୍ତନ ହୁଏ । ଏହି ପରିବର୍ତ୍ତିତ ଅବସ୍ଥା ସହିତ ସତ୍ୟବାଦୀ ନଜକୁ ଖାପଖୁଆଇ ନେଲାଣି । ସାମାଜିକ ଆଚାର ଓ ଆଚରଣରେ ଯେଉଁ ବିକାର ଦେଖା ଦେଉଛି, ତାହା ପାରିବାରିକ ତଥା ସାମାଜିକ ଜୀବନକୁ ପ୍ରଭାବିତ କରୁଛି ।

ଶ୍ରୀ ଜଗନ୍ନାଥ ହେଉଛନ୍ତି ଜଗତର ନାଥ । ସମସ୍ତଙ୍କ ପାଇଁ ବଡ଼ ଦେଉଳର କବାଟ ମୁକ୍ତାଣ ମେଲା । ଧନୀ, ନିର୍ଦ୍ଧନ, ପାପୀ, ତପୀ, ସାଧୁ, ଅସାଧୁ, ପୁଣ୍ୟାତ୍ମା, ପାଷଣ୍ଡ, ଧର୍ମୀ, ବିଧର୍ମୀ, ମୂର୍ଖ, କୋବିଦ, ମୂକ, ବାବଦୂକ ସମସ୍ତେ ତାଙ୍କର ପାଖରେ ଉପରେ ସମାନ । କାହାର କରୁଣ ମିନତି ସେଠାରେ ଅଗ୍ରାହ୍ୟ ହୁଏନାହିଁ । ସାମ୍ୟ ଓ ମୈତ୍ରୀର ପତାକା ଉଡ଼େ ନୀଳଚକ୍ର ଉପରେ ଫରଫର ହୋଇ । କିନ୍ତୁ ବାସ୍ତବ ଜୀବନ କ୍ଷେତ୍ରରେ ଏହି ସମାନତା କାହିଁ ? କେଉଁଠି କମିଟି ବାଛି ବାଛି ନଜର ପୁଅ, ପୁରୁଷଙ୍କୁ ଅଣ୍ଡିରେ ପୁରଯାଉଛି, ଅନ୍ୟମାନଙ୍କ ପାଇଁ ଦ୍ୱାର ବନ୍ଦ କରି ଦିଆଯାଉଛି । ନୋହିଲେ କେଉଁଠି କମିଟି ଟଙ୍କାର ମାପୁଣି କାଠିରେ ଯୋଗ୍ୟ ତାକୁ ମାପି ଦିଆଯାଉଛି । ଜଣେଇ ଦିଆଯାଉଛି ଏକ ପ୍ରକାର ଅମ୍ଳ-ମଧୁର ସତ୍ୟ 'ତମର— ବୟସ ଗଡ଼ିଗଲାଣି କମ୍ବା ତମେ ଇଣ୍ଟରଭ୍ୟୁରେ ଭଲ କଲ ନାହିଁ ।' ବାଛ-ବିଚାର, ପାତର ଅନ୍ତର, ପ୍ରିୟାପ୍ରୀତି ତୋଷଣ-ପୋଷଣ ସବୁ ଚାଲିଛି ନିର୍ବିକାର ଭାବରେ । ହୁଏତ ଏହାର ଭିତରେ ଦିନେ ଜଣାପଡ଼ିବ—ପିଲାର ବୟସ ବଢ଼ିଗଲାଣି, ସେ ଆଉ ଚାକିରି ପାଇଁ ଯୋଗ୍ୟ ନୁହେଁ । ଏବେ ନୁହେଁ କି କେବେ ବି ହୋଇ ପାରିବ ନାହିଁ । ବିଶ୍ୱ-ବିଦ୍ୟାଳୟର ଡିଗ୍ରୀ କାଗଜ ଉପରେ ଉଇହୁଙ୍କା ହୋଇଗଲେ ବି କେହି ଆପତ୍ତି କରିବେ ନାହିଁ । ଥାନାବାବୁ ସେ'ପରଜମିନ୍ ତଦନ୍ତ କରିବେ ନାହିଁ, ସମବେଦନା ଜଣାଇବେ

ନାହିଁ । ବାଲ୍ୟ ଓ କୈଶୋରର ଦିନ ଗୁଡ଼ିକ କଟାଇଲା ବେଳେ ପିଲ୍ ପଣ୍ଡା କେବେ-ହେଲେ ଏହି ସମସ୍ୟାର ମୁହଁ ସୁଦ୍ଧା କଳ୍ପନା କରିପାରି ନ ଥିଲା କି ସ୍ମୃତି ଭିତର ଭାସି ଭାସି ଲାଗୁ ନ ଥିଲା ।

ପରିବାର ମଧ୍ୟରେ ସ୍ତ୍ରୀ ସ୍ୱାମୀ ପାଇଁ, ସ୍ୱାମୀ ସ୍ତ୍ରୀ ପାଇଁ ଓ ଉଭୟେ ସନ୍ତାନ ପାଇଁ ଜୀବନ ଯାପନ କରନ୍ତି । ଏଣୁ ସନ୍ତାନ ନିଜର ପିତାମାତାଙ୍କ ପ୍ରତି ମଧ୍ୟ କର୍ତ୍ତବ୍ୟ ପାଳନ କରେ । ସେହି ଦୃଷ୍ଟିରୁ ପିଲ୍ ପଣ୍ଡା ନିଜ ସମ୍ବନ୍ଧରେ ଓ ନିଜର ବାପା ସମ୍ବନ୍ଧରେ ମୋଟା-ମୋଟି ବର୍ଣ୍ଣନା ଶେଷ କରି ମାଆର କଥା କହିବାକୁ ଲାଗିଲା ।

ଏହି ମାଆ ତାଙ୍କ ନଥିଲା ସଂସାରର ମଧ୍ୟ-ମଣି । ସେ ନ ଥିଲେ ହୁଏତ ସଂସାର ଉଚ୍ଛନ୍ନ ହୋଇ ଯାଆନ୍ତାଣି । ମାଆ ତାର ସ୍ୱଭାବର ବଳିଷ୍ଠତା ମୁହୂର୍ତ୍ତରେ ସ୍ୱାମୀଙ୍କୁ ବାହାରେ ସ୍ତ୍ରୀ ଆଗ୍ରହର, ଲୋକାଗ୍ରହର ଓ ଦେଶାଗ୍ରହକୁ ପଛକୁ ପକାଇ । ସାରାଦିନ ଦିଅଁ ଦେବତାଙ୍କ ସେବା, ଘର ଗୋଟାକର ଜଞ୍ଜାଳର ଘୂରିଣିଆ ଭିତରେ ଉଦ୍ୱେଗ ରହିଛି । ସେଥିରେ ହିଁ ସେ ଘୋରଣା ଭଳି ଘୋରି ହେଉଥାଏ, ପେଷଣା ଭଳି ପେଷି ହେଉଥାଏ । ପାଟି ଖଣ୍ଡିକ ଉଚ୍ଚାରଣ କରିବାର କେହି ଶୁଣି ନାହାନ୍ତି । ଯେଉଁ କଥା ମନକୁ ନ ପାଏ, ସେଥିପାଇଁ ପଡ଼ିଏ ଗୁଁ ଗୁଁ ହୁଏ ସିନା, ଅନ୍ୟ ମାଇପଙ୍କ ଭଳି ଝାଙ୍କ ଛୁଣ୍ଡାଇ ଅଣ୍ଟାରେ ଲୁଗା ଭିଡ଼ ଦେଇ କଳି କରେ ନାହିଁ । ପଣ୍ଡାଘରକୁ ବୋହୂ ହୋଇ ଆସିଲା ଦିନୁ ସେ ଖୁବ୍ ଅନୁଗତ ଓ ସଦା ତତ୍ପର । ଘର ଭିତରେ କାମ କରୁଥାଏ ଶବ୍ଦହୀନ ଭାବରେ, ଅଥଚ ତା'ର ପ୍ରତ୍ୟେକଟି କର୍ମ ଜୀବନ୍ତ, ଶାନ୍ତ ଓ ଗତିମାନ୍ । ବୋହୂ ହୋଇ ଆସିଲା ଦିନଠାରୁ ଅନ୍ତଃପୁରଶାଳାରୁ ରୋଷାଇଶାଳା ପର୍ଯ୍ୟନ୍ତ ଏହି ଗତି । ସନ୍ତାନ ପାଳନ ଓ ସ୍ୱାମୀର ପରିଚର୍ଯ୍ୟା ହେଉଛି ପ୍ରଧାନ ସାଂସାରିକ କର୍ମ । ପ୍ରଚଳିତ ସାମାଜିକ ମୂଲ୍ୟବୋଧ ଏବେ ତାର ସେହି ମୁଖା ଖୋଲି ଦେଇଛି । ସେ କାଳର ସେହି ମନ, ସେହି ହୃଦୟ, ସେହି ପ୍ରାଣ ଅବିକଳ ସେହିଭଳି ଆଉ ରହିନାହିଁ କି ସେ ଚେହେରା, ସେ ପ୍ରସାଧନ ଓ ସେ ପରିଧେୟ ନାହିଁ । ପିଲାଏ ବଡ଼ ହୋଇଗଲା ପରେ ନିଜ ନିଜ ଧନ୍ଦାରେ ବ୍ୟସ୍ତ । ଘରେ କେବଳ ଦୁଇ ପ୍ରାଣୀ—ସେ ଆଉ ତାର ସ୍ୱାମୀ । ପିଲା କେଉଁଦିନ ଥାଏ, କେଉଁଦିନ ନ ଥାଏ । ବାଳ-ପାଚ ଆସିଲାଣି, ମୁହଁରେ ବଳି ରେଖା ସୁସ୍ପଷ୍ଟ, ପାନଖିଆ ଦାନ୍ତଗୁଡ଼ା କଳାଖସରା । ବୟସ ଗଡ଼ିଗଲା ପରେ ସ୍ୱାମୀଙ୍କୁ ବାହାରିଲେ କେହି ସନ୍ଦେହ କରିବାର ଅବକାଶ ନ ଥାଏ, କରନ୍ତି ନାହିଁ ମଧ୍ୟ । ଭୟରେ ସନ୍ତ୍ରସ୍ତ ହେବାର କାରଣ ନାହିଁ । ଯେତେବେଳେ ଚତୁର୍ଦ୍ଦିଗ ନିସ୍ତବ୍ଧ, ସମସ୍ତେ ଯେତେବେଳେ ନିଦ୍ରାର କୋମଳ ସ୍ପର୍ଶରେ ଅଚେତନ, ଯେତେବେଳେ ସେ ସ୍ୱାମୀଙ୍କୁ ବାହାରେ ଓ ବାହାରେ ହାତରେ ଧରି ଗୋଟିଏ ଗ୍ଲେଟିଆ ପିତ୍ତଳ ତାଳ । ହଠାତ୍ ଦେଖିଦେଲେ ଯିମିତି ମନରେ ସହଜରେ ଧାରଣା ଜନ୍ମିବ ଯେ 'ପଣ୍ଡିଆଣୀ ବୁଢ଼ୀ ବାହାର ପାଣିକୁ ବାହାରିଛି ।'

କଥାଟା କିନ୍ତୁ ଭିନ୍ନ ପ୍ରକାରର । ସେଉଁ ସବୁ ଗାଈ ସାଧାରଣତଃ ଘରକୁ ନ ଯାଇ ରାଜଦାଣ୍ଡ ଉପରେ କିମ୍ବା ଖୋଲା ପଡ଼ିଆ ଉପରେ ଶୋଇରହି ନିର୍ବିକାର ଭାବେ ପାକୁଳି କରୁଥାନ୍ତି, ପିଲାର ମାଆ ସେହିମାନଙ୍କୁ ଉଠାଏ ଆଗ୍ରହର ସହିତ । ଟିକିଏ ଇତଃସ୍ତତ ହୋଇ ଓର ଉଣ୍ଡେ । ସେହିମାନଙ୍କ ତେରରେ ହାତ ମାରି କାଣ୍ଡେ ଦୁଇକାଣ୍ଡେ ଖୀର ଟାଣି ଆଣେ । କେଉଁଠୁ ପାଏ ମେଞ୍ଚାଏ, ନ ହେଲେ କେଉଁଠୁ ପାଏ କେଞ୍ଚାଏ । ଗୋଟାଏ ଅଧେ ନାତ ଖାଇବାର ସମ୍ଭାବନାକୁ ଏଡ଼ାଇ ଯାଇହୁଏ ନାହିଁ । ତଥାପି ଏହା ହେଉଛି ଦୁର୍ଦ୍ଦିନରେ ଏକପ୍ରକାର ସଫଳତାର ଗୃହକାର୍ଯ୍ୟ—ସୁପରିକଳ୍ପିତ ଗୃହିଣୀପଣିଆର ଉଜ୍ଜ୍ୱଳ ଉଦାହରଣ । ଦୁର୍ମୂଲ୍ୟ ସୁଯୋଗ, ବସ୍ତୁସ୍ତରର କୁଶଳତା । ଘରକୁ ଫେରିଲା ବେଳକୁ ଗ୍ଲେଟ ଗ୍ଲାସଟି ପ୍ରାୟ ଖାଣ୍ଟି ଖୀରରେ ପୂର୍ଣ୍ଣ ହୋଇ ଯାଇଥାଏ । ଏଥିପାଇଁ ତାର ସାହସ, ଦୃଢ଼ତା, ବୁଦ୍ଧିମତ୍ତା ଓ ଅଶିକ୍ଷିତ ପଟୁତାକୁ ପ୍ରଶଂସା କରିପାଇପାରେ । ଜୀବନଟା ଧୀରେ ଧୀରେ ଶୁଷ୍କ ଓ ନୀରସ ହୋଇ ଗଲା ପରେ ଏ କାମ ପାଇଁ ସେ ବିଶେଷ ବିବ୍ରତ ହୁଏନାହିଁ, ବରଂ ତାହାକୁ ପାଗଳପଣିଆ ବୋଲି ସେ ଧରିନେଇଛି । ଧରିନେଇଛି ବଞ୍ଚି ରହିବା ପାଇଁ ସମ୍ପୂର୍ଣ୍ଣ ଅଭିନବ ଶକ୍ତି ଓ ସୁଆଦ । ଯେଉଁଠି ନୀତି-ନିୟମ ନିର୍ଦ୍ଦିଷ୍ଟ ଭାବରେ କାମ କରେନାହିଁ, ସେଠି କାମ କରେ କେବଳ ଏହି ପାଗଳାମି ପଣିଆ । ଏହା ମଧ୍ୟରେ ଯେ ପାପବୋଧର କ୍ଷୀଣସ୍ରୋତସ୍ୱା ଅନ୍ତଃସଲିଳ ଧାରା ପ୍ରବାହିତ, ତାହା ବୁଝି ମଧ୍ୟ ବୁଝିବାକୁ ଆଗ୍ରହୀ ହୁଏନାହିଁ । ଏ ସଂସାରରୁ ତ ଧର୍ମ-କର୍ମ ସବୁ ଲୋପ ପାଇ ଗଲାଣି କହିଲେ ଚଳେ ।

କଷ୍ଟ୍ ଏକାଉଣ୍ଟାନ୍‌ସି, ଆଇ.ଏ.ଏସ୍. ପ୍ରଭୃତି ପରୀକ୍ଷା ଗୋଟାଏ ରନ୍‌ସ୍‌ରେ ପାଶ୍ କରିବା ଯେଉଁପରି ସହଜ ବ୍ୟାପାର ନୁହେଁ, ସେହିପରି ଅପରାଧୀଠାରୁ ମୂଳ କଥାର ଖିଅ ଆଦାୟ କରିବା ସହଜସାଧ୍ୟ ନୁହେଁ । ତଥାପି ଥାନାବାବୁଙ୍କର ପ୍ରବଳ ପୌରୁଷ ଓ ଅଦ୍‌ଭୁତ ବ୍ୟକ୍ତିତ୍ୱ ଯୋଗୁଁ ହେଉ କିମ୍ବା ପିଲି ପଣ୍ଡାର ସହଜାତ ସହଯୋଗ ପ୍ରବୃତ୍ତି ଯୋଗୁଁ ହେଉ, ସେ ଉବୁଡ଼ା ପାଣିମାଠିଆ ଭଳି ସମାଜର ଯେଉଁ ବିଚିତ୍ର ଅନୁଭୂତି କ୍ଷିପ୍ରତାର ସହିତ ଢାଳିଦେଇ ଯାଉଥାଏ, ତାହା ତାଙ୍କ ମନରେ ଭାବାନ୍ତର ଜାଗ୍ରତ କରି ପାରିଲା କି ନାହିଁ ଜାଣି ହେଲାନାହିଁ; ମାତ୍ର ମୋ ମନ ଭିତରେ ପଥରରେ ଗାର ଭଳି ଖୋଳି ହୋଇଗଲା । ଏହା ତ ଥାନାରେ ଜଣେ ଅପରାଧୀର ବୟାନ କିମ୍ବା ସ୍ୱୀକାରୋକ୍ତି ନୁହେଁ, ଏହା ଏକ ଆଗ୍ନେୟ ଗିରିର ଗଳିତ ଲାଭାର ଉଦ୍‌ଗୀରଣ । ପଲ୍ଲୀ ସମାଜରେ ବ୍ୟାପୀ ରହିଥିବା ପଚମାନ ଦୂଷିତ ବ୍ରଣର ଗଣ୍ଡପୂଜ ନିଃସରଣ ।

ଅର୍ଦ୍ଧମୁଦ୍ରିତ ଆଖିକୁ ଭଲ ଭାବରେ ବିସ୍ଫାରିତ କରି ଲକ୍ଷ୍ୟ କଲି, ବର୍ଷା ବନ୍ଦ ହୋଇ ଯାଇଛି, ଅଥଚ ଆଲକାତରା ଢଳା ରାସ୍ତାର ନିଘଞ୍ଚ ଓଦାଭାବ ଆଦୌ କଟିନାହିଁ । ତଥାପି ନିଦାରୁଣ ମସୃଣ ଖରା ପଡ଼ି ଆସୁଛି । ଗଛପତ୍ରରୁ ବୁନ୍ଦା ବୁନ୍ଦା ପାଣି ଖସିବା ବନ୍ଦ

ହୋଇନାହିଁ । ବୁଲାଗୋରୁ ଓ କୁକୁରମାନେ ବୁଲାଚଲା ଆରମ୍ଭ କରି ଦେଇଛନ୍ତି । ମୋର ପରିବାପଟିରେ ଭରି ବ୍ୟାଗଟି ଉଠାଇ ମୁଁ ଆନାବାବୁଙ୍କ ସମ୍ମୁଖରୁ ବିଦାୟ ନେଲି । ସୌଜନ୍ୟତା ଦୃଷ୍ଟିରୁ ଗୋଡ଼ କାଢ଼ିବା ପୂର୍ବରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଇଲି । ପଛରୁ ସେ ନିର୍ବିକାର ଓ ନିର୍ଲିପ୍ତ ଭାବେ କହୁଥିବାର ଶୁଣାଗଲା—"ବିପଦ ଆପଦରେ ଲୋକଙ୍କୁ ସାହାଯ୍ୟ କରିବା ହେଉଛି ଆମର ପ୍ରଧାନ କାମ । ଆମର ସେବା ହେଉଛି ଆକାଶ ଭଳି ନିର୍ମଳ ଓ ବିଶାଳ ।

ସ୍ଫୀତବକ୍ଷ ଆନାବାବୁଙ୍କ କଥାଠାରୁ ପିଲି ବେଣ୍ଟାର ଦେଇଥିବା ହୃଦୟ ଅଥଚ ଅକପଟ ସ୍ୱୀକାରୋକ୍ତି ମୋ ମନରେ ଅଧିକ ଆଲୋଡ଼ନ ସୃଷ୍ଟି କରିଥିଲା । ସତେ ଯେମିତି ତାହା ମଧ୍ୟରେ ଖଣ୍ଡେ ଦୃଢ଼ ଇସ୍ପାତ ରହିଛି, ରହିଛି ପ୍ରବଳ ପ୍ରତିରୋଧ ଶକ୍ତି । ତଥାପି ଅଭାବ ଅନଟନ ସେମାନଙ୍କର ବିବେକର ପ୍ରତ୍ୟେକ କୋଣ ଅନୁକୋଣରେ ପ୍ରବେଶ କରି ମଣିଷର ବିଚାର ବୁଦ୍ଧି, ଦାୟିତ୍ୱବୋଧ, ଚରିତ୍ର-ଶୀଳତା, ସତ୍ୟ-ନିଷ୍ଠା ଆଦିର ମୂଲ୍ୟ-ବୋଧକୁ ନଷ୍ଟକରି ଦେଇଛି । ବାପ, ପୁଅ ଓ ମାଆ ସେମାନଙ୍କର ଅନାଗତ ଭବିଷ୍ୟତ ପାଇଁ ପ୍ରଚଳିତ ସମାଜ ମଧ୍ୟରେ ଥାଇଁ ଯେଉଁ ଘୃଣା ଓ ଜଘନ୍ୟ ବୃତ୍ତିକୁ ଧୀରେ ଧୀରେ ଗ୍ରହଣ କରି ନେଇଛନ୍ତି; ମୋର ଏତେ କାଳର ଅଭିଜ୍ଞତା ଭିତରେ ସିମିତ ମନେ ହେଲା ତାହା ବିଶେଷ ତାତ୍ପର୍ଯ୍ୟ ପୂର୍ଣ୍ଣ । ଜୀବନ ଧାରଣର ଏହି ଅଭିନବ ପନ୍ଥା ହେଉଛି ଶିକ୍ଷିତ, ଅହଂକାରୀ, ବିବେକବାନ ପ୍ରତି ଏକ ଆହ୍ୱାନ; ସାମାଜିକ ସ୍ୱାର୍ଥ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ବିସ୍ୱର୍ଯ୍ୟ । ଯେଉଁଠି ଭଲକାମ କରି ହୁଏନାହିଁ, ସେଠାରେ ମନ୍ଦ କାମ ପାଇଁ ସାହାଣ ମେଳି । ପିଲି ପଣ୍ଡା ପରିବାରର ଏହି ସମସ୍ୟାକୁ ସମ୍ୟକ ଅନୁଧ୍ୟାନ କରି ସେମାନଙ୍କୁ କୌଣସି ପ୍ରକାର ସାହାଯ୍ୟ କରି ମାନସିକ ଦ୍ୱନ୍ଦ୍ୱ, ହୀନମନ୍ୟତା, ଗ୍ଲାନି, ଦୁଶ୍ଚିନ୍ତା ଓ ହତାଶା ମଧ୍ୟରୁ ଟାଣିଆଣି ସମାଜରେ ସୁସ୍ଥ ପରମ୍ପରାର ରକ୍ଷଣାବେକ୍ଷଣ ଦିଗରେ ଦକ୍ଷ ଓ ପ୍ରବୀଣ ଆନାବାବୁଙ୍କର କୌଣସି ପ୍ରକାର କର୍ତ୍ତବ୍ୟ ରହିଛି କି ? ଯଦି ରହିଛି, ତାର ସଜ୍ଞା ନିର୍ଣ୍ଣୟ ନିମନ୍ତେ ସେ ସଚେତନ କି ? ତାହାହେଲେ ମର୍ମଦାହୀ ଦୁଶ୍ଚିନ୍ତା ଓ ବିଷଣ୍ଣତାରୁ ମୁକ୍ତି ମିଳିଯାଆନ୍ତା, ସର୍ବନାଶୀ ସାମାଜିକ ବ୍ୟାଧିକୁ ନିର୍ମୂଳ କରିଯାଇ ପାରନ୍ତା ।

('ଅକ୍ଷପାଦ'ର ପୂଜା ବିଶେଷାଙ୍କ ୨ୟ ବର୍ଷ, ୪ର୍ଥ ସଂଖ୍ୟାରେ ପ୍ରକାଶିତ)



# ସମବାୟ ଭିକ୍ଷୁକଟିଏ

ଆପଣମାନେ ଶୁଣିଲେ କାନରେ ହାତ ଦେବେ ଯେ ଆମ ସରକାର କେବଳ କେତେକ ଅଫିସରଙ୍କୁ ପୋଷିବା ପାଇଁ ନାନା ଆଳ ଦେଖାଇ କେତେଗୁଡ଼ିଏ ତାଲିମ-ପୀଠ, ତାଲିମ କେନ୍ଦ୍ର, ତାଲିମ ଶିବିର ସୃଷ୍ଟି କରୁଛନ୍ତି ବୋଲି ଲୋକମାନେ ଲୁହାଲୁହି ହେଉଛନ୍ତି । ଲୋକଙ୍କ ତୁଣ୍ଡରେ ଆଜିକାଲି ବାଡ଼-ବତା ନାହିଁ । ତେଣୁ ସେମାନେ ନଜର ଦେଖାଇ କହୁଛନ୍ତି ଗ୍ରାମ ସେବିକା ତାଲିମ ଶିବିର, ସମବାୟ ଅଫିସର ତାଲିମ-କେନ୍ଦ୍ର, ଅଙ୍ଗନବାଡ଼ି ଅଙ୍ଗନା ପ୍ରଶିକ୍ଷଣ ପୀଠିକା, ପରିବାର ନିୟନ୍ତ୍ରଣ ତାଲିମ କେନ୍ଦ୍ର, ଶିକ୍ଷା ପରିଦର୍ଶକ ପ୍ରବେଦନା ଶାଳା ଇତ୍ୟାଦି ଇତ୍ୟାଦି ସମ୍ବନ୍ଧରେ ବହୁତ ବଡ଼ ବଡ଼ କଥା । ଏହି ସବୁ ତାଲିମ ଶିବିର, ତାଲିମ କେନ୍ଦ୍ର କିମ୍ବା ପ୍ରବେଦନା ଶାଳା ଗୁଡ଼ିକରେ ଗୁଡ଼ିଏ କର୍ମଚାରୀ ପୋଷା ହୁଅନ୍ତି ହାତୀ ପୋଷା ହେଲା ଭଳି । ଫାଇଲ ସୃଷ୍ଟି ହୁଏ ଦୈନିକ । ଯୋଜନା ଅନୁସାରେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟ ହୁଏ ସବୁଠି ଅଲକ୍ଷ୍ୟରେ ରାଜକୋଷରୁ । ଯାହା ଫଳ ମିଳେ, ତାହା ସମ୍ବନ୍ଧରେ ବିଶ୍ଳେଷଣ ନ କରିବା ହିଁ ଭଲ । ଦେଶବାସୀ ତାହା ଅଙ୍ଗେ ଅଙ୍ଗେ ଲିଭାଉଛନ୍ତି । କେବଳ ସରକାରୀ ଉଦ୍ୟମରେ କାହିଁକି ଯେ ଏକ ରାଜନୈତିକ ନେତା ତାଲିମକେନ୍ଦ୍ର କିମ୍ବା ସ୍ୱେଚ୍ଛା ସେବାପାଇଁ ପ୍ରବେଦନ ସଂସ୍ଥା ଗଢ଼ା ନ ହୋଇଛି, ତାହା ହିଁ ହେଉଛି ଏକମାତ୍ର ଆଶ୍ଚର୍ଯ୍ୟର ବିଷୟ । ଅବଶ୍ୟ ବେସରକାରୀ ଉଦ୍ୟମରେ କଟକର ବିହାରୀବାଗ ଠାରେ ଏକଦା ଏହିପରି ଏକ ତାଲିମ-କେନ୍ଦ୍ର ଗଢ଼ା ଯାଇଥିଲା ଓ ଉତ୍କଳ କେଶରୀ ମହତାବଜୀ ଏ ଦିଗରେ ଯଶସ୍ୱୀ ହୋଇ ପାରିଥିଲେ । ଲୋକଙ୍କୁ ଦେଖାଇ ଦେଇଥିଲେ ଯେ ପୁଞ୍ଜାକୁ ପୁଞ୍ଜା ଟୋକା ରାସ୍ତା କଡ଼ରୁ ଗୋଟାଇ ଆଣି ଉଚିତ ତାଲିମ ଦେଇ ଓଡ଼ିଶାର ମଉଡ଼ମଣି କରାଯାଇପାରେ ।

ଛାଡ଼ ସେ କଥା । ଏଭଳି ଗୌରଚନ୍ଦ୍ରିକାର ପ୍ରଧାନ ଉଦ୍ଦେଶ୍ୟ ହେଉଛି, ରାଜଧାନୀର ଆଠ ନମ୍ବର ଇଉନିଟଠାରେ ବିସ୍ତୀର୍ଣ୍ଣ ନସ୍ତ୍ରୀପ ଅଞ୍ଚଳରେ ଗୋଷ୍ଠୀଉନ୍ନୟନ ବିଭାଗ ପକ୍ଷରୁ ଏକ ଅଫିସର ପ୍ରଶିକ୍ଷଣ କେନ୍ଦ୍ର ରହିଛି ଓ ତାହା ଦୀର୍ଘକାଳରୁ ହୁଏତ ରହିଆସିଛି । ଏହି କେନ୍ଦ୍ରସ୍ଥିତ ଛାତ୍ରାବାସର ପଇଁତିରିଶ ନମ୍ବର କୋଠରୀରେ କୌଣସି ଏକ କାରଣରୁ ତିନିଜଣ ବ୍ୟକ୍ତି ଏକାଠି ହୋଇ ଗୋଟିଏ ସମବାୟ ଭିକ୍ଷୁକ ତିଆରି

କରି ପାରିଛନ୍ତି କହିଲେ ଅତ୍ୟୁକ୍ତି ହେବନାହିଁ । ଏମାନଙ୍କର କେହି ରାମସ୍ୱ ନାହିଁ, ନାହିଁ ଅନୁଚର, ପାର୍ଶ୍ୱଚର କିମ୍ବା ଗୁଣ୍ଡାଚର । ଏଣୁ ଏମାନେ ଯାହା ଦେଖନ୍ତି, ଯାହା ଶୁଣନ୍ତି, ଯାହା କରନ୍ତି, ତାହା ନିଜର ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ । ରାଜଧାନୀର ମଧ୍ୟଚକ୍ରରେ ଏମାନେ ହେଲେ ଏକପ୍ରକାର ଉଦ୍‌ବୃତ୍ତ, ଅନାହୂତ ଓ ଅବାଞ୍ଛିତ ଅତିଥି । ଏମାନଙ୍କର ବାସ ଉପଯୋଗୀ ବୈଧ ସ୍ଥାନର ଅଭାବ । ହୋଟେଲ, ଭଡ଼ା-ଘର କିମ୍ବା ମେସ୍‌ରେ ରହିବାର ସମ୍ବଳ ଶୂନ୍ୟ । ଅଗତ୍ୟା ଏମାନେ ଏହିଠାରେ ଶେଷକୁ ଆସ୍ଥାନ ଜମାଇ ପାରିଛନ୍ତି । ଏମାନଙ୍କର ଭାବ ବିନିମୟ ଓ ସହଯୋଗି-ତାର ମିଳନ ଭୂମି ହେଉଛି ଏହି ପଚିଶ ନମ୍ବର ପ୍ରକୋଷ୍ଠ । ନିଭୃତର ଭୂମି ରୂପ ଧରି ନିଆଯାଇପାରେ ଜଣେ ଉଦ୍ୟମଶୀଳ ବେକାର ଗ୍ରାଜୁଏଟଙ୍କୁ । ସେହି ଭୂମିକୁ ଆଶ୍ରା କରି ଠିଆ ହୋଇଥିଲେ ଅନ୍ୟ ଦୁଇ ବାହୁ । ଜଣେ ହେଉଛନ୍ତି ବିତାଡ଼ିତ ଅଧ୍ୟାପକ ଓ ଅନ୍ୟ ଜଣେ ହେଉଛନ୍ତି ଅବସର ପ୍ରାପ୍ତ ଅଧକ୍ଷ । ଏହି ଉଭୟ ବାହୁ ଗୋଟିଏ ମୁଣ୍ଡରେ ମିଳିତ ହୋଇ ପାରୁଛନ୍ତି, ଏଣୁ ସମାନ୍ତର ନୁହନ୍ତି ।

କାହାରି ସହିତ କାହାରି ବେଶ-ପୋଷାକ, ଚାଲି-ଚଳଣି, ହାବ-ଭାବ, ଗଠି-ପ୍ରକୃତି, ବଳ-ବୟସର ସମତା ନାହିଁ; ବରଂ ପାର୍ଥକ୍ୟ ରହିଛି ଯଥେଷ୍ଟ । ତଥାପି ଏମାନେ ବଞ୍ଚି-ବାର ଉପକରଣ ସଂଗ୍ରହ କ୍ଷେତ୍ରରେ ଏହି ପାର୍ଥକ୍ୟକୁ ଦେଖନ୍ତି ନାହିଁ ବଡ଼ କରି । ଦିନ-ସାରା ନିଜ ନିଜର ଉଦ୍ଦେଶ୍ୟ ସାଧନ ପାଇଁ ବ୍ୟସ୍ତ ରହନ୍ତି ଏକାଠି ହୁଅନ୍ତି ରାତିରେ । ସୁଖ ଦୁଃଖ ହୁଅନ୍ତି ଓ ଉଚ୍ଚ ଆଶା ପୋଷଣ କରନ୍ତି, ଜଣେ ଅନ୍ୟ ଜଣକୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ବଦ୍ଧ ହୁଅନ୍ତି । କିନ୍ତୁ କେହି କାହାର କୌଣସି ପ୍ରକାର ଉପକାର କରି ପାରନ୍ତି ନାହିଁ, କରିବା ଅବସ୍ଥାରେ ମୁଦ୍ଧା ନ ଥାନ୍ତି । କୈନମାନଙ୍କ ମଧ୍ୟରେ ପଗଡ଼ି ପାଲଟା ବୋଲି ଗୋଟିଏ ପ୍ରଥା ଅଛି । ଜଣେ ଅନ୍ୟ ଜଣଙ୍କର ମୁଣ୍ଡ ପଗଡ଼ି ସହିତ ନିଜ ପଗଡ଼ି ବଦଳ କରିଦିଏ । ଏଥିରେ ବନ୍ଧୁତା ଗାଢ଼ ହୁଏ । ଏମାନଙ୍କର ପଗଡ଼ିର ପ୍ରୟୋ-ଜନ ନାହିଁ । ଏଣୁ ବଦଳ କରିବାର ପ୍ରଶ୍ନ ଉଠୁଛି କୁଆଡ଼ୁ ?

ସମବାହୁ ନିଭୃତର ଭୂମି ରୂପେ ଗୃହୀତ ବେକାର ଗ୍ରାଜୁଏଟଙ୍କର ବସ୍ୱପ ଛବିଶ କି ସତାଇଶ ହେବ । ପ୍ରବଳ ଆକାଂକ୍ଷୀୟ ଜୀବନ ଶକ୍ତି ଓ ଦୁର୍ବଳ ମୂଲ୍ୟବୋଧର ମିଶ୍ର ରୂପ । କୌଣସି ଏକ ଅଖ୍ୟାତ ପଲ୍ଲୀ ଅଞ୍ଚଳରୁ ଆସିଛନ୍ତି । ସାଧାରଣ କୃଷିଜୀବୀ ପରିବାରର ପିଲା, ଯେଉଁମାନେ କି ଦୂର ଭବିଷ୍ୟତ ସମ୍ବନ୍ଧରେ ଭାବିବାକୁ ଅକ୍ଷମ । ମଫସଲ ସ୍କୁଲ ଓ କଲେ-ଜରେ ପାଠ ପଢ଼ି କୌଣସି ପ୍ରକାର ସାଧାରଣ ଭାବରେ ବି.ଏ.ଟା ପାଶ୍‌କରି ସାରିଛନ୍ତି । ତାହାପରେ ଜୀବିକାର ସନ୍ଧାନରେ ଆଗନ୍ତୁକ ମନୋଭାବ ନେଇ ଭାଗ୍ୟ ପରୀକ୍ଷା ପାଇଁ ନିଜ ଶିରରେ ମାଟି ଡାଡ଼ୁଛନ୍ତି ରାଜଧାନୀରେ । ସେଥିପାଇଁ କେତେକ ପରିମାଣରେ ଚଞ୍ଚଳ ସ୍ୱଭାବ । ରାଜଧାନୀର ପରିବେଶ ଓ ପରିସ୍ଥିତି ତାହାଙ୍କୁ ନୂଆ ନୂଆ ମନେ ହେଉଛି ।

ଆକୈଶୋର ଲାଳିତ ସ୍ୱପ୍ନ ଫିକାଳିଆ ଧରି ଯାଉଛି । ସହରସ୍ଥ ସ୍କୁଲ କଲେଜରେ ପାଠପଢ଼ି ବେକାର ହୋଇ ବୁଲୁଥିବା ତାଙ୍କର ବୟସର ଯୁବକମାନଙ୍କ ସହିତ ନିଜକୁ ତଉଲ କରି କେବେ କେବେ ଦେଖୁଛନ୍ତି । ସେମାନେ ତା'ଙ୍କଠାରୁ ମନେ ହେଉଛନ୍ତି ବ୍ଲାକ୍-ଚରୁର, ତୁଳନାତ୍ମକ ଭାବେ ଜ୍ଞାନ ଓ ଜୀବନ ସଂଗ୍ରାମରେ ଯୁଝିଲା ଭଳି ଅମିତ ଶକ୍ତିଧର । ଇଏ ସେମାନଙ୍କ ତୁଳନାରେ ଜ୍ଞାନ ଓ ଗୌରବରେ ନ୍ୟୂନ, ଜୀବନ ଜୀବିକା ପରିପ୍ରେକ୍ଷିରେ ଅନେକଟା ବୋକା ବୋକା ଧରଣର । ଦେହରୁ ଓ ମନରୁ ମଫସଲ ଗନ୍ଧ ଗିବାକୁ ଅତୁର ଅନେକ ବାଙ୍ଗ ଅଛି । ନିଜର ଅଜ୍ଞତାକୁ ଲୁଚାଇ କେଉଁପରି ବିଜ୍ଞତା ପ୍ରକଟିତ କରିବାକୁ ହୁଏ, ଏହା ମଧ୍ୟରେ ତାହା ଆୟତ୍ତ କରିବାକୁ ଆରମ୍ଭ କରିଦେଇଛନ୍ତି ।

ସହରସ୍ଥ ପିଲଙ୍କର ପୁସିଂ ପ୍ରବୃତ୍ତି ଅଛି; ପୁସିଂ ପାଇଁ ଲାଗୁଛି ବ୍ୟାକିଂ । ପୁଣି ବ୍ୟାକିଂ ସହିତ ବ୍ୟାଙ୍କ ବାଲାନ୍‌ସ ମଧ୍ୟ । କୌଣସି ମତେ ସରକାରୀ କମ୍ବା ବେସରକାରୀ ସଂସ୍ଥାରେ ମାତ୍ର ମକଚ ପଶିଯିବା ପାଇଁ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ବ୍ୟାୟାମାଗାରର ସୁଦେହୀ ଯୁବଶକ୍ତି ମଧ୍ୟ ସହାୟ ହୁଅନ୍ତି । ଏଠାରେ ବିବେକର ପ୍ରଶ୍ନ ଉଠେନାହିଁ । ସ୍ୱାର୍ଥର ଅନ୍ୟନାମ ହେଉଛି ଆଜିର ମନୀଷ । ନୀତି ନିର୍ଣ୍ଣୟ କ୍ଷେତ୍ରରେ ସ୍ୱାର୍ଥାନ୍ଧ ମନୀଷ କାମ କରେ ଅମନୀଷ ଭଳି ।

ଟଙ୍କାର ଜାଲ ବିଛାଇ ଦେଇ ହାକିମ ହୁକୁମାଙ୍କୁ କାବୁ କରି ପାରନ୍ତି । ସେମାନଙ୍କ ପାଇଁ ନେପଥ୍ୟସ୍ଥିତ ମାନଙ୍କ ଫୋନ ଉଠେ । ଫୋନରେ ଖୋସାମଦଠାରୁ ଆରମ୍ଭ କରି ଧମକ ପର୍ଯ୍ୟନ୍ତ ଦିଆହୁଏ । ପାରଂପରିକତାର ବିଲୋପ ସାଧନ ପାଇଁ କଥାରେ କଥାରେ ଛୁରୀ ପେଲାପେଲ ନିଧନିଆ ଘଟଣା ହୋଇଯାଏ । ରାଜଧାନୀର ରନ୍ଧ୍ରେ ରନ୍ଧ୍ରେ ସେମାନଙ୍କ ଆଫ୍‌ସନ୍‌ର ପ୍ରଭାବ ଓ ପ୍ରତିପତ୍ତି ଲକ୍ଷ୍ୟ କରାଯାଏ ।

ମଫସଲରୁ ଆମଦାନୀ ହୋଇଥିବା ଅଜ୍ଞାତ କୁଳଶୀଳ ଯୁବକଙ୍କର ଟଙ୍କା ବୁଣି ଦେଇ ଭଲ ସାହସ ବି ନ ଥାଏ । ସେମାନେ ଯେଉଁ ଜଣେ ଦୁଇଜଣ ଲୋକଙ୍କୁ ଚହ୍ନିଥାନ୍ତି, ତାଙ୍କର ଦ୍ୱାରକୁ ଦଉଡ଼ନ୍ତି ବାରମ୍ବାର । ତାଙ୍କ ସହିତ କଥାବାର୍ତ୍ତା କରିବା ପାଇଁ ଟିକେ କେବଳ ସାହସ ଭିଡ଼ନ୍ତି । ଟାଇପ ଶିଖିବା ପାଇଁ ସକାଳେ ଓ ସନ୍ଧ୍ୟାରେ ଅଣନିଶ୍ୱାସୀ ହୋଇ ଦଉଡ଼ନ୍ତି । ବିସସ୍ଥାଣ୍ଡକୁ ବାରମ୍ବାର ଯାଇ ନାନା ପ୍ରକାର ଅଖିଦୁଣିଆ ବ୍ଲାଙ୍କଥ ପାଇଁ ଫର୍ମ କିଣି ଆଣି ଡାକରେ ଦରଖାସ୍ତ ପଠାଇବା ପାଇଁ ଗଭୀର ଭାବରେ ଆଗ୍ରହୀ ହୁଅନ୍ତି । ଇଣ୍ଟରଭ୍ୟୁ ଦେବାକୁ ଦୌଡ଼ନ୍ତି । ପରୀକ୍ଷା ଦେଇ ଆତ୍ମସନ୍ତୋଷ ପାଆନ୍ତି କେତେଦିନ ପାଇଁ, ଶେଷକୁ ଜଣା ପଡ଼େ 'ଅମୁକ ଅମୁକ ଚାକିରି ପାଇଗଲେ ।' ମହାପାପୀମାନେ ମାରିଦେଲା ପରେ ଇଏ ଶୁଖି ରହନ୍ତି ଜଳକା ଭଳି ।

ଯୁବଗଣ ବିଭ୍ରାନ୍ତ, ଅପଯଶ୍ବରର ଶିକାର । ଚାକିରିର ସ୍ୱାଦ ଆସ୍ୱାଦନ ନ କରୁଣୁ ଚରମତମ ବିବାଦୀ ହୋଇ ଦେଖାଦିଏ ବେକାର ଜୀବନର ଅଯାଚିତ ଅପସନ୍ନତା ଓ ବିଷଣ୍ଣତା । ଦିନେ-ଓଳିଏ ମନ ଦୁଃଖ ହୁଏ, କଠୋର ମସୃଣ ମୁହଁ ଶୁଖିଲା ଶୁଖିଲା ଦେଖାଦିଏ । ଆପଣା ଭାଗ୍ୟକୁ ନିନ୍ଦି, ଭଗବାନଙ୍କୁ ଦୋଷ ଦେଇ, ତଳିଆରେ ମୁହଁ ମାଡ଼ି ପଡ଼ି ରହନ୍ତି । ଏହାଙ୍କୁ କୁହାଯାଇପାରେ ଏକପ୍ରକାର ନିଃଶବ୍ଦ ବିପ୍ଳବ ! ପୁଣି ମୂଳ ପନ ଉଠି କାମଦାମ ଆରମ୍ଭ କରନ୍ତି । କ୍ଷୋଭ, ଜଡ଼ତା ଓ ହୀନତାବୋଧ କଟିଯାଏ ଆପେ ଆପେ । ପୂର୍ବଭଳି ପୂର୍ଣ୍ଣ ଉତ୍ସାହରେ ସାଇକେଲ ଚଢ଼ି ଟାଇପ୍ ଶିଖିବାକୁ ଯାଆନ୍ତି । ପୁଣି ସେମାନେ ଦେହ ଓ ମନର ସମସ୍ତ ଶକ୍ତିକୁ ଠୁଳ କରି ପଢ଼ାପଢ଼ି ଆରମ୍ଭ କରି ଦିଅନ୍ତି । ମନ ମଧ୍ୟରେ କୌଣସି ପ୍ରକାର ବିଷାଦର ଚିହ୍ନ ରହେନାହିଁ; ବରଂ ଭବିଷ୍ୟତର ଉନ୍ନତି କଳ୍ପେ ପରୀକ୍ଷା ଦେବା ପାଇଁ ଇଣ୍ଟରଭ୍ୟୁରେ ଯୋଗ ଦେବା ପାଇଁ କଡ଼ା ଇସ୍ତ୍ରୀକରା ପ୍ୟାଣ୍ଟ ସାର୍ଟ ପିନ୍ଧି ବାହାରି ପଡ଼ନ୍ତି । ସହସ୍ର ଜୀବନର ଅନ୍ତରକୁ ମନ୍ଥନ କରି ଯେଉଁ ସାରତତ୍ତ୍ୱ ଆହରଣ କରନ୍ତି; ସେହି ଅନୁସାରେ ଆପ୍ତବାଣୀ ଉଚ୍ଚାରଣ କରନ୍ତି—'ପୁରୁଷର ଭାଗ୍ୟ ପଥର ତଳେ, ଦିନେ ନା ଦିନେ ଭାଗ୍ୟ ଫେରିବ ।'

ଭୂମି ଉପରେ ଠିଆ ହୋଇଥିବା ଅନ୍ୟ ବୃକ୍ଷବାନ୍ ମଧ୍ୟରୁ ଯେଉଁ ଜଣକ ହେଉ-ଛନ୍ତି ବିତାଡ଼ିତ ଅଧ୍ୟାପକ, ତାଙ୍କର ଜନ୍ମସ୍ଥାନ ହେଉଛି ପଶ୍ଚିମ ଓଡ଼ିଶାର ମଫସଲ ଅଞ୍ଚଳରେ । ବୟସ୍କର ରେଖା ଫୁଟିଉଠିଛି ମୁହଁରେ, ଆଖିରେ; ତଥାପି ଅନେକ ପରି-ମାଣରେ ସ୍ମାର୍ଟ ଦେଖାଯାଆନ୍ତି । ରାଜଧାନୀର ପ୍ରତ୍ୟେକ ମଣିଷକୁ ସେ ଦେଖନ୍ତି ସନ୍ଦେହ ଚକ୍ଷୁରେ । ସକାଳୁ ରାତି ପର୍ଯ୍ୟନ୍ତ ଅନବରତ ରାଜଧାନୀରୁ କଟକକୁ ବସ୍ ଚଳାଚଳର ସୁବନ୍ଦୋବସ୍ତ ଥିବାରୁ ସେ ରାଜଧାନୀର ପ୍ରତ୍ୟେକ ଲୋକଙ୍କୁ କଥା କଥାକେ କଟକୀ ବୋଲି ଠଉର କରନ୍ତି । କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ କେତେବେଳେ କଟକୀଙ୍କର ଠକା-ମିରେ ପଡ଼ିଯିବେ ବୋଲି ସତର୍କ ରହନ୍ତି । ଯେଉଁ ଅଳ୍ପ କେତେଜଣ ପଶ୍ଚିମ ଓଡ଼ିଶା-ବାସୀଙ୍କୁ ଏଠାରେ ଚିହ୍ନିଛନ୍ତି, ସେହିମାନଙ୍କ ଘରକୁ କେବଳ କେବେ କମିତ ଯାଆନ୍ତି । ସେହିମାନଙ୍କ ସହିତ କଥାବାର୍ତ୍ତା କରନ୍ତି ମନ ଖୋଲି କରି ।

ପ୍ରଥମେ କେତେକ ବନ୍ଧୁଙ୍କ ସହିତ ସରକାରୀ କଲେଜରେ ଆଡ୍‌ହକ ଅଧ୍ୟାପକ ଚାକିରିଟିଏ ସେ ପାଇଥିଲେ । ଏହି ଚାକିରିଟି ପାଇବା ପାଇଁ ତାହାଙ୍କୁ ବାରମ୍ବାର ଡେପୁଟି ସେକ୍ରେଟାରୀଙ୍କୁ ଦେଖା କରିବାକୁ ପଡ଼ିଥିଲା । ଦଣ୍ଡବତ କରିବାକୁ ହୋଇ-ଥିଲା ସକାଳେ ଓ ସଂଧ୍ୟାରେ ଦୁଇବେଳା । ଅତି ଗୁଣାରେ ପାଞ୍ଚହଜାର ପର୍ଯ୍ୟନ୍ତ ଟଙ୍କା ଦର୍ଶନୀ ମଧ୍ୟ ଦିଆଯାଇଥିଲା । ଡେପୁଟି ସେକ୍ରେଟାରୀ ତାଙ୍କ ସହଧର୍ମିଣୀଙ୍କ ଉଦ୍ଦେଶ୍ୟରେ ସିଂହଆବା ଭଳି ପ୍ରକାଣ୍ଡ ଲୋମଶ ହାତଟାକୁ ଲମ୍ବାଇ ଦେଇ ଶୁଣାଇ ଶୁଣାଇ କହିଥିଲେ— "ଆଡ୍‌ହକ ଅଧ୍ୟାପକ ଚାକିରି କେବଳ ମାତ୍ର ବର୍ଷକ ପାଇଁ । କେତେବା ପାଇବେ, କେତେଦୂର ଆଉ ଦୟା କଥା କରିବେ ? ଯଥେଷ୍ଟ ହେଲାଣି, ଏଥର ଯାଆନ୍ତୁ ।"

ଡେପୁଟି ସେକ୍ରେଟାରୀଙ୍କର ବଡ଼୍ ଫାଗତ ନୟନ ଯୁଗଳ ମଧ୍ୟରେ ସେଦିନ ସେ ଦେଖି ପାରିଥିଲେ ଅନାଗତ ଓ ଭବିଷ୍ୟତର ଉଜ୍ଜ୍ୱଳ ଦୃଶ୍ୟ । ଏକ ଅବିସ୍ମରଣୀୟ ପୁଲକରେ ତାଙ୍କର ଭିତର ଓ ବାହାର ଯାଇଥିଲା ଦୋହଲି । ଦେହର ଗୋପନ ଅଂଶରେ ଯେଉଁ ଉଲ୍ଲାସ ଏତେକାଳ ଲୁକାୟିତ ଥିଲା, ଫିଟି ଯାଇଥିଲା ତାହାର ବନ୍ଧନ ।

ପ୍ରଥମ ବର୍ଷର ଚାକିରି । ଅନବଦ୍ୟ ପରିତୃପ୍ତି ମଧ୍ୟରେ ନବୀନ ଜୀବନର ସୂତ୍ରପାତ । ଦୁଇ ହାତମୁଠା ମଝିରେ ଯେଉଁ ଲଫାଫାକୁ ଭିଡ଼ି ଧରିଛନ୍ତି, ସେଥିରେ କେତେ ଧରନ୍ତୁ ସ୍ୱପ୍ନ ଓ କେତେ ଦରନ୍ତୁ ଆକାଙ୍କ୍ଷାର ସୂତା ଗୁଡ଼ାଇ ହୋଇ ରହିଛି, ତାହା କିଏ ଜାଣେ ? ସୂତାର ମୁଣ୍ଡରେ ଯେଉଁ ଚମତ୍କାର ଗଣ୍ଠିଟି ବନ୍ଧା ହୋଇଛି, ତାହା ଏହି ଅଧ୍ୟାପକ ପଦବୀ ଭିନ୍ନ ଆଉ କିଛି ନୁହେଁ । ଦ୍ୱିତୀୟ ବର୍ଷ ବେଳକୁ ଆଉ ପୁନର୍ନିଯୁକ୍ତିର ଚିଠି ଆସିଲା ନାହିଁ । ଅଧ୍ୟକ୍ଷ ମହୋଦୟ ପୁନର୍ନିଯୁକ୍ତି ପାଇଁ ଯେଉଁମାନଙ୍କର ସୁପାରିଶ ପତ୍ର ଯଥା ସମୟରେ ପଠାଇଥିଲେ, ସେମାନଙ୍କର ଆସିଲା; କେବଳ ଆସିଲାନାହିଁ ଏହି ଅଧ୍ୟାପକଜଣଙ୍କର । ଏଣୁ ବ୍ୟସ୍ତ ଓ ବିଚଳିତ ହୋଇ ତାହାଙ୍କୁ କର୍ମସ୍ଥଳୀରୁ ରାଜଧାନୀ ପର୍ଯ୍ୟନ୍ତ ଦୌଡ଼ିବାକୁ ପଡ଼ିଥିଲା । ସେଠାରେ କିରାଣୀବାବୁ ମୁହୂର୍ତ୍ତିକ ପାଇଁ ବକ୍ରହାସ୍ୟ ରେଖା ଫୁଟାଇ କହିଥିଲେ "ଆପଣଙ୍କ ପାଇଁ ସୁପାରିଶ ପତ୍ର ଅଧ୍ୟକ୍ଷଙ୍କ କାର୍ଯ୍ୟାଳୟରୁ ଆସିନାହିଁ । ଆସିଥିଲେ ହୁଏତ ଏକାଠି ଫାଇଲ ଗଢ଼ାହୋଇ ଏକାଥରକେ କାମ ହୋଇଯାଇଥାନ୍ତା । ଏବେ ଯାଆନ୍ତୁ, ଅନ୍ତତଃ ଅଧ୍ୟକ୍ଷଙ୍କଠାରୁ ସୁପାରିଶ ପତ୍ରଟି ଆଣି ଏଠାରେ ହାତେ ହାତେ ପହଞ୍ଚାଇ ଦିଅନ୍ତୁ ।"

ଦିନାସୁମାନ ହତାଶା ମଧ୍ୟରେ ଅଧ୍ୟାପକ ମହାଶୟ ମୁହଁକୁ ଆମ୍ବିଳା କରି ଫେରି ଆସିଥିଲେ କର୍ମକ୍ଷେତ୍ରକୁ । ଅଧ୍ୟକ୍ଷଙ୍କ ଅଫିସ୍‌ରୁ ସଠିକଭାବେ ଜାଣିବାକୁ ପାଇଥିଲେ ଯେ ଅନ୍ୟମାନଙ୍କ ସହିତ ତାଙ୍କର ପୁନର୍ନିଯୁକ୍ତି ପାଇଁ ସୁପାରିଶ ପତ୍ର ନିର୍ଦ୍ଦିଷ୍ଟ ସମୟରେ ପଠାଇ ଦିଆଯାଇଥିଲା । ତଥାପି ଲୁହା ପୋଛି କରି ସେହି ସୁପାରିଶ ପତ୍ରର ଏକକତା ନକଲ ନେଇ ଆସିଥିଲେ ଓ ଦାଖଲ କରିଥିଲେ କିରାଣୀବାବୁଙ୍କ ପାଖରେ । ଯେଉଁପରି ଖୁବରେ ହାତେ ହାତେ କାମ ହୋଇ ପାରିବ, ସେଥିପାଇଁ ଉଚିତ ଦକ୍ଷିଣାର ଅଗ୍ରୀମ ବ୍ୟବସ୍ଥା ପୂରା କରାଇଥିଲେ । ଫାଇଲ ଯାଇଁ ଡେପୁଟି ସେକ୍ରେଟାରୀଙ୍କ ଟେବୁଲରେ ପହଞ୍ଚିଲା ପରେ ନିଜେ ମଧ୍ୟ ତାହାଙ୍କୁ ଅଫିସରେ ଦେଖା କରିଥିଲେ । ବଡ଼ ସରକାରୀ ଚାକିରି । କ୍ଷମତା ଓ ଅର୍ଥର ଅହଂକାର ତାଙ୍କ କଥାବାର୍ତ୍ତାକୁ ବହୁତ ଦିନ ହେଲା ଏପରି ଚଟୁଳ କରାଇଛି, ଯେଉଁଥିରେ ଶିକାର ଆପେ ଆପେ ଆସି ଧରାଦେବ । ସେ ଉପଦେଶ ଛଳରେ କେତେପଦ ବିଶେଷ ଅର୍ଥପୂର୍ଣ୍ଣ କଥା କହିଲେ —"ଚାକିରିଟା ଯେତେଦିନ ପର୍ଯ୍ୟନ୍ତ ସ୍ଥାୟୀ ହୋଇନାହିଁ, ସେ ଦିନ ଯାଏ ମଝିରେ ମଝିରେ ଆସି ଦେଖା କରିବାକୁ ହୁଏ । ତାହା ନ ହେଲେ କାର୍ଯ୍ୟର ବ୍ୟସ୍ତତା ମଧ୍ୟରେ ବୁଡ଼ିରହି ସବୁ କଥା କଣ ସବୁ

ସମସ୍ତରେ ମନେ ପଡ଼ୁଛୁ ? ଆଉ କାହାରି ପାଖକୁ ଯିବା ଆବଶ୍ୟକ ନାହିଁ, କେବଳ ମୋ ନିକଟକୁ ଆସି ଦେଖା କରି ଯାଉଥିଲେ ସବୁ ବ୍ୟବସ୍ଥା ସୁରୁଖୁରୁରେ ହୋଇ ଯାଉଥିବ । ଏଠାରେ ମୁଁ ଗଙ୍ଗାଦ୍ୱାର ଜଗି ବସିଛୁ । ସୁନ ଧଳୀନ୍ ପରିତ୍ୟୈଜ ମାମେକଂ ଶରଣଂ ବ୍ରଜ !"

ଏହି କଥା କେତେପଦ ସହିତ ସତେ ଯିମିତି ଚନ୍ଦନ ବନର ଫୁରୁଫୁରୁ ପବନ ଭଳି ଝରି ପଡ଼ିଲ ଝରି ଝରି ଉତ୍ସାହ ଓ ଉଲ୍ଲାସ ଭରି ଦେଇ । ଆଉ ଗୋଟିଏ ବର୍ଷର ନିଯୁକ୍ତିପତ୍ର ଦେଇ ଆସି ପହଞ୍ଚିଲା ବେଳକୁ ସେହିବର୍ଷର ଅନ୍ୟୂନ ନଅମାସ ଚାକିରି କାଳ ଶେଷହୋଇ ଗଲାଣି । ଅନ୍ୟ ବନ୍ଧୁମାନଙ୍କଠାରୁ କଥା ପ୍ରସଙ୍ଗରେ ବୁଝି ପାରିଥିଲେ ଯେ ପ୍ରତ୍ୟେକ ବର୍ଷର ପୁନର୍ନିଯୁକ୍ତି ପାଇଁ ଅଧ୍ୟକ୍ଷଙ୍କଠାରୁ ସୁପାରିଶ ପତ୍ର ଯିବା ସଙ୍ଗେ ସଙ୍ଗେ ଯାଇ ଡେପୁଟି ସେକ୍ରେଟାରୀଙ୍କୁ ଦେଖାକରି ଆସିବା ବର୍ତ୍ତମାନ କାଳର ଅଭ୍ୟାସ, ବ୍ୟବହାର, ବ୍ୟବହାର ଓ ବିଶ୍ୱାସର ଅନ୍ତର୍ଗତ । ସେହି ଦେଖା ସହିତ ଆଗାମୀ ବର୍ଷ ପାଇଁ ଉଚିତ ପାଉଣା ମଧ୍ୟ ପରିଶୋଧ କରିବାକୁ ହୋଇଥାଏ । ଯେଉଁମାନେ ସେ କାର୍ଯ୍ୟ କରନ୍ତି ନାହିଁ କିମ୍ବା ବେଳକାଳ ଦେଖି ଦେଖା କରିବା ପାଇଁ ସୁଯୋଗ ପାଆନ୍ତି ନାହିଁ, ସେମାନଙ୍କ ପାଇଁ ଆସିଥିବା ସୁପାରିଶ ପତ୍ର ଫାଇଲରୁ ଉଭାନ ହୋଇଯାଏ । ସମସ୍ତ ସମୟରେ ପୁନର୍ନିଯୁକ୍ତି କାଳକୁ ଅଧିକ ପ୍ରଲମ୍ବିତ ନ କରି ଇତି କରାଇ ଦିଆଯାଏ । ନିଜର ପଦାଧିକାର ବଳରେ ବଡ଼ ବଡ଼ କର୍ମଚାରୀମାନେ ଯାହା କରି ଯାଆନ୍ତି, ତାହା ହିଁ ହୁଏ ସରକାରଙ୍କର ନିର୍ଭରଯୋଗ୍ୟ ଓ ବିଶ୍ୱାସଭାଜନ ବ୍ୟବସ୍ଥା ।

ଅଧ୍ୟାପକ ମହାଶୟ ଏହି କଥାର ସତ୍ୟତା ସେତିକବେଳେ ଅନୁଭବ କଲେ, ଯେତେବେଳେ ତାଙ୍କୁ ଅଧ୍ୟକ୍ଷଙ୍କ ଅଫିସରୁ ଚିଠିଟିଏ ଧରାଇ ଦିଆଗଲା ଡେପୁଟି ସେକ୍ରେଟାରୀଙ୍କ ସନ୍ତକରେ । ଚିଠିର ସାରମର୍ମ ହେଉଛି, 'ସରକାର ସନ୍ତୋଷର ସହିତ ତମର କାର୍ଯ୍ୟକାଳକୁ ଏହିଠାରୁ ସମାପ୍ତି କରାଇଦେଲେ ।' ସରକାର କେବେ କୌଣସିଠାରେ ଅସନ୍ତୋଷ ପ୍ରକାଶ କରନ୍ତି ନାହିଁ । ସନ୍ତୋଷର ସହିତ ଯେଉଁପରି ଚାକିରି ଦିଅନ୍ତି, ସେହିପରି ସନ୍ତୋଷର ସହିତ ଚାକିରି ନିଅନ୍ତି । ସନ୍ତୋଷର ସହିତ ଯେଉପରି ଗର୍ହିତ କାମ ପାଇଁ ଦଣ୍ଡ ବିଧାନ କରନ୍ତି, ସେହିପରି ସନ୍ତୋଷର ସହିତ ଦୋଷମୁକ୍ତ କରନ୍ତି ମଧ୍ୟ ।........

ସେହି ଚିଠିଟି ଧରି ଆସି ରାଜଧାନୀସ୍ଥିତ ଏହି ପଚିଶି ନମ୍ବର ପ୍ରକୋଷ୍ଠରେ ସେ ବେକାର ଯୁବକଙ୍କ ସହିତ ସଖ୍ୟତା ସ୍ଥାପନ କରିଛନ୍ତି । ଚାକିରିର ସ୍ୱାଦ ଚାଖି ନ ଥିବା ବ୍ୟକ୍ତିର ଦୁଃଖ ଠାରୁ ଚାକିରିର ସ୍ୱାଦ କିଛିଦିନ ଆସ୍ୱାଦନ କଲା ପରେ ସେଥିରୁ ଅବ୍ୟାହତି ପାଇଥିବା ବ୍ୟକ୍ତିର ଦୁଃଖ ଅପରସୀମ । ସେକ୍ରେଟାରୀ, ଡେପୁଟି ସେକ୍ରେଟାରୀ, ଡିରେକ୍ଟର ଓ ଜଏଣ୍ଟ ଡିରେକ୍ଟରଙ୍କୁ ବାରମ୍ବାର ଦେଖା କରି ନିଜର ଦୁଃଖ କାହାଣୀ ବ୍ୟକ୍ତ କରିଛନ୍ତି । ସରକାରୀ ଚାକିରିରେ ପ୍ରବେଶ ପାଇଁ ଥିବା ବୟସର ସର୍ବୋଚ୍ଚ ସୀମା ଇତି

ମଧ୍ୟରେ ଅତିକ୍ରମ କରି ଯାଇଥିବାରୁ ଯେଉଁ ଅସୁବିଧା, ତାହାକୁ ସୁନ୍ଦର ଭାବରେ ଉପସ୍ଥାପିତ କରିଅଛନ୍ତି । ଖବରରେ ଜାଣିବାକୁ ପାଇଛନ୍ତି ଯେ ତାଙ୍କ ନାମରେ ସର୍ବସାଧାରଣ ଓ ଛାତ୍ର-ଛାତ୍ରୀମାନେ ନାନାପ୍ରକାର ଗୁରୁତର ଅଭିଯୋଗ ଆଗତ କରି ବାରମ୍ବାର ଦରଖାସ୍ତ କରିଛନ୍ତି । ସେହି ଦରଖାସ୍ତ ଗୁଡ଼ିକୁ ବିଚାରକୁ ନେଇ ତାଙ୍କର କାର୍ଯ୍ୟକାଳ ଇତିକରି ଦିଆଯାଇଛି ଓ ସେ ସ୍ଥାନରେ ଆଉ ଜଣେ ଯୁବକଙ୍କୁ ନୂତନ ନିଯୁକ୍ତି ଦିଆ ସରିଲାଣି ।

କେତେ ସେକେଣ୍ଡ ନିଷ୍ପଲକ ନୟନରେ ଅନାଇ ସେ ଫେରିଆସିଲେ । ଏହିଭଳି ମାରାତ୍ମକଭାବେ ଷଡ଼କାରକ ବ୍ୟବସ୍ଥା ସବୁ ଯୁଗରେ ଥିଲା, ଅଛି ଓ ରହିଥିବ ବୋଲି ସେ ଆଦୌ ବିଶ୍ୱାସ ସୁଦ୍ଧା କରି ପାରିଲେ ନାହିଁ । ଚାକିରିବିହୀନ ଅଧ୍ୟାପକଙ୍କ ପାଇଁ ଏହି ସଂସାରର ଉଚ୍ଛୃଙ୍ଖଳ ସ୍ରୋତ ମୁହଁରେ କୌଣସି ନୂଆ ସମାଚାର ନାହିଁ, ଆଶା ନାହିଁ, ଏପରିକି ନିଦାନ ମଧ୍ୟ ନାହିଁ ।

ରାଜଧାନୀରେ ଯେଉଁପରି ଜଣେ ଘରଭଡ଼ାଦାରକୁ ବିଦାୟ କରି ଆଉ ଜଣେ ନୂତନ ଭଡ଼ାଦାର ରଖିବାକୁ ଗଲା ବେଳେ ପୂର୍ବର ଭଡ଼ା ପରିମାଣକୁ ଊର୍ଦ୍ଧ୍ୱମୁଖୀ କରିଯାଇଥାଏ, ସେହିପରି ଜଣକୁ ସରକାରୀ ଚାକିରିରୁ ବିଦାୟ କରିଦେଇ ସେହି ସ୍ଥାନରେ ଅନ୍ୟ ଜଣକୁ ଚାକିରିରେ ରଖିବାକୁ ହେଲେ ମାମୁଲ୍ ଦକ୍ଷିଣାର ହାର ଆଶାନୁରୂପ ବୃଦ୍ଧି ପାଇଥାଏ । ଏହା ଅତି ସାଧାରଣ କଥା । ଉପାସିଆ ଚାକିରିପୋକର ରକ୍ତଶୋଷା କାହାଣୀ ।

ସାଧାରଣତଃ ଲୋକ ମୁଖରୁ ଶୁଣିବାକୁ ମିଳିଥାଏ ଯେ ସରକାରୀ ଚାକିରି ମିଳେ ବହୁ କଷ୍ଟରେ, ସେହିପରି ମଧ୍ୟ ଯାଏ ତାହାଠାରୁ କଷ୍ଟରେ । କିନ୍ତୁ ଏଠାରେ ବିତାଡ଼ିତ ଅଧ୍ୟାପକ ପ୍ରଥମଥର ପାଇଁ ଉପଲବ୍ଧି କରିଛନ୍ତି ଯେ ଯଥା କାଳରେ ଉପଯୁକ୍ତ ମାମୁଲ୍ ଭେଟି ନ କଲେ ମଧ୍ୟ ଅସ୍ଥାୟୀ ଚାକିରି ଚାଲିଯାଏ ନାନାପ୍ରକାର ମିଥ୍ୟା କପୋଳକଳ୍ପିତ ଅଭିଯୋଗର ଏକତରଫା ବିଚାର ହୋଇ । ତାଙ୍କ ନାମରେ ଯଦି ଅଭିଯୋଗ ଆସିଥିଲା, ସେଥିପାଇଁ କାହିଁକି ତାଙ୍କଠାରୁ ଉପଯୁକ୍ତ ସମୟ ସୀମା ମଧ୍ୟରେ କୈଫିୟତ୍ ତଲବ କରାଗଲା ନାହିଁ ? ସେଥିପାଇଁ କାହିଁକି ଅଭିଯୋଗ ଗୁଡ଼ିକ ସମ୍ବନ୍ଧରେ ଅଧ୍ୟକ୍ଷ କିମ୍ବା ଡିରେକ୍ଟରଙ୍କୁ ଅନୁସନ୍ଧାନ କରି ରିପୋର୍ଟ ଦାଖଲ କରିବା ପାଇଁ ଆଦେଶ କରାଗଲା ନାହିଁ ? ସେଥିପାଇଁ ଆଇନ୍ ସଙ୍ଗତ ଭାବେ ଅଭିଯୋଗ ସାବ୍ୟସ୍ତ ପାଇଁ ଥିବା ପଦ୍ଧତି ଓ ପ୍ରକ୍ରିୟାକୁ କାହିଁକି ଅନୁସରଣ କରାଗଲା ନାହିଁ ? କୌଣସି ପ୍ରକାରର କାହିଁକିର ଉତ୍ତର କୌଣସିଠାରୁ ସେ ସରଳ, ସହଜ ଓ ଆନ୍ତରିକଭାବେ ପାଇ ପାରନ୍ତି ନାହିଁ । ବନ୍ଧୁଙ୍କଠାରୁ ନୁହେଁ କିମ୍ବା ବୈରୀଙ୍କଠାରୁ ବି ନୁହେଁ । ଏଣୁ ପ୍ରତ୍ୟାଶା ଓ ଉଚିତ ଅବିଶ୍ୱାସକୁ ସମ୍ବଳ କରି ସେ ମନେ କରନ୍ତି ରାଜଧାନୀର ପ୍ରତ୍ୟେକ ମଣିଷ କୁଟିଳ ।

ପ୍ରତ୍ୟେକ ମଣିଷ ଷଡ଼ଯନ୍ତ୍ରକାରୀ । ପ୍ରତ୍ୟେକ ମଣିଷ କଳେବଳେ କୌଶଳରେ ଅନ୍ୟକୁ ଶୋଷଣ କରିବାକୁ ବ୍ୟଗ୍ର । କୁଳବୃଦ୍ଧ ମଧୁବାବୁ ଯେଉଁ ଜାତି ପ୍ରେମବହ୍ନି ପ୍ରଜ୍ୱଳିତ କରାଇଥିଲେ, ତ୍ୟାଗବୀର ଗୋପବନ୍ଧୁ ଯେଉଁ ଦେଶପ୍ରେମର ହୋମାଗ୍ନି ସ୍ଥାପନ କରି-ଥିଲେ, ତାହା କେବେଠାରୁ ଲିଭିଗଲାଣି । ବର୍ତ୍ତମାନ କେବଳ ଚାରିଆଡ଼େ ପ୍ରଚୁର ଧୂଆଁ । ଧୂଆଁ ବାଣ ମାରି ଯିଏ ଆଖିକୁ ଅନ୍ଧକରି ଦେଇ ପାରିଲା, ସେହି ହେଲା ବଳିଷ୍ଠ କର୍ମୀ ମଣିଷ । ବୋଧହୁଏ ଆଖିକାନ ଠିକ୍ ଠିକ୍ ଭାବେ ଖୋଲା ରଖିଥିଲେ ଅନେକ ମହାଶୟ ବହୁପୂର୍ବରୁ ଏହି କଥା ଠାଉରି କରି ପାରିଥାନ୍ତେ । ଦୁର୍ଭାବନା, ଦୁଃଖ, ଦୁର୍ଦ୍ଦଶା, ଦୁଶ୍ଚିନ୍ତା ତାହାଙ୍କୁ ଉଦ୍‌ଭ୍ରାନ୍ତ କରାଇଛି । ମନେ ମନେ କେଜାଣି କେତେ ଥର ସେ ଉଚ୍ଚା-ରଣ କରୁଛନ୍ତି ଅଶ୍ଳୀଳ ଗାଳି ଗୁଲଜ କିଛି କିଛି ।

ସମବାହୁ ତ୍ରିଭୁଜର ଅନ୍ୟ ଯେଉଁ ବାହୁଟି ଭୂମି ଓ ଉପରୋକ୍ତ ବାହୁଟିକୁ ନିଜର ବ୍ୟକ୍ତିଗତ ଔଦାର୍ଯ୍ୟ ଓ ସହନଶୀଳତା ଦ୍ୱାରା ସ୍ପର୍ଶକରି ପାରିଛନ୍ତି ଏବଂ ସୂକ୍ଷ୍ମ ଚୁମ୍ବକୀୟ ଶକ୍ତି ବଳରେ ନିଜ ଆଡ଼କୁ ଆକର୍ଷଣ କରିପାରିଛନ୍ତି, ସେ ହେଉଛନ୍ତି ଜଣେ ଅବସରପ୍ରାପ୍ତ ଅଧ୍ୟକ୍ଷ । ଜୀବନରେ ସୁପ୍ରତିଷ୍ଠିତ ନ ହେଲେ ମଧ୍ୟ ସୁପରିଚିତ । ନିହାତି ମଫସଲିଆ ଚେହେରା । ବୟସ ଓ ଅଭିଜ୍ଞତାରେ ସେ ଉଭୟଙ୍କର ଶୀର୍ଷରେ । କର୍ମମୟ ଜୀବନ ମଧ୍ୟରେ ସବୁଠାରେ ନିଜର ମେଧା, ପରିଶ୍ରମ, ସଂଗଠନ କ୍ଷମତା, କର୍ମକୁଶଳତା ଓ ବୁଦ୍ଧିମତ୍ତାର ସ୍ୱାକ୍ଷର ରଖି ପାରିଛନ୍ତି । ଦୀର୍ଘ ପଇଁତିରିଶ ବର୍ଷ କାଳ ସରକାରୀ କଲେଜରେ ଅଧ୍ୟାପନା କରି ସମସ୍ତ ପ୍ରକାର ଆତ୍ମମଗ୍ନତା ସତ୍ତ୍ୱେ ମାନସିକଭାବେ ନୈକଷ୍ଟ ଜୀବନର ତିକ୍ତ-ମଧୁର-କଷାୟ ପାଚନକୁ ଆକଣ୍ଠ ପାନ କରିନାହାନ୍ତି ବୋଲି କୁହାଯାଇ ପାରିବ-ନାହିଁ । ଅଧ୍ୟାପକରୁ ପ୍ରାଧ୍ୟାପକ, ପ୍ରାଧ୍ୟାପକରୁ ଅଧ୍ୟକ୍ଷ ହେବା ପାଇଁ କେତେ ପ୍ରକାର ଚକ୍ରର ଚକ୍ରାନ୍ତର ଶିକାର ହୋଇଛନ୍ତି । ଅଧ୍ୟକ୍ଷ ଆସନରେ ଯେତିକି ଦିନ ରହିଥିଲେ, ସେତିକି ମଧ୍ୟ ସ୍ୱସ୍ତି ଓ ଶାନ୍ତିରେ ନିଃଶ୍ୱାସ ମାରି ପାରିନାହାନ୍ତି । ଅବସର ଗ୍ରହଣ ବେଳକୁ ତାଙ୍କର ତିନି ବର୍ଷର ଇନକ୍ରିମେଣ୍ଟ ସୁଦ୍ଧା ମିଳିପାରି ନ ଥିଲା । ମୃତ୍ୟୁ ମୁହଁର ଉପସ୍ଥିତ ଦିଗକୁ ଡଙ୍ଗା ଚଳାଇ ଯେଉଁ ପୌରୁଷର ପ୍ରମାଣ ଥୋଇଥିଲେ, ତାହା ଫଳରେ ଇ.ବି. ସୁଦ୍ଧା ଅତିକ୍ରମ କରିପାରି ନ ଥିଲେ । ତ୍ରୁଟି ସମସ୍ତ ଗୁଡ଼ିକୁ ନିୟମାନୁଯାୟୀ କାର୍ଯ୍ୟକାରୀ କରାଯାଇ ନ ଥିଲା । ଏଣୁ ସେ ଅବସର ଗ୍ରହଣ ପରେ ପରେ ବାଧ୍ୟ ହୋଇ ରାଜଧାନୀରେ ଡେରା ପକାଇ ସମସ୍ତ ପ୍ରକାର ନାଲିଫିତାର ଗଣ୍ଠି ମୋଚନ ନିମନ୍ତେ ଉଦ୍ୟମ କରୁଛନ୍ତି ।

ତନ୍ତୀଘର କଣ୍ଟାଭଳି ଡିରେକ୍‌ଟରଙ୍କ ଅଫିସରୁ ସେକ୍ରେଟାରିଏଟ୍ ଓ ସେକ୍ରେଟାରି-ଏଟ୍‌ରୁ ଡିରେକ୍‌ଟରଙ୍କ ଅଫିସର ଦୋତାଲା ପ୍ରାସାଦ ପର୍ଯ୍ୟନ୍ତ ଧାଇଁ ଧାଇଁ ଗୋଡ଼ରେ ଘାଆ ଫୁଟିଗଲାଣି । ଆଜିକାଲିକାର ମାର୍କସ-ଫ୍ରଏଡ଼ ଅଧ୍ୟୁଷିତ ପୃଥିବୀରେ ନିଜ ସମ୍ମୁ-ଖରେ କୌଣସି ପ୍ରକାର ଅହମିକା କିମ୍ବା ଆସ୍ଫାଳନ ପ୍ରଦର୍ଶନ ନ କରି ସୁଦ୍ଧା, ସତେ

ଫିମିଣ୍ଟ ତାଙ୍କର ଉଦାର ନୈତିକ ମୂଲ୍ୟବୋଧ ବେଦନାର୍ତ୍ତ ହୋଇ ଉଠିଲାଣି । ପର୍ଯ୍ୟନ୍ତ ବର୍ଷର ସ୍ୱଳ୍ପକାଳ ମଧ୍ୟରେ କାହାକୁ ବାଡ଼କୁ ଦେଖାଇ ଗାଳିଦେବା କିମ୍ବା ଝଣ୍ଟିଆ ଖାବଗ୍ର ଟନ୍ଲାର ବଳାପ ଭଳି ମୌନ-ମୂକରତା ବ୍ୟତୀତ ଅନ୍ୟ କୌଣସି ପ୍ରକାର ପ୍ରତ୍ୟକ୍ଷ ବିଦ୍ରୋହ କିମ୍ବା ପରୋକ୍ଷ ବିକ୍ଷୋଭ କରିଛନ୍ତି ବୋଲି ମନେହୁଏ ନାହିଁ । ମନେହୁଏ ନାହିଁ ତାଙ୍କର ଫିର୍ଙ୍ଗି ଦେଖାଉଥିବା ପରହ୍ୱାପର ଇଟା ପଥରରେ କାହାର ହାଡ଼ ଗୋଡ଼ ଚୂନା ହୋଇଛି ବୋଲି ।

ଜଣେ ସହାନୁଭୂତିଶୀଳ ହେଲେ, ଅନ୍ୟମାନେ ଦେହରେ ପଶିହୋଇ ସ୍ୱଳ୍ପଯାଆନ୍ତି । ଜଣେ କାମ କରିବେବାପାଇଁ ନିର୍ଭର ପ୍ରତିଶ୍ରୁତ ଦେଲେ ଅନ୍ୟମାନେ ଫାଇଲ ବାନ୍ଧ ଘରକୁ ଚମ୍ପଟ କରନ୍ତି । ଏହା ହେଉଛି ପରିସ୍ଥିତି । ଆଜି ଆସିବେ ପ୍ରଧାନମନ୍ତ୍ରୀ । କର୍ମ-ଷ୍ଟାରୀମାନେ ସେଥିପାଇଁ କାର୍ଯ୍ୟବ୍ୟସ୍ତ । କାଲି ଗ୍ରାଣ୍ଡ୍ ପଥଶବନକୁ ଆନ୍ତର୍ଜାତିକ ମହିଳା ସମ୍ମିଳନୀ, ତାର ପରଦିନକୁ ଟେକ୍ସୀପ୍ସ ଯୁବୋତ୍ସବ, ତାହାପରେ ହେବ ସାମନ୍ତସିଂହାର ଜୟନ୍ତୀ, ହେବ ଗ୍ରାମସ୍ୱୀ ଗ୍ରାଉତ୍ସବ, ତାର ପରକୁ ପର ଲାଗି ରହିଛି ଆହୁରି କେତେ କେତେ ସମାଧାନ ବାହାନ ଅଜସ୍ର ଅଜୁଣ୍ଡା ସମସ୍ୟା । ଫାଇଲ ପଠାଇବାକୁ ଫୁରସତ୍ ନାହିଁ । ପ୍ରକୃତ କାମ କରିବାକୁ ସମୟ କାହିଁ ? ନିର୍ବାଚନ ବର୍ଷ ବୋଲି ରାଜନୀତିର ଧଇଁସଇଁ ଧାଆଁ ଦଉଡ଼ ଭିତରେ ସରକାରୀ ଅମଲାମାନେ ବ୍ୟସ୍ତ, ବିବ୍ରତ । କେତେକ ପରିମାଣରେ ବିଭ୍ରାନ୍ତ ମଧ୍ୟ । ଯେଉଁମାନେ ରାଜନୀତି କରନ୍ତି, ସେମାନଙ୍କ ଅଯୋଗ୍ୟତା ଓ ଅଦୂରଦର୍ଶିତାର ପ୍ରମାଣ । ଅକାରଣରେ, ଅସମୟରେ, ଅଯଥାର୍ଥ ଭାବେ ପରିବେଶ ଓ ପରିସ୍ଥିତିକୁ ଜଟିଳ କରି ପକାଉଛନ୍ତି । ନିଃସଙ୍କୋଚ ଓ ନିଃସଂଶୟ ଭାବରେ କହିବାକୁ ଗଲେ ହେବା କଥା ହେଉ ନାହିଁ, ନହେବା କଥାରେ ମୁଣ୍ଡ ଖାଇ । ଏପରି ସ୍ଥଳେ ଜଣେ ଅବସର ପ୍ରାପ୍ତ କର୍ମଚାରୀର ଦୁଃଖ ଶୁଣି ତାହାର ଅପନୋଦନ ପାଇଁ ଯେତିକି ସମ୍ଭବ, ତାହାସୁଦ୍ଧା ହୋଇପାରୁନାହିଁ ।

ଅଧ୍ୟକ୍ଷ ମହୋଦୟ ପ୍ରଚଣ୍ଡ ବିରକ୍ତ, ଖ୍ୟାପଣ ଭାବେ ବିକ୍ଷୁବ୍ଧ । ହୃଦୟର ଅଭିମାନ ଓଠ ପାଖକୁ ଆସିଲେ ହୁଏ ରାଗ । ଉପସ୍ଥିତ ସଂକଟରୁ ଉଦ୍ଧାର ପାଇଁ ଯେତିକି ଉଦ୍ୟମଶୀଳ, ତାହାଠାରୁ ସେ ଅଧିକ ବ୍ୟସ୍ତ, ବିବ୍ରତ ଓ ଚକିତ । ଅଳ୍ପ କଥାରେ ଚଡ଼ଚଡ଼ କରନ୍ତି । ଅଳ୍ପ ସମୟ ମଧ୍ୟରେ ରାଗି ଯାଆନ୍ତି । ପୂର୍ବର ଟେମ୍ପରାମେଣ୍ଟ ବଦଳି ଯାଇଛି । ଧୈର୍ଯ୍ୟଶୀଳତାର ବନ୍ଧ ଭାଙ୍ଗି ଯାଇଛି । ତାଙ୍କର ବୃଦ୍ଧତାକୁ ଯିମିତି ସବୁବେଳେ ତତଲା ତେଲ ତାଉଆ । ଅଳ୍ପ ସମୟ ମଧ୍ୟରେ ସେ କ୍ଳାନ୍ତହୋଇ ପଡ଼ନ୍ତି, କ୍ରମଶଃ ଅବସନ୍ନ ବୋଧ କରନ୍ତି । ଜ୍ଞାନୀ, ଗୁଣୀ, ପଣ୍ଡିତବ୍ୟକ୍ତି ହୋଇଥିଲେ ମଧ୍ୟ ବେଳେବେଳେ ମୂର୍ଖଠାରୁ ମହାମୂର୍ଖ ଭଳି କାମ କରନ୍ତି ।

କାହାର ପ୍ରସ୍ତାବ ନାହିଁ, ପ୍ରତିପତ୍ତି ନାହିଁ ଆଉ ଉପାର୍ଜନ ନାହିଁ । ଏଠୁ ସମସ୍ତ ସୌହାର୍ଦ୍ଦ୍ୟ ସତ୍ତ୍ୱେ ନିଜର ପକେଟ ସମ୍ଭାଳି ଚଳିବା ପାଇଁ ନିଜ ନିଜର ପ୍ରତ୍ୟେକ ବାନ୍ଧୁ ସମାନ ସଚେତନ । କୌଣସିମତେ ତଦଲ ପାଉଁରୁଟି, କିଛୁ ଅମୂଲ ବଟର କିମ୍ବା ଆଣି ପିମ୍ପୁଡ଼ି, ମୂଷା, ବିଲେଇ ଆଦିର ଅତ୍ୟାଚାରରୁ ସାରାରାତି ସାଇତି ରଖି ସକାଳର ପ୍ରାତରାଶରେ ଲଗାଇବା ପାଇଁ ଯେଉଁ ସ୍ୱଭାବଜାତ ଐକାନ୍ତିକ ପ୍ରଚେଷ୍ଟା, ତାର ତୁଳନା ନାହିଁ । ଖାଇ, ପିଇ ଆନନ୍ଦମୟ ପୁରୁଷ ଭଳି ଚଳିବାକୁ ଯାଉଛ କିଏ ? ପ୍ରାତରାଶ ପରେ ପ୍ରତ୍ୟେକେ ନିଜ ନିଜର ଉଦ୍ୟମରେ ବାହାରି ଯାଆନ୍ତି ଅଳ୍ପ ଖର୍ଚ୍ଚରେ ଅଧିକ କାର୍ଯ୍ୟ ହୋଇ ପାରିବ ସେଥିପାଇଁ ଉଦ୍ଦେଶ୍ୟମୂଳକ ଯୋଜନାରେ ବ୍ୟସ୍ତ ରହନ୍ତି ।

ସହରୀ ଜୀବନର ସ୍ୱାଦ ଯେତିକ ଆକର୍ଷଣୀୟ, ସେତିକ ଅଭିଶପ୍ତ । ତଥାପି ଉଦ-ଯନ୍ତ୍ରଣାରେ ଅସ୍ଥିର ଯୁବକ, ପ୍ରୌଢ଼ ଓ ବୃଦ୍ଧ ରାଜଧାନୀ ଛାଡ଼ି ଅନ୍ୟତ୍ର ଗ୍ରାସାଚ୍ଛାଦନର ବ୍ୟବସ୍ଥା କରିବା ପାଇଁ ଅନାଗ୍ରହୀ । ସେଥିପାଇଁ ସୁଯୋଗ ବା କାହିଁ ? ସୁବିଧା କଥା ପଚ୍ଚୁରୁଛ କିଏ ? ସେମାନଙ୍କର ତିନିଯୋଡ଼ା ଆଖି ଆଡ଼କୁ ପର୍ଯ୍ୟାୟକ୍ରମେ ଚାହାଁଇଗଲେ ମନେହୁଏ ସେଗୁଡ଼ିକ ଦାରିଦ୍ର୍ୟ, ଅନଟନ, ଲୋଭ, ଦୁର୍ଯୋଗ, ଲାଳସା ଓ ଅପମାନରେ ସନ୍ତୁଳ ହେଉଛନ୍ତି । ଆଉ ସ୍ୱରପାଖର ମଣିଷର ଅଗଣି କଳରବ ଓ ଅସ୍ଥିରତା ମଧ୍ୟରେ ଯେପରି ଗୋଟିଏ ମାତ୍ର ପ୍ରଶ୍ନ ବିଶାଳକାୟ ପିଟାଘଣ୍ଟା ଭଳି ମନ ମଧ୍ୟରେ ଝୁଲିପଡ଼େ । ଏ ଦେଶକୁ ଏହିଭଳି କେତେ କାଳ ବଡ଼ ବଡ଼ ମନ୍ତ୍ରକବାନ ମଣିଷ ଚଳାଉଥିବେ, ଆଉ ମନ୍ତ୍ରିତ୍ୱବାନ୍ ମଣିଷମାନେ ନିଗୃହୀତ ହେଉଥିବେ ?

ପ୍ରଚଳିତ ପୃଥିବୀ ନିମନ୍ତେ ତିନିହେଁ ଅନୁପଯୁକ୍ତ ନିଶ୍ଚୟ ।

('ସମାବେଶ'ର ୧୯୯୦ ମସିହା ଜାନୁଆରୀ ସଂଖ୍ୟାରେ ପ୍ରକାଶିତ)

—*—

# ଆକାଶ ପାତାଳ

## ॥ ଏକ ॥

ରାତି ପାହିଲା ବେଳକୁ ଆଖ ପାଖ ପାଞ୍ଚ ଖଣ୍ଡ ଗାଆଁରେ ରାଷ୍ଟ୍ର ହୋଇଯାଇଛି ଯେ କାଳୁପଡ଼ା ଗ୍ରାମର ମୋହନ ନାଥ ତାର ପୁଅ ମନମୋହନ ନାଥକୁ ଘରର ମଝି ଶାଳୁଆ ଖୁଣ୍ଟରେ ଗତକାଲି ରାତିରୁ ବାନ୍ଧି ରଖିଛି । ଏଭଳି ମାଡ଼ ଦେଇଛି ଯେ ପିଲାଟା ଅତି ଉଣାରେ ଆଠଦିନ ଯାଏ ବାହାରକୁ ବାହାରି ପାରିବ ନାହିଁ । ମୁରବୀ ସ୍ଥାନୀୟ ଗ୍ରାମବାସୀମାନଙ୍କ ମଧ୍ୟରୁ ଯିଏ ଶୁଣୁଛି, ସିଏ କାନରେ ହାତ ଦେଉଛି । ବାପ ପୁଅଙ୍କ ଭିତରେ କିଭଳି ଗଣ୍ଡଗୋଳ ହେଲା ଯେ ମୋହନର ରାଗ ତାଳୁକୁ ଉଠିଗଲା ! ଭେଣ୍ଡା ପୁଅଟାକୁ ମେଣ୍ଢାଛୁଆ ଭଳି ମଝି ଖୁଣ୍ଟରେ ବାନ୍ଧି ମାଡ଼ ଚଢ଼ାଇ ବେହୋସ କରି ପକାଇଲା । ଘିଅ କଉଡ଼ି ପେଇବା ଯାଏ କଥା ଗଲା !

ମୋହନ ନାଥର ନାଆଁ ଡାକ ଅଛି—କେବଳ ଜଣେ ସାଧୁ ସଚ୍ଚୋଟ ମଣିଷ ରୂପେ ନୁହେଁ, ଜଣେ ଭଲ କେନ୍ଦରା ଗାୟକ ହିସାବରେ ମଧ୍ୟ । ମୋଟା ମୋଟି ଭାବରେ କହିବାକୁ ଗଲେ ତାହା ଭଳି ଉଦାସୀନ, ଆତ୍ମକେନ୍ଦ୍ରିକ ବ୍ୟକ୍ତିତ୍ୱ ସହିତ ସ୍ୱଳ୍ପବାକ୍ ପୁରୁଷ ପୃଥିବୀରେ ଦୁର୍ଲଭ । ଶତକଡ଼ା ଶହେ ଭାଗ ସେ ସାରୁ ପରିବା । ଯେଉଁଥିରେ ମିଶାଇବ ସେଥିରେ ମିଶିଯିବ ନିର୍ବିକାର ଭାବରେ । ସାରାଜୀବନ ସାମାଜିକ ଶୃଙ୍ଖଳା ମାନି ଚଳାଚଳ କରି କରି ସେ ଗୋଟାଏ ସମାଜପୋକ ପାଲଟି ଗଲାଣି । ସେଭଳି ଲୋକ କୋଟିକରେ ଗୋଟିଏ ।

ଉଚ୍ଚଜାତି, ଉଚ୍ଚବର୍ଣ୍ଣର ଲୋକମାନେ ସବୁ କାଳେ ସବୁକ୍ଷେତ୍ରରେ ଘୃତୁସି ଖେଳାଇ ପାନ କରନ୍ତି ଅମୃତ । ପଶ୍ଚାତ୍‌ଗାମୀ ଅନଗ୍ରସର ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ପାଇଁ ଗଚ୍ଛିତ ହୋଇଥାଏ ବୈଷମ୍ୟ, ବଞ୍ଚନା, ଓ ଦାରିଦ୍ର୍ୟର ହଳାହଳ । ଜନ୍ମସୂତ୍ରରୁ ପ୍ରାପ୍ତ ଜାତି ଓ ପୈତୃକ ସୂତ୍ରରୁ ପ୍ରାପ୍ତ ବୃତ୍ତିକୁ ଅନୁସରଣ କରି ଯେଉଁମାନେ ଜନ୍ମଲଗ୍ନରୁ କବଚ କୁଣ୍ଡଳ ଭଳି ଘୃଣା, ସାମାଜିକ ବୈଷମ୍ୟ ଓ ଅବମାନନା ଆଦି ଦେହରେ ମୁଣ୍ଡରେ ବହନ କରିଥାନ୍ତି, ସେମାନଙ୍କ ମଧ୍ୟରୁ ମୋହନ ନାଥକୁ ଜଣେ ବୋଲି ସ୍ୱୀକାର କରାଯାଇପାରେ ।

କେନ୍ଦରୁ ଝଣ୍ଡିକ ଧଣ ଯେତେବେଳେ ମୋହନ ଯେକୌଣସି ଗାଆଁ ଦାଣ୍ଡରେ ଗୁଲିଯାଏ, ସେ ଦାଣ୍ଡ ସେତେବେଳେ ପୂରି ଉଠେ । ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ଗୀତ ଶୁଣିବା ପାଇଁ ତାହା ପଛରେ ଗୋଡ଼ାଉଥାନ୍ତି । କୂଳର ଭୁଆସୁଣୀମାନେ ଝରକା ପାଖରେ ଠିଆହୋଇ ପଣତ କାନି ଲୁହରେ ଓଦାକରି ପକାନ୍ତି । ଟିକି ଗୋବିନ୍ଦ ଚନ୍ଦ୍ର ଥାଏ ତାର ଖୁଣ୍ଟେ ଖୁଣ୍ଟେ । କେନ୍ଦରୁ ବଜାଇ ଯେତେବେଳେ ସେ କରୁଣ କଣ୍ଠରେ ମୂର୍ଚ୍ଛନା ତୋଳେ—"ଭଜ୍ କିନା ରାମ ନାମରେ କୁମର ଭଜୁ କିନା ରାମ ନାମ, ଭଜି ନ ପାରିଲେ କୁଳଚନ୍ଦ୍ର ମାରେ ବାନ୍ଧି ନେବ କାଳ ଯମ"...ଇତ୍ୟାଦି; ସେତେବେଳେ ମ ତୃ-ହୃଦୟର କରୁଣ ବିଳାପରେ ବୃକ୍ଷଲତା ଠାରୁ ଆରମ୍ଭ କରି ନଦୀ-ପର୍ବତ ପର୍ଯ୍ୟନ୍ତ ବିଶ୍ୱ-ପ୍ରକୃତି ଶୋକାପ୍ଳୁତ ହୋଇ ପଡ଼ି ମନେହୁଏ । ପ୍ରତ୍ୟେକ ବ୍ୟକ୍ତିର ଆଖିରେ ଲୁହ ଜକେଇ ଆସେ । ତାର ଶୂନ୍ୟ ଥାଳଟି ପୂର୍ଣ୍ଣ ହୋଇଯାଏ ଅଳ୍ପ ସମୟ ଭିତରେ । ଲୋକ-ମାନେ ତାର ଯୋଗୀ-ଜୀବନ, ଦାରିଦ୍ର୍ୟର ମାହାତ୍ମ୍ୟ ଓ ମହିମା ସହିତ ବେଶ୍ ପରିଚିତ ।

କେତେଥର କଟକ ବେତାର କେନ୍ଦ୍ର ତରଫରୁ ତାହାଙ୍କୁ ଆମନ୍ତ୍ରଣ କରି କର୍ତ୍ତୃପକ୍ଷ କେନ୍ଦରା ପରିବେଷଣ କରାଇଲେଣି, ତାର ଇୟତ୍ତା ନାହିଁ । ସେହି ଅନୁପାତରେ ଭୁବନେଶ୍ୱରର ଦୂରଦର୍ଶନ କେନ୍ଦ୍ରକୁ ମୋହନର ଗମନାଗମନ ଅଛି । ସେ ରାଜ୍ୟ ସଂସ୍କୃତି ବିଭାଗ ପକ୍ଷରୁ ନିୟମିତ ମାସିକ ସରକାରୀ ବୃତ୍ତି ଭୋଗୀ ଜଣେ ଦୁଃସ୍ଥ କଳାକାର ରୂପେ ଆବଶ୍ୟକୀୟ ଗର୍ବ ଓ ଗୌରବର ଅଧିକାରୀ ।

ବର୍ତ୍ତମାନ ଆଉ ମୋହନର ସେ ପୂର୍ବର କାରିମତି ନାହିଁ । କଣ୍ଠ ଦୁର୍ବଳ ଓ ଶରୀର ହୀନବଳ ଆଉ ବକ୍ଷ ଉତ୍ତାପ ବିହୀନ । ଚର୍ମ ଭିତରୁ ଯିମିତି ଅସ୍ଥି ପାଉଁଶ ଉଠୁଛି ହନଗିତ । ସେ ଏବେ ଖୁବ୍ ଉଦାସ, ଅତ୍ୟନ୍ତ ନିର୍ବିକାର । ତାହାର ହାଟ ଭାଙ୍ଗି ପସରା ଗୋଟାଇବାର ସମୟ ଆସିଗଲାଣି । ଦାରିଦ୍ର୍ୟ ଓ ବୟସାଧିକାର ତାକୁ ଦେହସାରା । ଏହା ହିଁ ମୋହନର ମନକୁ କରିଛି ଆବେଗଶୂନ୍ୟ, ସଙ୍ଗୀତହୀନ, ଅଯତ । ଶେଷ ବୟସରେ ସତେ ଯିମିତି ସେ ଶିଉଳି ଖସଡ଼ା ମାଟି ଉପରେ ଗୋଡ଼ ରଖି ସଂସାରର ଚକ ଘୂରା-ଉଛି, ଆଦୌ ଅବହେଳା କରୁନାହିଁ—ଏ କଥା ଜାଣନ୍ତି ସମସ୍ତେ ।

॥ ଦୁଇ ॥

କଥା ଅଛି, ଚକେ ଗଲେ ବାରହାତ । ସେହି ଅନୁଯାୟୀ ଆଜିକାଲି ବଦଳି ଯାଉଛି ଯୁଗ । ଗତକାଲିର ଆଧୁନିକ ପୃଥିବୀ ଆସନ୍ତା କାଲିକୁ କେତେ ଦ୍ରୁତ ଗତିରେ ପୁରୁଣା କାଳିଆ କଳଙ୍କିଲଗା ଧରି ଯାଉଛି, ତାହା ସହଜରେ ଅନୁମାନ କରିହୁଏ ନାହିଁ । ସହର ବଜାରରେ ଯେଉଁଭଳି କ୍ଷଣକୁ କ୍ଷଣ ପରିବର୍ତ୍ତନ ଘଟୁଛି, ଅବିକଳ ସେପରି ନ ହେଲେ ମଧ୍ୟ

ନିମ୍ନ ମଫସଲରେ ତାର ଛୁଇଁ ପଡ଼ୁଛି । ସହର ବଜାରରେ ଯେଉଁପରି ଖଟିଖିଆ ଶ୍ରମଜୀବୀ ଭିତରେ ଆତ୍ମୀୟତା ବୋଧ ଉଣାହୋଇ ଆସିଛି, ମଫସଲରେ ମଧ୍ୟ ତାହାର ପୂର୍ବଗୃବୃତ୍ତି ଘଟୁଛି । ଯେ କୌଣସି ପ୍ରକାର ରାଜନୈତିକ ଭୂଗୋଳକୁ ଆଣି ଆଦର୍ଶ ବହିର ପୃଷ୍ଠାରୂପେ ଆଖି ଆଗରେ ଧରିଲେ ତାହା ସହର ଓ ମଫସଲ ଉଭୟଙ୍କୁ ଗ୍ରାସ କରୁଛି ବୋଲି ବୁଝାଯାଉଛି । ମାନବିକତାର ଉଦାର ଆକାଶ କ୍ରମଶଃ ଖଣ୍ଡିତ ଓ ସଙ୍କୁଚିତ କେବଳ ନୁହେଁ, ଦୂଷିତ ମଧ୍ୟ । ଏହି ଦୂଷିତ ପରିମଣ୍ଡଳ ମଧ୍ୟରେ ଆଧୁନିକତା ଆକ୍ର-ମଣ କରୁଛି ପରିଶ୍ରମମୁଖୀ, ସମାଜମୁଖୀ, ଉତ୍ପାଦନମୁଖୀ ମଣିଷର ଚିନ୍ତାକୁ । ଏଣୁ ସ୍ୱାଜମନ୍ୟତାର ବୋଝ ବହୁ ସମୟରେ ସୁପରିକଳ୍ପିତ ଭାବେ ମୁଣ୍ଡ ଉପରେ ଲଦିହୋଇ ଯାଉଛି । ଫଳରେ ସବୁଠାରେ ସୃଷ୍ଟିହୋଇ ଯାଉଛି ଦେଶଜ, ଲୋକଜ, ଆଧୁନିକ ସଂସ୍କୃତିର ମିଶ୍ର ପରିବେଶ । ପ୍ରାୟ ପଚିଶ ବର୍ଷ ତଳେ ଗୋଟିଏ ଗାଆଁରେ ଖଣ୍ଡେ ଅଧେ ସାଇକେଲ ଥିଲା କି ନାହିଁ ସନ୍ଦେହ । ଆଜିକାଲି ଘରେ ଘରେ ସାଇକେଲ । ସାଧାରଣ ବଳଦଆ ହିସାବକୁ ଛାଡ଼ିଦେଇ ଟିକିନିଖି ହିସାବରେ ଦେଖିଲେ ପ୍ରତି ଗ୍ରାମରେ ଫଟଫଟିଆ ରୂପେ ଲୁନା କିମ୍ବା ସ୍କୁଟର-ମଟର ସାଇକେଲ ଦେଖିବାକୁ ମିଳେ ।

ବାଉଳ ଙ୍କ ସାରୁଆଳୁ ବନ୍ଧୁ ଘରକୁ ପଠାଇଲେ ସେମାନେ ଭାର-ବେଖର ହାଣ୍ଡିକୁ ସାଇକେଲରେ ଲଦି ସହଜ ପହଞ୍ଚାଇ ଆସୁଛନ୍ତି । ଏହା ମର୍ଯ୍ୟାଦାସିଦ୍ଧ ନ ହେଲେ ସୁଦ୍ଧା ଆଧୁନିକ ମର୍ଯ୍ୟାଦାସମ୍ପନ୍ନ । କଂସେଇ ସାଇକେଲର ଆଗରେ ଓ ପଛରେ ପୁଞ୍ଜାଏ ଖାସି କି ମେଣ୍ଢା ଲଦି ହାଟକୁ ନେବା ଆଣିବା କରିବାର ଦୃଶ୍ୟ ଗ୍ରାମାଞ୍ଚଳରେ ଆଦୌ ଦୁର୍ଲଭ ନୁହେଁ । ମାଛ କିମ୍ବା ଶୁଖୁଆବାଲା, ଅଳତା-ସିନ୍ଦୂରବାଲା, ପାନବାଲା, ମୁଢ଼ିବାଲା ସମସ୍ତେ ସାଇକେଲ ସଭ୍ୟତାକୁ ଆଶ୍ରା କରି ଜୀବନ ଚଳାଉଛନ୍ତି । ଜୀବନର ଛନ୍ଦ ଆଉ ଧୀର, ଅଚପଳ ମନ୍ଦାକ୍ରାନ୍ତା ନୁହେଁ । କଳୁଆ କେଳା କଳଗୋଡ଼ୁ ସାଇକେଲ ଦେହରେ ବାନ୍ଧି, ଆଗରେ ଶୁଆ-ସାପ ପଞ୍ଜୁରି ଝୁଲାଇ ଘରେ ଘରେ ବୁଲି ଆସୁଛି । ଚକ୍ରୁ-ଳିଆ ପଣ୍ଡା, ବଇଣିମ, ସାପୁଆଖେଳା, ସବାଖିଆ ବା କାଉଖିଆ ଆଦି ପରିଙ୍କଭୋଜୀ ଦୁଃସ୍ଥ ମଣିଷମାନେ ସାଇକେଲ ଚଢ଼ି ଦ୍ୱାରେ ଦ୍ୱାରେ ବୁଲୁଛନ୍ତି । ଯେକୌଣସି ବ୍ୟକ୍ତିଙ୍କୁ ପାହୁଣ୍ଡେ କି ଦି ପାହୁଣ୍ଡ ଯିବାକୁ ପଡ଼ିଲେ ଲୋଡ଼ା ହେଉଛି ସାଇକେଲଟିଏ । ପ୍ରତି ଗାଆଁ ମୁଣ୍ଡରେ ଛୋଟିଆ ଚାଳିଆ ଘରେ ଚାହା ଦୋକାନକୁ ଲାଗି କିଏ କମିତ ସାଇକେଲ ମରାମତି ଦୋକାନ ଆରମ୍ଭ କରିଦେଲେଣି ।

ଜୀବନକୁ ଗତିଶୀଳ କରିବା ପାଇଁ, ଉଦ୍ଦୀପିତ କରିବା ପାଇଁ ବା ଉଜ୍ଜୀବିତ କରିବା ପାଇଁ, ପ୍ରତ୍ୟେକ କାମକୁ ତ୍ୱରାନ୍ୱିତ କରିବା ପାଇଁ ସହର ବଜାରରୁ ଏବେ ହାତ-ଟଣା ରିକ୍ସା, ଘୋଡ଼ାଗାଡ଼ି ଆଦି ହଟିଯାଇ ବର୍ତ୍ତମାନ ତା'ର ସ୍ଥାନ ଅଧିକାର କଲାଣି ସ୍କୁଟର, ମଟର ସାଇକେଲ, ଅଟୋରିକ୍ସା, ଟ୍ୟାକ୍ସି । ସେହିପରି ମଫସଲକୁ ଗୋରୁ-

ଗାଡ଼ି, ସବାରୀ, ପାଲିଙ୍କି ଉଭାଇ ଯାଇ ଯେ ସ୍ଥାନରେ ଘରେ ଘରେ ପଶିଗଲାଣି ସାଇକେଲ ସଭ୍ୟତା । ଏଥିରେ କେହି କେବେହେଲେ ଦ୍ୱିମତ ହେବାର ନାହିଁ । ଦିନ ଥିଲା ଯେତେବେଳେ ଯାତ୍ରାଦଳର ଦୁଆରୀ ବାହାଣ ନବଜିଆ ଢଙ୍ଗରେ ଅଭିନୟ କରିଯାଉଥିଲା— "ରାବଣ ଆ—ଚଢ଼ିବୁ ତୁ ସାଇକେଲରେ । ସାଇକେଲର ଦୁଇଟା ଚକ ଘିରି ଘିରି ହୋଇ ଘୂରୁଥାଏ ସିଏ, ବୁଲି ନ ପାରଇ ଖାଲି ବାଲିରେ" ଇତ୍ୟାଦି ଇତ୍ୟାଦି.... । ଆଜିକାଲି ସେ କାଳ ଉଭାଇ ଗଲାଣି । ରାବଣ ଭଳି ଅସୀମ କ୍ଷମତାଧର ଦିଗ୍‌ବିଜୟୀ ଦୈତ୍ୟରାଜ ଭଳି ପୁରୁଷପୁଙ୍ଗବ କେବଳ ସାଇକେଲ ଚଢ଼ିବା ପାଇଁ ହକଦାର ନୁହନ୍ତି; ସାଣ୍ଡି ଖଣ୍ଡି ପିଲାଙ୍କଠାରୁ ଆରମ୍ଭ କରି ରାମା, ଶାମା, ଭୀମା ମଧ୍ୟ ସେଥିନିମନ୍ତେ ଆଗ୍ରହୀ । ଆଜନ୍ମରୁ ମାଟିର ସ୍ନେହରେ ଲାଳିତ ମଣିଷର ବର୍ତ୍ତମାନ ସମୟରେ ସ୍ୱଭାବ-ସଂସ୍କାର ବଦଳି ଗଲାଣି ।

ସ୍ୱାଧୀନ ଦେଶରେ ଅଭୂତପୂର୍ବ ପରିବେଶ ଓ ସ୍ୱତଃସ୍ଫୂର୍ତ୍ତି ଉଦ୍ଦୀପନା ଭିତରେ ବିଶୁଦ୍ଧ ଓ ପୂର୍ଣ୍ଣାଙ୍ଗ ସମ୍ବିଧାନର ପ୍ରବର୍ତ୍ତନ କରାଗଲା ପରେ ରାଷ୍ଟ୍ରର ଆଖିରେ, ଆଇନ ଆଖିରେ, ମୌଳିକ ଅଧିକାର ଆଖିରେ ସବୁ ମଣିଷ ସମାନ । ଭାଷାଗତ ବିଭେଦ, ଜାତିଗତ ବିଭେଦ, ଧର୍ମଗତ ବିଭେଦ, ଅର୍ଥନୈତିକ ବିଭେଦ ଦୂର ହୋଇ ହରିଜନ, ଗିରିଜନ, ପଲ୍ଲୀଜନ, ସହରଜନ ଆଦି ହୋଇଗଲେଣି ଗଣତନ୍ତ୍ରୀ ଓ ସମାଜତନ୍ତ୍ରୀ । ତଥାପି ସେମାନଙ୍କର ଗୁଣଗତ ପାର୍ଥକ୍ୟ ସୁସ୍ପଷ୍ଟ । ସେହି କାରଣରୁ ମୋହନର ପୁଅ ମନମୋହନ ବାପର ବଂଶଗତ ପାରଂପରିକ ବୃତ୍ତିକୁ କୌଣସି ମତେ ଚଳାଇ ରଖିଥିଲେ ମଧ୍ୟ ତାହା ତାର ପ୍ରବୃତ୍ତିର ଅନୁରୂପ ହୋଇପାରୁ ନାହିଁ । କ୍ରମାଗତ ଦୂରତ୍ୱ ବଢ଼ୁଛି, ବଢ଼ୁଛି ଧନତନ୍ତ୍ରୀମାନଙ୍କ ଦ୍ୱାରା ପରିଚାଳିତ ଗଣତନ୍ତ୍ରର ଆଭ୍ୟନ୍ତରୀଣ ପ୍ରତିଯୋଗିତା । ଆଉ ତାହା ଗତି କରୁଛି ସ୍ୱୈରତାନ୍ତ୍ରିକତା ଆଡ଼କୁ ।

ପହିଲେ ମୋହନ ନାଥ ନାଲି ଆଖି ଦେଖାଇ ପୁଅକୁ ନିଜ ଆୟତ୍ତରେ ରଖିବାକୁ ଆଗ୍ରହୀ ଥିଲେ । ସେଥିରେ ବିଶେଷ ଲାଭ ହୋଇନାହିଁ । ମନମୋହନ ପିଲାଟାର କଥାବାର୍ତ୍ତା, ଚାଲିଚଳନ, ପୋଷାକ ପରିଚ୍ଛଦ ଭିନ୍ନ ଧରଣର । ସବୁଥିରେ ସିମିତ ଆଧୁନିକତାର ଚିହ୍ନ ଏକ ଡିଗ୍ରୀ ଅଧିକ । ସେଥିପାଇଁ ମୋହନ ଚେଷ୍ଟା କରି କରି ନିର୍ଲିପ୍ତ ହୋଇଗଲାଣି । ଯୌବନର ଯାହା ଧର୍ମ ସେଥିରେ ବାପର ଉପଦେଶ କାନରେ ପଶିବାର ନୁହେଁ । ପୁଅର ଆଧୁନିକତାକୁ ଆଉ ସେ ଦେହକୁ ନେଉନାହିଁ । ମୁହଁ ନେଫୁଡ଼ି ନାହିଁ କି ନାକ ଟେକୁ ନାହିଁ । ବରଂ ଅବିଦ୍ୟା, ଅସ୍ମିତା, ରାଗ-ଦ୍ୱେଷ, ଅଭିନିବେଶ ଆଦି ପଞ୍ଚକ୍ଲେଶର ବାହାରେ ରହି ସବୁ ପ୍ରକାର କଦର୍ଥନାରୁ ଦୂରରେ ରହିବାକୁ ଚେଷ୍ଟା କରୁଛି ମାତ୍ର । ପୁଅର ରୁଚି, ସ୍ୱପ୍ନ, ଉଚ୍ଚାଶାକୁ ମନେ ମନେ ପସନ୍ଦ ନ କଲେ ସୁଦ୍ଧା ସହିନେବାକୁ ଉଦ୍ୟମ କରୁଛି । କେବଳ ମୋହନ କାହିଁକି, ଏହିଭଳି ଅବସ୍ଥା ଦେଖା ଦେଇଛି ପ୍ରାୟ ପ୍ରତ୍ୟେକ ପରିବାର

ମଧ୍ୟରେ । ପ୍ରତ୍ୟେକ ପରିବାରର ଲୋକମାନେ ଉଚ୍ଚା ଅଧିକେ ସେମାନଙ୍କର ନିରଙ୍କୁଶ କର୍ତ୍ତୃତ୍ୱ ସ୍ୱତନ୍ତ୍ରଭାବେ ସ୍ୱୀକାର କରନ୍ତି ବ୍ୟକ୍ତିଗତ ସ୍ୱାଧିକାର ପ୍ରତିଷ୍ଠା ପାଇଁ ବଢ଼ ସରକାର । ପ୍ରବୀଣ ଗୃହସ୍ୱାମୀମାନେ ଏହି ସ୍ୱେଚ୍ଛାଚାରିତା ପ୍ରତି ପ୍ରୟୋଜନୀୟ ବୈଧ ସମର୍ଥନ ଯୋଗାଇ-ଛନ୍ତି ନିରୁପାୟ ହୋଇ । ନୋହିଲେ ନିଜ ଘରର ଗୁମର ବାହାରେ ଫିଟିଯିବ, ଲୋକେ ହସିବେ ।

ଉଦ୍ଦାମ ପ୍ରାଣଚଞ୍ଚଳ ମନମୋହନ କେବେହେଲେ ଧରିବା ଭଳି ଭେକ, ମାଳା-ତିଳକ ଚର୍ଚ୍ଚିତ ହୋଇ ବାହାରକୁ ବାହାରିବା ପାଇଁ ଘୃଣା କରେ । ଏଭଳି ପରମ୍ପରା ଶ୍ରେଣୀ-ହୀନ ଓ ଶୋଷଣହୀନ ମହାନ ମନୀଷ ସଭ୍ୟତାର ପରିପନ୍ଥୀ । ସାଙ୍ଗ ସାଥୀମାନେ ତାକୁ ଥଟ୍ଟା ଟାପରା କରନ୍ତି । ସେଥିପାଇଁ ସେ ବାହାରେ ବରଂ ପାଇଜାମା ଓ ଲୁଙ୍ଗି ଟାଏ ପିନ୍ଧି ସାଇକେଲ ଗଡ଼ାଏ । କର୍କଶ, ସୁନ୍ଦର, ମଙ୍ଗଳକୃତ, ପାଲିସ ନାହିଁଥିଲାଟା ଯନ୍ତ୍ରର ସହିତ ରଖା ହୋଇଥାଏ ନେହି ସାଇକେଲର କ୍ୟାରିଅର ଉପରେ, ଶୃଙ୍ଖଳାବଦ୍ଧ ପରଂପରାର ସମ୍ବନ୍ଧ ଭଳି । ଦରିଦ୍ର ଧରଣେ ଭିକ୍ଷା ସଂଗ୍ରହ କରି ରଖିବା ପାଇଁ ଶ୍ରେଷ୍ଠ ଓ ବଡ଼ ଧରଣର କେତେଗୁଡ଼ାଏ ଅଧା ମଇଳା ବ୍ୟାଗ୍ ଝୁଲୁଥାଏ ହ୍ୟାଣ୍ଡେଲ ପାଖରେ । ପୁରୁଣା ଯୁଗ ପରେ ଯେଉଁ ନୂଆ ଯୁଗ ଆରମ୍ଭ ହୋଇଗଲାଣି, ମନମୋହନ ହେଉଛି ତା'ର ଆବାହକମାନଙ୍କ ମଧ୍ୟରୁ ଜଣେ । ସେ ପୁରାତନ ବ୍ୟବସ୍ଥାକୁ ଚୂର୍ଣ୍ଣ-ବିଚୂର୍ଣ୍ଣ କରି କନ୍ଥା-କନ୍ତରାରେ ନିଆଁ ଲଗାଇ ଦେବାକୁ ଇଚ୍ଛୁକ । ପ୍ରାଚୀନପନ୍ଥୀ କାର୍ଯ୍ୟଗୁଡ଼ିକ ମନେହେଉଛି ତାହା ଆଖିରେ ପ୍ରତିକ୍ରିୟାଶୀଳ ବୁର୍ଜୁମାନଙ୍କର ଭଣ୍ଡାମୀ । ସାଇକେଲ ଧରି ବାହାରି ପଡ଼ିଲେ ସେ ଘଣ୍ଟାକ ଭିତରେ ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମ—ପାଞ୍ଚଖଣ୍ଡ ଗାଆଁ ବୁଲି-ଆସେ । ପ୍ରତ୍ୟେକ ଘରର ଦୁଆର ପାଖରେ ସାଇକେଲ ଅଟକାଇ କେବେହେଲେ ବଦଳରେ ଆଧୁ-ନିକ ଗିଟାରରେ ସୁର ଧରେ । ଅଳ୍ପ ସମୟ ଆଧୁନିକ ଧରଣରେ ସୁର ଶୁଣାଇବା ସଙ୍ଗେ ସଙ୍ଗେ ଚିହାଇ ଚିହାଇ ଡାକ ଦିଏ—'ମାଆ ଆମକୁ ଗଣ୍ଡିଏ ମିଳିଯାଉ' । ଭିକ୍ଷା ମିଳିଯିବା ସଙ୍ଗେ ସଙ୍ଗେ ପିଁକନା ସାଇକେଲ ଗଡ଼େ ଆଉ ଜଣକର ଦାଣ୍ଡଦୁଆର ଯାଏ । ଅପରାହ୍ଣ ହୋଇଗଲେ ଭିକ୍ଷାକରିବା ନିଷେଧ । ଏହା ସୁବିଧାରେ ସହଳ ସହଳ ମନମୋହନ ତା'ର କାମ ଶେଷ କରିଦିଏ । ଏହି ଭିକ୍ଷାବୃତ୍ତି ତା ଆଗରେ ଏକ ପ୍ରକାର ସ୍ୱନ୍ଦ୍ୱା ଆହରଣର ଜୀବିକା । ସ୍ୱନ୍ଦ୍ୱାଭେଦା ଅଦାୟର ପକ୍ଷୀ ଓ ପରିମାଣ ଯେପରି ଧନକୁ ଧନ ବଢ଼ୁ ଗୁଣରେ ବଢ଼ି ଚାଲିଛି, ସେଥିରେ ସେ ନିଜର ମୌଳିକ ବୃତ୍ତିକୁ ଅସମ୍ମାନଜନକ ମନେ କରେ-ନାହିଁ କିମ୍ବା ନିଜକୁ ଲୁଟିଖିଆ ଶ୍ରମକାତର ମଣିଷ ଗୋଷ୍ଠୀ ଭିତରକୁ ଟାଣିନିଏ ନାହିଁ । କାହିଁକି ନେବ ? ଡାକ୍ତର, ଦଲାଲ, ଅସାଧୁ କର୍ମଚାରୀମାନେ କଣ ଲୁଟିଖିଆ ଗୋଷ୍ଠୀ ଭିତରେ ନୁହନ୍ତି ?

।। ତିନି ।।

ମନମୋହନ କଣ୍ଠରୁ ଡାକ ପଦେ ଶୁଣିବା ପାଇଁ ପଣ୍ଡାଘର ଝିଅ ଚଳୋଉମା କାନ ଡେରିଥାଏ । ସୌଖୀନ ମନ ତା'ର ଅନେକ ବେଳରୁ କନକନ ହେଉଥାଏ । ଅନେକ ବେଳୁ କାମରେ ତା'ର ମନ ଲଗେ ନାହିଁ । ଗିଟାରର ଟୁଂଟାଂ ଆୱାଜ କାନରେ ବାଜୁ ନ ବାଜୁଣୁ ହାତର ପାପୁଲି ଦୁଇଟିରେ ଚୁଡ଼ିଲ ଭରି ସେ ହାଜର ହୋଇଯାଏ ଦାଣ୍ଡରେ । ଈଷତ୍ ବଙ୍କିମ ଦୃଷ୍ଟିରେ ଚୁରିଆଡ଼କୁ ଚାହିଁ ଚୁଡ଼ିଲ ଅଜାଡ଼ି ଦିଏ ଲଉ-ଥାଳରେ । ଏହି ସ୍ୱଳ୍ପ ସମୟ ଭିତରେ ତାହାର କୌତୂହଳୀ ଆଖି ଦୁଇଟି ରୁପେଲି ଚଞ୍ଚଳ ମାଛ ଭଳି କେଉଁଟି କେଉଁଟି ବୁଲୁ ଥାଏ ମନମୋହନର ଦେହ ଉପରେ, କପାଳ ଉପରେ, ଚିବୁକ ଉପରେ । ସେହି ଦୃଷ୍ଟିର ସ୍ନିଗ୍ଧତା, ମୁହଁର କମନୀୟତା ହିଁ ତ ତାର କୋଟି-ନିଧି, ତାର ଗଣ୍ଠିଧନ । ଯିମିତି ସମଗ୍ର ଅପରାହ୍ଣରେ କର୍ମରତ ମୁହୂର୍ତ୍ତ ଗୁଡ଼ିକୁ ତାହା ହିଁ ମୋହଗ୍ରସ୍ତ କରି ରଖିଥାଏ । ପରଦିନ ପ୍ରତ୍ୟୁଷରେ ଶେଯ ଛାଡ଼ିଲା ପରଠାରୁ ଚଳୋଉମା ନିଜକୁ ପ୍ରସ୍ତୁତ କରୁଥାଏ ମନମୋହନର ଥାଳକୁ ତା'ର ପୁଷ୍ଟ ଆଞ୍ଜୁଳିରେ ଦେବା ପାଇଁ ।

ତନୁପାତଳୀ ଝିଅଟିଏ ଚଳୋଉମା । ଅବିକଳ ବେତସ ଲତା ଭଳି । ସେହି-ଭଳି ବିନମ୍ର ତରଳ । ଛନ୍ଦ ଜାଣେ ନାହିଁ । ଗୃହସ୍ଥୀ କ'ଣ, ତାହା ବୁଝିବାକୁ ଆହୁରି ସମୟ ଆବଶ୍ୟକ । ମନେ ହୁଏ, ସତେ ଯିମିତି ସେ ଗୋଟାଏ କୁଆଁରିଆ ନଈ । ବାଧା-ବନ୍ଧନ ନ ମାନି ବହିଯିବା, ସହଜ ସ୍ୱଭାବରେ କୂଳ ଲଂଘନ କରିବା, ଅଜାଡ଼ି ହୋଇପଡ଼ିବା ତା'ର ସ୍ୱାଭାବିକ ଧର୍ମ । ସେଥିରେ ହିଁ ତାର ତୃପ୍ତି, ସେଥିରେ ହିଁ ତାର ଆନନ୍ଦ ।

ପ୍ରଥମେ ଯେଉଁଦିନ ଆସି ତରୁଣ ମନମୋହନ ପଣ୍ଡାଘର ଦାଣ୍ଡପିଣ୍ଡା ପାଖ ନଡ଼ିଆ ଗଛକୁ ସାଇକେଲ ଡେରିଦେଇ ଗିଟାର ଧରି ବଜାଇବାକୁ ଆରମ୍ଭ କଲା, ସେଦିନ ଗ୍ରାମା-ଞ୍ଚଳରେ ଏକ ନୂଆ ଖବର ରଟିଗଲା । ସେହିଦିନଠାରୁ ପିତୃମାତୃହୀନ ଉଦ୍‌ଭିନ୍ନ ଯୌବନା ଚଳର ମନ ମଧ୍ୟରେ ସବୁରି ଅଲକ୍ଷ୍ୟରେ ଅହେତୁକ ଆନନ୍ଦ ଦାନା ବାନ୍ଧିଲା । ତାହା ଆଉ ସହଜରେ ତରଳିଲା ନାହିଁ । ଅଲୌକିକ ସେହି ଆନନ୍ଦର ପ୍ରଲୋଭନ । ଏତେ ବିଶାଳ, ଏତେ ଗଭୀର, ଏତେ ଅଚଞ୍ଚଳ, ଏତେ ପ୍ରଶାନ୍ତ ପ୍ରଲୋଭନ କେବେ ତାହାକୁ ଆକର୍ଷଣ କରି ନ ଥିଲା । ସେ କେବେ କଳ୍ପନା କରି ପାରି ନ ଥିଲା ତରୁଣ ସେ, ପେଶୀମସ୍ତ ବିସ୍ଫାରିତ ବକ୍ଷର ନିକ୍ଷେପଣ, ଦଳନ, ମନ୍ଥନ ତାହାର ନେଡ଼ା । ଦେହର ଚମଡ଼ା ତଳେ ତଳେ ପ୍ରବୃତ୍ତିର ଆଦର ଆଶାସ୍ୱୀ ରକ୍ତ ପ୍ରବାହ ମୁହଁ ଉପରକୁ ଉପୁଚି ଆସି ଆସି ଏମିତି ଦରଫୁଟ କୋକନଦର ଆଭା ଛୁଇଁ ଦେଇଯିବ । ଏକାନ୍ତ ଅନ୍ତରଙ୍ଗ, ଏକାନ୍ତ ଆଶ୍ଳେଷକାମୀ ନାରୀତ୍ୱ ତାର ସେ ବକ୍ଷ, ନିତମ୍ବ, କଟି, ଜଘନରେ କମ୍ପନ ସୃଷ୍ଟି କରିବ; ଲୋମକୂପରେ ସ୍ପନ୍ଦନ ଜନ୍ମାଇବ ନବୀନ ଜୀବନର । ସେ ଖାଲି ଚଞ୍ଚଳ ଓ ଇତସ୍ତତ ହୋଇ ଉଠୁଥିବ କଅଁଳା ବାଲୁଙ୍ଗା ଭଳି—ଛନଛନ, କନକନ ।

ଅପର ତରଫରୁ ଦେଖିବାକୁ ଗଲେ ମନମୋହନର ଆଖି ଯେ ତାହା ଉପରେ ବୁଲି ନ ଯାଇଛି, ତାହା କୁହାଯାଇ ପାରିବ ନାହିଁ । କୁହୁଡ଼ିର ଆବରଣ ଭିତରେ ଯିମିତି ଉଦିତ ସୂର୍ଯ୍ୟକୁ ଅନୁଭବ କରାଯାଇଥାଏ, ସେହିପରି ପାତଳ କୁଆମଇତା ରଙ୍ଗର ଝାଙ୍ଗାଇଲ ଶାଢ଼ୀର ପାତଳା ଆବରଣ ଭିତରେ ସେ ତଲର ରୂପ-ଲବଣ୍ୟକୁ ଅନୁଭବ କରିପାରିଛି । ଆଖିର ଗ୍ଲାସ ମାଧ୍ୟମରେ ସେ ସମୁଦ୍ରର ପାଣିକୁ ମାପିବାକୁ ଇଚ୍ଛା କରିଛି । ଦୈନିକ ମୁହୂର୍ତ୍ତକ ପାଇଁ ତାହାକୁ ଅନାଇଁ ଅଲୌକିକ ଅନୁଭୂତିରେ ଶିହରି ଉଠିଛି, ହୃଦୟ ଆର୍ଦ୍ର ହୋଇଛି । ତାର ରୂପର ଔଜଲ୍ୟରେ, ହସରେ, ଚଳଣିରେ ସେ ମୁଗ୍ଧ ହୋଇଛି । ହୋଇ ଯାଇଛି ବସ୍ତୁସ୍ଥରେ ହତବାକ୍ । ଶାଢ଼ୀର ଖସଖସ ଶବ୍ଦ, ଚୁଡ଼ିର ରୁଣୁଝୁଣୁ ଶବ୍ଦ ଓ ମୃଦୁ ପାଦଧ୍ୱନି ତାର ହୃଦ ଭିତରେ ଯେଉଁ ଅଳଗ ଗାର ଟାଣି ଦେଇଛି, ତାହା କାହାକୁ ଦେଖାଇ ହୁଏନାହିଁ । ସମଗ୍ର ଶରୀର ଶରୀର ଅନୁରାଗରେ ତଲୋତ୍ତମା ଆଡ଼କୁ ଉଦ୍ଦାମର ଭାବରେ ଆକର୍ଷିତ ହୋଇଯାଉଛି । ସତେ ଯିମିତି ଅନାୟାସରେ ଗଢ଼ି-ଉଠିଛି ଏକ ପ୍ରକାର ଅକୁହା ସମ୍ପର୍କ । ମନେ ହୋଇଛି ଏହି ସମ୍ପର୍କ ସରଳ, ଏହି ସମ୍ପର୍କ ସୁନ୍ଦର, ଏହି ସମ୍ପର୍କ ମଧୁମୟ । ବନ୍ଦ ହୋଇ ଯାଇଛି ଗିଟାରର ସୁର । କଣ୍ଠ ଫଟାଇ ଫୁଟି ଉଠି ପାରିନି ଗୀତ । ସେ ଭୁଲି ଯାଇଛି ଗନ୍ତବ୍ୟ, ଭୁଲିଛି ପୂର୍ବା-ପର, ନିଜର ଆତ୍ମଚେତନା । ଅତୀତ ଓ ବର୍ତ୍ତମାନକୁ ସମ୍ପୂର୍ଣ୍ଣ ହଜାଇ ଦେଇଛି ତଲର ଛଳ ଛଳ ନୟନ ଦୁଇଟି ମଧ୍ୟରେ ।

ସ୍ଥିର ଜଳ ଭଳି ଶାନ୍ତ ଓ ପରଂପରା ଗତ ଭାବେ ଗତାନୁଗତିକ ଜୀବନ ଧାରାରେ ମନମୋହନ ଅନୁଭବ କରି ପାରିଛି ଏକ ପ୍ରକାର ଶୃଙ୍ଖଳା, ଏକପ୍ରକାର ବେଦନାବୋଧ, ଏକପ୍ରକାର ଅସହାୟତା, ଅସମ୍ପୂର୍ଣ୍ଣତା ଓ ବ୍ୟର୍ଥତା; ଯାହାକୁ ଭାଷାରେ ପ୍ରକାଶ କରା-ଯାଇପାରେ ନାହିଁ । କ୍ଳାନ୍ତ-ଅବସନ୍ନ ଶରୀର ନେଇ ଘରକୁ ଫେରିଲା ପରେ ଦୈନିକ ଅନ୍ଧାରୁଆ ଗମ୍ଭୀରୀ ଘରେ ଏହି ଅନୁଭୂତିକୁ ସେ ମନେ ମନେ ବାରମ୍ବାର ଗୁଣି ହୋଇଛି । ଶୂନ୍ୟ ଦେଇ ଗୁଣନ କରିଛି ଶୂନ୍ୟତାକୁ । ବଢ଼ିଛି କେବଳ ଶୂନ୍ୟତାର ମାତ୍ରା । ଶୂନ୍ୟ ଦ୍ୱାରା ବାରମ୍ବାର ଶୂନ୍ୟକୁ ଭାଗ ମଧ୍ୟ କରିଛି । ପହଞ୍ଚିଛି ଯାଇ ଶୂନ୍ୟରେ । ଏହି ଶୂନ୍ୟ କଳ୍ପନାର ଗୁଣଫଳ ଓ ଭାଗଫଳ ଏତେ ଅପାର୍ଥିବ ଯେ ସେ ତାହାରି ଭିତରୁ କେବଳ ପାଇଛି ହତାଶା, ଦୁଃଖ ଓ ମର୍ମଭେଦୀ ଦୀର୍ଘଶ୍ୱାସ, ଯାହା ତାର ଅନ୍ତଃସ୍ଥଳରୁ ଉଠି ନିଃଶବ୍ଦରେ ମିଳାଇ ଯାଇଛି ଶୂନ୍ୟରେ । ମନମୋହନ ଯିମିତି ନିଜର ପୃଥିବୀରେ ବିଚରଣ କରୁନାହିଁ, ସତେ ଯିମିତି ଏକ ପ୍ରକାର କୁହୁଡ଼ିଆ ପରିବେଶ ମଧ୍ୟରେ ନିଜର ଅସ୍ତିତ୍ୱକୁ ସମ୍ଭାଳି ନେଇ ଏକ ଅନିର୍ଦ୍ଦିଷ୍ଟ ପଥ ଅତିକ୍ରମ କରୁଛି । ବାସ୍ତବରେ ସେ ଛଟପଟ ହେଉଛି । ବେଳେବେଳେ ଅବସ୍ଥା ନିୟନ୍ତ୍ରଣାତୀତ ହୋଇଯାଉଛି ।

ତାର ମନେ ହୋଇଛି ଯେପରି ପଣ୍ଡାଘର ଝିଅ ତଲୋତ୍ତମା ସବୁଠାରୁ ଅନ୍ତ-ରଙ୍ଗ, ସବୁଠାରୁ ନିକଟବର୍ତ୍ତିନୀ । ତା ମନର ଅନ୍ତଃସ୍ଥଳ ମହୁଫେଣାର ପ୍ରତ୍ୟେକଟି କୋଠରୀ ପରିପୂର୍ଣ୍ଣ ହୋଇଯାଇଛି ସେହି ଅନିର୍ବଚନୀୟ ପ୍ରେମ ମଧୁରେ । ସୁଯୋଗ

ପୂହିଲେ ସେ ତାହାକୁ ଘରକୁ ଫେରା ଆଣିବାକୁ ପଛଦୃଷ୍ଟି ଦେବନାହିଁ । ସୁଖ ଦୁଃଖ, ହସ-କାନ୍ଦ, ଆପଦ-ବିପଦ, ଆଧି-ବ୍ୟାଧି, ଯୌବନ-ଜରା ସବୁ କ୍ଷେତ୍ରରେ ଧ୍ୟାନେ ହାତକୁ ହାତ ମିଳାଇ, ପାଦକୁ ପାଦ ପକାଇ, ହୃଦୟକୁ ହୃଦୟ ଲଗାଇ, ଜୀବନ ସହିତ ଜୀବନ ଯୁକ୍ତ କରି ଏକତ୍ର ରଢ କରିବେ, ଏକତ୍ର ଚିନ୍ତା କରିବେ, ଏକତ୍ର ସଂସାରର ଝଡ଼ିକୁ ସ୍କନ୍ଧରେ ବହନ କରିବେ । ଏକ ଜୈବ ଆଦିମ ବ୍ୟଗ୍ରତା ମନମୋହନକୁ ଗ୍ରାସ କରିଛି । ଅନ୍ତଃସ୍ଥିତ ଲାଳସାର ଅନିର୍ବାଣ ତାପଉତ୍ତାପ ତା' ଦେହରେ ସଞ୍ଚରି ଯାଇଛି ।

ଚିରପ୍ରଶାନ୍ତ କମନୀୟ ତିଲୋତ୍ତମାର ଅନ୍ତର ଭିତରେ ଯେଉଁପରି ସୃଷ୍ଟି ହୋଇଛି ଅସ୍ଥିରତାର ଜୁଆର, ସେହିପରି ବାହାରକୁ ବିରାମ ବିହୀନ ପ୍ରାଣ-ଚଞ୍ଚଳ ମନମୋହନର ଭିତରେ ଭିତରେ ସୃଷ୍ଟି ହୋଇଛି ଅସାମାନ୍ୟ ଆକାଙ୍‌କ୍ଷାର ବ୍ୟାପ୍ତି । ଗ୍ରାମର ସମବୟସୀ ଦୁର୍ଦ୍ଦମନୀୟ ଫୁଟନ୍ତ ଛୁଟନ୍ତ ହିରୋମାନେ ତାର କ୍ଳାନ୍ତ-ମଳିନ ଉଦାସ ଆଖିର ଅଦ୍‌ଭୁତ ଭାଷାରେ ନିକଟସ୍ଥ ହୋଇଛନ୍ତି ମଧ୍ୟ । ସେମାନେ ହେଲେ ତାର ବନ୍ଧୁ ।

ମନମୋହନ ନିଜ ମନ ଗହନର ପ୍ରବଳ ଅର୍ଥମୟ ଦ୍ୱନ୍ଦ୍ୱକୁ ଏହି ଧୁରନ୍ଧର ବନ୍ଧୁମାନଙ୍କ ନିକଟରେ ପ୍ରକାଶ କରି ବିପୁଳ ବେଦନାର ଲାଘବ ନିମନ୍ତେ ଅସହାୟ କଣ୍ଠରେ ଉପଦେଶ ଭିକ୍ଷା କରିଛି । ଜୀବନରେ ପ୍ରତିକୂଳ ସ୍ରୋତରେ, ବିପରୀତ ଦିଗରେ ପହଁରିବା ପାଇଁ ମନୋବଳ ଓ ଦକ୍ଷତା ଅର୍ଜନ ନିମନ୍ତେ ଯଥାସମ୍ଭବ ସାହାଯ୍ୟ କରିଛନ୍ତି ସେମାନେ । ସେହିମାନଙ୍କର ସାନ୍ତ୍ୱନା ଓ ସହାନୁଭୂତି ତାକୁ ଦେଇଛି ଯଥେଷ୍ଟ ବଳ, ଯୋଗାଇଛି ଅପରିସୀମ ପ୍ରେରଣା । ଦାଦାମାନଙ୍କର ସମୟୋପଯୋଗୀ ଗୋପନ ପରାମର୍ଶ ମନମୋହନର ମନକୁ ପାଇଛି । ଖୋଲିଦେଇଛି ଅପ୍ରତ୍ୟାଶିତ ସମ୍ଭାବନାର ଦୁର୍ଗତୋରଣ । ସେଥିରେ ମୁହଁ ତାର ଉଜ୍ଜ୍ୱଳ ହୋଇ ଉଠିଛି, ଉଲ୍ଲସିତ ହୋଇ ଉଠିଛି ଦେହ; ମନେ ହୋଇଛି ଅବାଟରେ ବାଟ ଫିଟିଲା ଭଳି ।

ଇଚ୍ଛା ହିଁ ମଣିଷକୁ କରିଥାଏ ସକ୍ରିୟ । ଇଚ୍ଛାକୁ କାର୍ଯ୍ୟକାରୀ କରିବା ପାଇଁ ମନ ସର୍ବଦା ବ୍ୟାକୁଳ ହୋଇଉଠେ ।

## ।। ଛଅ ।।

ସେଦିନ ନିଶୁତି ରାତିରେ ହଠାତ କାହାର ଅଶ୍ରାବ୍ୟ ଅବ୍ୟକ୍ତ ବାଣୀ ଶୁଣି ମୋହନ ନାଥର ନିଦ ଭାଙ୍ଗିଗଲା । ସେ ତକ୍ଷଣାତ୍ ଉଠି ବସି ପଡ଼ିଲା ବିଛଣାରେ । କିଏ ଯେପରି ଘାଗଡ଼ା ଗଳାରେ ତାହାକୁ ସମ୍ବୋଧନ କରୁଛି—'ଶୁଣ ହେ ମୋହନ ନାଥ ! ତୋର ପୁଅକୁ ରଘୁପଣ୍ଡା ଝିଅ ତିଲୋତ୍ତମା ସହିତ ଆଗାମୀ ବୈଶାଖ ତିଥିରେ ବିବାହ ଦିଅ । ସେ କନ୍ୟା ଆମ୍ଭର ଆଶୀର୍ବାଦ ନେଇ ତାହାପାଇଁ ଜନ୍ମିଛି । ଏହି କାର୍ଯ୍ୟରେ ଯଦି ବିଘ୍ନ ଘଟେ, ତେବେ ଆମ୍ଭର କୋପରୁ ତୁମ୍ଭର ବଂଶ ନିସ୍ତାର ପାଇବ ନାହିଁ ।'

ଥର ଥର କରି ଉନ୍ନଥର ଶୂନ୍ୟବାଣୀ ଶୁଣିବାକୁ ପାଇ ମୋହନ ନାଥ ନିଜର କାନକୁ ବିଶ୍ୱାସ କରି ପାରିଲା ନାହିଁ । ଖୋଲା ଝରକା ବାଟେ ଝଲକାଏ ରୁପେଲି ଜହ୍ନର ଆଲୁଅ ଘର ଭିତରକୁ ଡେଇଁପଡ଼ି ମୋଟାମୋଟି ଭାବରେ ଘରକୁ ଝାପ୍‌ସା ଆଲୁଅରେ ଆଲୋକିତ କରିଛି । ଅଭ୍ୟାସବଶତଃ ମୋହନ ସେହି ଝରକା ଦେଇ ଚାହିଁଲା ବାହାରକୁ । କଅଣ ଗୋଟାଏ ଖୋଜିବାରେ ମନ ଦେଲା । ଆକାଶରେ ପହରି ଯାଉଛି ଦଶମୀ ତିଥିର ଅସଂପୂର୍ଣ୍ଣ ଜହ୍ନ, ଚାରିଆଡ଼େ ଚନ୍ଦ୍ରଚପୁଡ଼ା ଅମୃତମୟ ଜ୍ୟୋତ୍ସ୍ନାର ପ୍ଲାବନ; ଅଗଣା ମଝିରେ ଥିବା ସଜନା ଗଛର ପତ୍ର ସବୁ ଯିମିଡ଼ି ଗୋଟିଗୋଟି ଗଣିହୋଇ ଯାଉଛି । ତାହାର ମୂଳରେ ପାଉଁଶ ଗଦା ପାଖରେ ଯେଉଁଠି ସବୁ ଦିନେ କାଳି କୁକୁଡ଼ିଟା ଶୋଇ ଶୋଇ ଦିନରେ ଖରା ପୁଏଁ, ସେହିଠାରେ କାଳିଆବାକ୍ସ ଭଳି କଅଣ ଗୋଟାଏ ଥୁଆ ହୋଇଛି । ସେଠାରୁ ସଁ ସଁ ଶବ୍ଦ ବାହାରୁଛି । ଆଉ ତାର ସରୁ ଦଉଡ଼ି ପିଣ୍ଡା ଉପରକୁ ଲମ୍ବି ଆସି କେଉଁଆଡ଼େ ଅଦୃଶ୍ୟ ହୋଇ ଯାଇଛି, ସ୍ପଷ୍ଟ ଧରି ହେଉ ନାହିଁ ।

ଆଖିରେ ପ୍ରଚଣ୍ଡ ବିସ୍ମୟ । କବାଟ ଖୋଲି ସେ ପଦାକୁ ବାହାରି ପଡ଼ିଲା ବ୍ୟସ୍ତ ପାଦରେ । ଦେଖିଲା ପୁଅ ମନମୋହନର ଶୋଇବା ଘରର କବାଟ ଖୋଲା ହୋଇ ରହିଛି, ଆଉ ପୁଅ ସେହି ଗମ୍ଭିର ଘର ଭିତରେ ଠିଆ ହୋଇ ବରଡ଼ା ପତ୍ର ପରି ଥରୁଛି । ଅଦ୍‌ଭୁତ ନର୍ଭସନେସ୍ ! ଭୟରେ ଛାତିଟା ଧକ୍ ଧକ୍ କରୁଛି । ଏହି ସରୁ ଦଉଡ଼ିଟି ତାର ଶୋଇବା ଘର ଭିତରୁ ବାହାରି ସଜନାଗଛ ମୂଳରେ ଥିବା ବାକ୍ସ ପର୍ଯ୍ୟନ୍ତ ଲମ୍ବି ଯାଇଛି । ଆବଶ୍ୟକୀୟ କ୍ଷିପ୍ରତା, ବୁଦ୍ଧି ଓ କୌଶଳର ଅଭାବରୁ ସେ ହାତାହାତି ଧରା-ପଡ଼ି ଯାଇଛି । ଅନର୍ଗଳ ପ୍ରଶ୍ନ ପଚାରିଲେ ସୁଦ୍ଧା କୌଣସି କଥା ତାର ତୁଣ୍ଡରୁ ଫିଟିଲା-ନାହିଁ । ସେହି ବାକ୍‌ସଟା ଗୋଟାଏ ଟେପ୍ ରେକର୍ଡ଼ର ଯନ୍ତ୍ର ଓ ଦଉଡ଼ିଟାକୁ ବିଜୁଳି ତାର ବୋଲି ବୁଝିବାକୁ ଆଉ ବିଳମ୍ବ ହେଲାନାହିଁ । ସଙ୍ଗେ ସଙ୍ଗେ ତାର ଗୋରାମୁହଁ ହଠାତ୍ କ୍ରୋଧରେ ପାଚିଲା ଟମାଟୋର ରଙ୍ଗ ଧରିଗଲା ।

ମୋହନ ନାଥ ଠଉରି କରିନେଲା ଯେ ଚକ୍ରାନ୍ତର ମୂଳପିଣ୍ଡ କେଉଁଠି ? ଦୈବବାଣୀ ଛଳରେ ପୁଅ ତାର ଟେପ୍‌ରେକର୍ଡ଼ ମାଧ୍ୟମରେ ନିଜର ମନୋଭାବ ପ୍ରକାଶ କରିଛି । ଏତେ କ୍ଷିପ୍ର ଗତିରେ ସେ ବାହାରକୁ ଆସିଲା, ଯାହା ଫଳରେ ଯନ୍ତ୍ରଟି ଲୁଚାଇବା ପାଇଁ ପୁଅକୁ ସମୟ ମିଳିଲା ନାହିଁ ।

ତାହାପରେ ଦୀର୍ଘ ଦିନର ସଞ୍ଚିତ ଅଶାନ୍ତି, ଯନ୍ତ୍ରଣା, କ୍ରୋଧ ଓ କ୍ଷୋଭରେ ଫାଟିପଡ଼ି ମୋହନ ହିତାହିତ ଜ୍ଞାନ ହରାଇ ବସିଲା । ତାର ବୁଢ଼ା ପାପରା ଦେହରେ ଏତେ ବଳ କେଉଁଠୁ ଆସିଲା ଜାଣି ପାରିଲା ନାହିଁ । ଆଜି କାଲିର ଦୁନିଆଁରେ ଅବଶ୍ୟ ଏଭଳି ପଦକ୍ଷେପର ବିଶେଷ କିଛି ଅର୍ଥ ନ ଥିଲା । କିନ୍ତୁ ସେ ଯେଉଁଭଳି ଲୋକ ଭାଙ୍ଗି-ଯିବ ପଛେ ନଇଁପଡ଼ିବ ନାହିଁ ।

('ସମାବେଶ'ର ନବମ ବର୍ଷ ତୃତୀୟ ସଂଖ୍ୟା, ଜୁଲାଇ, ୧୯୮୯ରେ ପ୍ରକାଶିତ)

—*—

# ଧୂଳି ମାଟି

ଅକ୍ଟୋବରର ଶେଷ । ଶୀତ ତରୁଣ, କୋମଳ ଓ କଠୋର—ମିଶାମିଶି । ଦେହରେ ଶୀତ ଲୁଗା ଦେଇହୁଏ ନାହିଁ, ନ ଦେଲେ ଚମଡ଼ା ଥଣ୍ଡା ହୋଇଆସେ ।

ନଈ ପଠାରେ କାଶତଣ୍ଡି ଫୁଲର ରୂପେଲି ମୁକୁଟ ଆଉ ପୂର୍ବଭଳି ଶୋଭା ପାଉନାହିଁ । ବଣବୁଦା ସବୁ ହଳଦିଆ ପଡ଼ି ଆସିଲଣି । କଂସାଣ ଲଟାରେ ପିଆଜି ରଙ୍ଗର ଫୁଲ ଓ କଡ଼ ମିଶାମିଶି । ଦାରପାଚିଲା ଧାନକିଆରୀରେ ନାନାପ୍ରକାର ପକ୍ଷୀର ହାଟ । ସେମାନଙ୍କ ମିଶ୍ର କାକଳି, ବୈଚିତ୍ର୍ୟହୀନ କର୍ମପ୍ରବାହ ମଧ୍ୟରେ ଦେଇଯାଉଛି ଶ୍ରମସ୍ତ, ଗତମସ୍ତ ଜୀବନର କ୍ଷଣିକ ସ୍ପର୍ଶ । ମନକୁ ଚିର ଚଞ୍ଚଳ ବାଳକ ଭଳି କରିଦେଇ ଯାଉଛି ଅସ୍ଥିର-ବିକ୍ଷୁବ୍ଧ ।

ଦୀର୍ଘକାଳ ଜଟିଳ-ଜାନ୍ତବ, ଯନ୍ତ୍ର ବିହୀନ ସହରବାସ ପରେ ଚନ୍ଦନ ଚୌଧୁରୀ ଆସି ପହଞ୍ଚିଲେ ଶ୍ରୀହର୍ଷ ଶ୍ୟାମଳ ଗ୍ରାମର ବେଢ଼ା ଭିତରେ । କର୍ମମସ୍ତ କର୍ମକ୍ଳାନ୍ତ ଜୀବନର ଶେଷ ପାଦରେ ଧୂଳି ଧୂସରିତ ଅଖ୍ୟାତ ଓ ଅବଜ୍ଞାତ ଗ୍ରାମର ମାୟା ତାଙ୍କୁ ଟାଣିଆଣି ପାରିଛି, ଏହା କମ୍ ବଡ଼ କଥା ନୁହେଁ । ବାଲ୍ୟ ଓ କୈଶୋରରେ ଯେଉଁ ଅସରନ୍ତି ସ୍ମୃତି ମନର ଗଭୀର ଗହ୍ୱରରେ କେଉଁଠି ଲୁଚି ରହିଥିଲା, ତାହା ହଠାତ ଚହଲି ଗଲା ପରେ ଭାସି ଉଠିଛି ଉପରକୁ ଅନନ୍ତ ଶ୍ରଦ୍ଧା ଓ ଅଫୁରନ୍ତ ଆନନ୍ଦ ବହନ କରି ।

ଆକାଶ ଓ ପୃଥିବୀର ଅପୂର୍ବ ପରିବେଶ ମଧ୍ୟରେ କିଛିଦିନ ବିଶ୍ରାମ କରିବେ ଓ ଜଳବାୟୁ ପରିବର୍ତ୍ତନ କରିବେ । ଅନ୍ତତଃ ମାସେ ପକ୍ଷେ ପୈତୃକ ଘରେ ଛୁଟି କଟାଇବା ସଙ୍ଗେ ସଙ୍ଗେ ଆଦ୍ୟଶୀତର ସରସ ରୋମାଞ୍ଚକୁ ଆଘ୍ରାଣ ଉପଭୋଗ କରିବେ । ଅନାଦୃତ ଉପେକ୍ଷିତ ଅଞ୍ଚଳର କିଞ୍ଚିତ ସେବାକରି ଧନ୍ୟ ହେବେ ।

ସହରୀ ଜୀବନର ଧରାବନ୍ଧା ନିୟମ ଅନୁଯାୟୀ ଚଳି ଚଳି ତାଙ୍କୁ ଚଟା ଲାଗିଗଲାଣି । ମନ ଭୁଲାଣିଆ ହାତ ସଫେଇ ବଚନିକା ଶୁଣି ଶୁଣି କାନ ହୋଇଗଲାଣି ତାବ୍ଦା । ଅଦ୍ୟ ଯୌବନରୁ ସେ ସରକାରୀ ଚାକିରିରେ ଗୁନ୍ଥି ହୋଇ ଯାଇଥିଲେ ।

ସେହି ଅନୁସାରେ ଗୋଟାଏ ଟାଣୁଆ ମେଣ ସୂଣ ପାଖରେ ବୁଲି ବୁଲି କ୍ଳାନ୍ତ ହୋଇ ପଡ଼ିଲେଣି । ନିରବଚ୍ଛିନ୍ନ ଫାଇଲ ସ୍ତୂପ, ବକ୍ଷଡ-ବନ୍ଧିପ୍ତ ଅକ୍ଷର, ମୁହଁରେ ସବୁବେଳେ ବିରକ୍ତିର ଆଭାସ । ନା ଅଛି ବ୍ୟତିକ୍ରମ, ନା ଅଛି ନବୀନତା ? ସେହି ଯୋଡ଼-ବଢ଼ କେଡ଼ା, ପୁଣି ଖଡ଼ା-ବଢ଼-ଯୋଡ଼ ।

ଭଲରେ ହେଉ କି ମନ୍ଦରେ ହେଉ, କୌଣସି ସ୍ଥାନରେ ଟିକିଏ ହେଲେ ଠିଆ ହେବାକୁ ଫୁରୁସତ୍ ନାହିଁ । ସତ ସୂଣଟାରୁ ଉଠି ପୁଣି ସତ ଏଗାରଟା ଯାଏ ନିର୍ଲିପ୍ତ-ନିର୍ବିକାର ଭାବରେ ଅବିଶ୍ରାମ କାମ କରିଯିବା ହିଁ ସ୍ବକରଜୀବୀ ମଣିଷର ଧରାବନ୍ଧା ନିୟମ । ଘଣ୍ଟା ଦେଖି ଖାଇବା, ପିଇବା, ଅଫିସ୍ ଯିବା, ବଜାର କରିବା, ଶୋଇବା, ବସିବାଠାରୁ ଆରମ୍ଭ କରି ପ୍ରେମ କରିବା ପର୍ଯ୍ୟନ୍ତ ଗୋଟାଏ ପରେ ଗୋଟାଏ ଅଭ୍ୟାସଗତ । ନିୟମାନୁସାରେ ଚାଲି ଚାଲି ଚନ୍ଦନ ଚୌଧୁରୀଙ୍କର ଦେହେରେ ସିମିତ ହୋଇଯାଇଛି କାନ୍ଥ ଘଡ଼ିର ମିନିଟ୍ କଣ୍ଟା ଭଳି । ମୁହଁର ମାଂସପେଶୀ ସବୁ ହୋଇ ଯାଇଛି ନିର୍ଦ୍ଦୟ, ଦୃଷ୍ଟି ନିର୍ମମ, ଆଚରଣ ସଙ୍କ୍ଷିପ୍ତ, ସ୍ବଳ୍ପ ଚଳନ ମର୍ଯ୍ୟାଦାଶୀଳ ।

ସିଧାସଳଖ ପାଞ୍ଚହାତିଆ ମର୍ଦ୍ଦ ସେ, ତାଳଗଛ ଭଳି ଲମ୍ବା । ଚକ୍ ଚକ୍ ଚନ୍ଦା ମୁଣ୍ଡ, କ୍ଷୌରପୂତ ମସୃଣ ମୁଖମଣ୍ଡଳ । ବୟସ ଅନ୍ଦାଜ ହେବ ପଞ୍ଚାବନ କି ଛପନ ଭିତରେ । ପହଞ୍ଚିଗଲେଣି ପ୍ରୌଢ଼ତ୍ୱର ଶେଷ ସୀମାରେ । ମୁହଁକୁ ଚାହିଁଲେ ଠେକା ଖସି ପଡ଼ିବା ଭଳି ଅବସ୍ଥା ।

ଚନ୍ଦନ ଚୌଧୁରୀଙ୍କର ପୈତୃକ ଭୂସମ୍ପତ୍ତି ଯାହା ଅଛି, ତାହା ଆଦୌ ନ୍ୟୂନ ନୁହେଁ । ମଫସଲରେ ଅତି ସାଧାରଣ ଅବସ୍ଥାରେ ଚଳି ସୁଖୀ ଓ ସୌଭାଗ୍ୟବନ୍ତ ହେବା ପାଇଁ ତାହା ଯଥେଷ୍ଟ । ପୂର୍ବପୁରୁଷ ଥିଲେ ଧନୀ, ମାନୀ, ମର୍ଯ୍ୟାଦାବନ୍ତ । ଖାନଦାନୀ ହେଉଛି ତାଙ୍କର ମୌରସୀ ସମ୍ଭାର । ମାଛ ପୋଖରୀ, ଆମ୍ବ ବଗାୟତ, ପଣସ ବଗିଚା ଯେଉଁପରି ଅଛି, ସେହିପରି ମଧ୍ୟ ଇଷ୍ଟଦେବତା ଅଛନ୍ତି ଘରେ । ଏହି ଦେବ ବିଗ୍ରହକୁ ପରିବାରର କେଉଁ ଧର୍ମପ୍ରାଣ ବ୍ୟକ୍ତି, କେଉଁ ଦୁର୍ବଳ ମୁହୂର୍ତ୍ତରେ କେବେ ଆଣି ପ୍ରତିଷ୍ଠା କରିଥିଲେ ଆଜି ତାହା ଅଜ୍ଞାତ, ଅନିର୍ଣ୍ଣେୟ, ଅବୋଧ୍ୟ ଓ ଅସ୍ପଷ୍ଟ । କେହି ଶ୍ରୁତିଧର ତାର ଅସଲ କାହାଣୀ କହିବାକୁ ସକ୍ଷମ ନୁହନ୍ତି । ସ୍ବକୀୟ ସ୍ଥାନରେ ରହି ସୁଦ୍ଧା ଇଷ୍ଟ ଦେବତାଙ୍କର ସେବାପୂଜା ପାଇଁ ଚନ୍ଦନ ଚୌଧୁରୀ ଯଥେଷ୍ଟ ଧ୍ୟାନ ଦେଇଥାନ୍ତି । ଦୈନିକ ମଙ୍ଗଳ ଆଳତି, ବାଲ୍ୟଧୂପ, ସନ୍ଧ୍ୟାଆଳତି, ସନ୍ଧ୍ୟାଧୂପ ଯେଉଁପରି ସୁବ୍ୟବସ୍ଥିତରୂପେ ସମ୍ପନ୍ନ ହୁଏ—ସେଥିନିମନ୍ତେ ଉପଯୁକ୍ତ ବ୍ୟବସ୍ଥା କରାଇଥାନ୍ତି । ପ୍ରତି ସଂକ୍ରାନ୍ତିରେ ହୋମ, ବିଷ୍ଣୁ ସହସ୍ର ନାମ ପାଠ, ପ୍ରତି ପୂର୍ଣ୍ଣିମାରେ ଅତିଥି ଅଭ୍ୟାଗତଙ୍କ ପାଇଁ ଯଥାସମ୍ଭବ ଅନ୍ନପ୍ରସାଦ ଆୟୋଜନ କରିବା ପାଇଁ ଖମାରେଇକୁ କଡ଼ା ନିର୍ଦ୍ଦେଶ ଦେଇଥାନ୍ତି । ପବିତ୍ର ଶ୍ରୋତ୍ରୀୟ ବ୍ରାହ୍ମଣ ନିଯୁକ୍ତ ଥାଏ ଓ ତାହାଙ୍କ ପାଇଁ ଉପଯୁକ୍ତ ପାରିତୋଷିକର ବ୍ୟବସ୍ଥା ଥାଏ । ପୂର୍ବ

ପୁରୁଷଙ୍କ ଅମଳରୁ ଭୂମି ଦିଆହୋଇଛି ଜାଗିରି । ଏଣୁ ଚିନ୍ତା କରିବାର କିଛି ନାହିଁ କହିଲେ ଚଳେ ।

ଏଥର ଗ୍ରାମରେ ପହଞ୍ଚିଲା ପରେ ଚନ୍ଦନ ଚୌଧୁରୀଙ୍କ ଆବେଗ ବିହ୍ୱଳ ଚିତ୍ତ କମ୍ପିତ ବିଚଳିତ ହୋଇ ଉଠିଲା । ଆନନ୍ଦର ଆତିଶଯ୍ୟ ଦୁଣା ହୋଇଗଲା । ତରୁଣ ଶୀତର ମନୋରମ ପରିବେଶ ଉପଭୋଗ୍ୟ ମନେହେଲା ନାହିଁ । ବହୁବର୍ଷ ପରେ ଗ୍ରାମକୁ ନୂଆକରି ଚିହ୍ନିଲା ଭଳି ମନେହେଲା । ସଭାସମିତି, ସ୍କୁଲ କଲେଜ, ଅଫିସ-ଅଦାଲତ ବହୁଳ ସହରୀ ଜୀବନଠାରୁ ସରଳ ପଲ୍ଲୀ ଜୀବନ ଯେ ଦିନକୁଦିନ ଅଧିକରୁ ଅଧିକ କଳୁଷିତ ହେଉଛି, ତାହା ସେ ମର୍ମେ ମର୍ମେ ଅନୁଭବ କଲେ । ସବୁ ଗ୍ଲାନି, ସବୁ ଅସମ୍ମାନ, ସବୁ ଅକଲ୍ୟାଣ, ସବୁ ତ୍ରୁଟି ବିପର୍ଯ୍ୟୟ ଆଖି ଆଗରେ ନଗ୍ନ ଭାବରେ ଫୁଟି ପଡ଼ିଲା । ସହର ଓ ଗ୍ରାମ ମଧ୍ୟରେ ଯେଉଁ ବ୍ୟବଧାନ ଥିଲା, ସେହି ବ୍ୟବଧାନରେ ଦମ୍ଭକୁ ଦଳିତ କରି ଆଜି ଉଭୟ ପ୍ରାୟ ହୋଇଗଲେଣି ସମଗୋତ୍ରୀ । ସହରବାସୀର କାଞ୍ଚନ ମୋହରେ ଯେଉଁ ଧାଆଁ ଦଉଡ଼, ତାହା ପଲ୍ଲୀର ନିକାଞ୍ଚନକୁ ଗ୍ରାସ କରିଗଲାଣି । ପଲ୍ଲୀର ପଲ୍ଲୀତ୍ୱକୁ ଲୋପ କରି ଦେବାକୁ ବସିଲାଣି । ସହରୀ ମଣିଷମାନଙ୍କ ଭଳି ଗ୍ରାମ-ବାସୀମାନେ ନିଜ ନିଜର ଦୀନତାକୁ ଘୋଡ଼ାଇବା ଭଳି ହୀନତାର ଆଶ୍ରୟ ନେଲେଣି ।

ପିଲାଦିନେ ଏହି ଗ୍ରାମରେ ଚାଟଶାଳୀଟିଏ ବି ନ ଥିଲା । ସେ ବହୁ କଷ୍ଟରେ ପାଠ ଦି ଅକ୍ଷର ପଢ଼ିଥିଲେ । ଏବେ ଉତ୍ତୀର୍ଣ୍ଣ ବୟସରେ ଲକ୍ଷ୍ୟ କରୁଛନ୍ତି ଶିକ୍ଷା ବିସ୍ତାର ନାମରେ ପ୍ରାଇମେରୀ ବିଦ୍ୟାଳୟଟି ଆପେ ଆପେ ଉପରକୁ ଉଠି ଉଚ୍ଚ ଇଂରାଜୀ ବିଦ୍ୟା-ଳୟ ହେଲାଣି । ଶିକ୍ଷା ସହିତ ସମାନ ତାଳରେ ଆଗେଇଛି ଦୁର୍ନୀତି । ଯୁବକ ସଂଘଠାରୁ ଆରମ୍ଭ କରି ମହିଳା ସମିତି ପର୍ଯ୍ୟନ୍ତ ସଭ୍ୟତା ଲମ୍ବାଇ ଦେଇଛି ଆପଣାର ପଣତ ଅନୁରୂପ ପଦ୍ଧତିରେ ।

ଆଗ କାଳରେ ଜନସେବାର ଗୋଟାଏ ମର୍ଯ୍ୟାଦା ଥିଲା । ତ୍ୟାଗୀ ଗୋପ-ବନ୍ଧୁ ଓ ସେବକ ଲକ୍ଷ୍ମୀନାରାୟଣ ଆଦି ସେବାକୁ ଏକ ମହତ୍ କର୍ମ ରୂପେ ଗ୍ରହଣ କରି-ଥିଲେ । ଆଜିକାଲି ଜନସେବା ଗଠନମୂଳକ କାର୍ଯ୍ୟ ହୋଇଛି ଓ ତାର ସମସ୍ତ ଦିଗ-ପ୍ରତି ସରକାର ସଚେତନ ରହି ଅର୍ଥ ଯୋଗାଇ ଦେଉଛନ୍ତି । ଏଣୁ ସେବା ହୋଇ-ଗଲାଣି ଦେବା ଓ ନେବା ଭଳି କାର୍ଯ୍ୟ । ଅଫିସର କେତେ ଦେବ ଓ କେତେ ନେବ, ସେଇଠାରେ ଭିଡ଼ାଭିଡ଼ି, ଓଟରିଓଟରି, ଝିଙ୍କାଝିଙ୍କି । ଗତ ସାଧାରଣ ନିର୍ବାଚନଠାରୁ ବିଦ୍ୟାଳୟଟି ପରିଣତ ହୋଇଛି ଏକ ପ୍ରକାର କଳିର ଗନ୍ତାଘରରେ । କିଏ କେତେ ପାଇଲା, କିଏ କେତେ ଖାଇଲା, କିଏ କେତେ ମାରିଲା; ତାହାହିଁ ଶିକ୍ଷକମାନଙ୍କ ଟିପାଖାତା ଭିତରୁ ବେଳେବେଳେ ପଦାକୁ ଫୁଟି ବାହାରି ପଡ଼ୁଛି । ଶିକ୍ଷକମାନଙ୍କ

ମଧ୍ୟରୁ ଦଳେ ଶାସକଗୋଷ୍ଠୀ ଓ ଆନ୍ୟ ଦଳେ ବିରୋଧୀ ଦଳରେ । ପ୍ରତ୍ୟେକ ପକ୍ଷର କର୍ମୀ ସ୍ୱଭାବତଃ ନିଜ ଦଳର ବଢ଼ତିକୁ ପ୍ରାଧାନ୍ୟ ଦେବା ପାଇଁ । କେହି ସ୍ୱୀକାରିବେ ନାହିଁ କିମ୍ବା ନଇଁବେ ନାହିଁ । ବରଂ ସବୁ ପ୍ରକାର ଶଠତା ଓ ଧୂର୍ତ୍ତତାକୁ ଦୋହନ କରି ଆଣି ଭରିଦେବେ ବିଦ୍ୟାଳୟର ବାତାବରଣରେ । ଇତଃପୂର୍ବରେ ଏଭଳି ଦୃଷ୍ଟାନ୍ତ ବିରଳ । ବିଦ୍ୟାଳୟର ପରିଚାଳନା ସମିତି ମଧ୍ୟ ସେହିପରି ଦୋଫାଙ୍କିଆ । ଅଭିଭକ୍ତ ଉଚ୍ଚାଭିଳାଷୀ ଯୁବକ ସମ୍ପାଦକ କନିଷ୍ଠ ଦଳରେ । ଅମାନୁଷିକ ଅବିଶ୍ୱାସୀ ବୃଦ୍ଧ ପ୍ରଧାନ ଶିକ୍ଷକ ହୋଇଛନ୍ତି କଂଗ୍ରେସୀ । ପାଠପଢ଼ାଠାରୁ ଶାଠ ପଢ଼ାରେ ଅଧିକରୁ ଅଧିକ ବାହା-ଦୁରୀ । ଛାତ୍ରମାନେ ଏହି ସୁଯୋଗରେ ବହିପତ୍ର ସହିତ ସମ୍ପର୍କ ରଖୁଛନ୍ତି ଊଣା । ଗ୍ରାମ-ପଞ୍ଚାୟତ ଅଫିସଠାରୁ ଆରମ୍ଭ କରି ମହିଳା ସମିତି, ଯୁବକ ସଂଘର କ୍ରୀଡ଼ାପତ୍ର ବଣ୍ଟନ ପର୍ଯ୍ୟନ୍ତ ଜୀବନ ଓ ସମାଜର ସବୁ ସ୍ତରରେ, ସବୁକ୍ଷେତ୍ରରେ ରାଜନୀତି ବେପାରୀମାନେ ସେମାନଙ୍କ ଦୀର୍ଘବାହୁ ବିସ୍ତାର କରିବାକୁ ଆଦୌ ପଛଘୁଞ୍ଚା ଦେଉନାହାନ୍ତି । ଫଳରେ ସାଧ୍ୟ ଓ ସାଧନ ମଧ୍ୟରେ ସମାନତା ରକ୍ଷା ହୋଇ ପାରୁନାହିଁ । ଯେତେ ଅସାଧୁ ହେଉ ମଧ୍ୟ ଆତ୍ମାନୁମୋଦିତ ପନ୍ଥାରେ ଲକ୍ଷ୍ୟ ହାସଲ ହୋଇଛି ରାଜନୀତିର ପୂର୍ବଦୃଷ୍ଟି ।

ଚନ୍ଦନ ଚୌଧୁରୀ ଯେତେବେଳେ ପିଲା ଥିଲେ, ସେତେବେଳେ ସ୍ନେହ ମମତା ବୃନ୍ଦାମଣୀର ମହତ୍ତ୍ୱର ସନ୍ଧି ସବୁ କ୍ଷେତ୍ରରେ ଅନୁଭବ କରିଯାଉଥିଲା । ବିନା ଦ୍ୱିଧାରେ ଗ୍ରାମ୍ୟବିବାଦ ଗାଆଁରେ ତୁଟି ଯାଉଥିଲା ତାଙ୍କର ଠାକୁର ଘର ବାରଣ୍ଡାରେ ବସି । ଏବେ ଉଦ୍ଦେଶ୍ୟ-ଅଭିସନ୍ଧିମୟ ଯୁଗରେ ତାହା ସମ୍ଭବ ହେଉନାହିଁ । ପଞ୍ଚାୟତ ରାଜର ଦୟା ଯୋଗୁଁ ତାଙ୍କ ଗ୍ରାମ ରାଜନୈତିକ ଭାବେ ବିଭକ୍ତ ହୋଇ ପଡ଼ିଛି । ଜବାହର ଯୋଜନାର ଅର୍ଥ ହେଉଛି କେତେକ ସଦ୍ୟ ଅନର୍ଥର ହେତୁ । ଗ୍ରାମ୍ୟ କଳହ ରୂପାନ୍ତରିତ ହେଉଛି ଅନ୍ତହୀନ ତିକ୍ତତାରେ, ଭୟଙ୍କର ରାଜନୈତିକ ସଂଘର୍ଷରେ । ଗୋଟିଏ ଗୋଟିଏ ପାପଚକ୍ରର ଉତ୍ପତ୍ତି ଭୁବନେଶ୍ୱରଠାରେ ହୋଇ ଅକ୍ଟୋପାଶ ଭଳି ବାହୁ ବିସ୍ତାର କରୁଛି ସବୁ ସ୍ତରକୁ । ପୁଣି ମଝିରେ ମଝିରେ ଝଣ୍ଡା ଭଳି ପତାକା ଉଡ଼ାଇ ସ୍ଲୋଗାନ ଦେଇ ଦଳେ ଦଳେ ଦଳାନୁପୁଷ୍ଟ ପୁତ୍ତଳି ଆସି ପହଞ୍ଚି ଯାଉଛନ୍ତି । ସେମାନଙ୍କ ଦଳୀୟ ରାଜନୀତିର ପ୍ରଚାରକ କହିବାଠାରୁ ପତାରକ କହିବା ଯୁକ୍ତିଯୁକ୍ତ । ସେମାନଙ୍କ କଥାବାର୍ତ୍ତା ଚାଲି-ଚଳନରେ ଅଧାପାଠୁଆ ଗୋଲଫାଙ୍କିଆ ଟୋକାମାନେ ଅଧିକ ଅନୁପ୍ରାଣିତ ହେଉଛନ୍ତି, ନିଜର ସର୍ବନାମ୍ନ ଅନ୍ନ ସଂସ୍ଥାନର ସ୍ୱତନ୍ତ୍ର ବ୍ୟବସ୍ଥା ନ ଥିଲେ ସୁଦ୍ଧା ଗ୍ରାମ୍ୟ ପରିବେଶକୁ ମନେ ମନେ ଘୃଣା କରୁଛନ୍ତି । ଗାଆଁ ମାଇନର ସ୍କୁଲର ପ୍ରଧାନ ଶିକ୍ଷକଙ୍କୁ ଅଧିକାଂଶ ସମୟରେ ଦେଖିବାକୁ ମିଳୁଛି ମନ୍ତ୍ରୀଙ୍କ ଚେମ୍ବରରେ । ଗାଆଁ ବିଦ୍ୟାଳୟରୁ ଯେଉଁମାନେ ମାଟ୍ରିକ୍ ଫେଲ୍ ହେଲେ କିମ୍ବା ଯେଉଁମାନେ ବହୁ ଉପାୟ ଅବଲମ୍ବନ କରି ପାଶ କରି ପାଖଆଖ କଲେଜର ଦୁଆର ମାଡ଼ି ଆସିଲେ, ସେହି ଅଳ୍ପଲ ସନ୍ତାନ ମାନେ କେଉଁ

କୁଲକୁ ହେଲେ ନାହିଁ । କୁଟାଖଣ୍ଡକୁ ଦିଖଣ୍ଡ କରିବାକୁ ଅଯୋଗ୍ୟ, ଉପାର୍ଜନର କ୍ଷମତା ନାହିଁ, ଶ୍ରେଷ୍ଠ ସ୍ୱୀକାର କରିବାକୁ ଲାଜ ମାଡ଼ୁଛି, ଆପଣା ଭୂମିରେ ହଳ କରି, ମୁଣ୍ଡଖାଲ ଭୂଣ୍ଡରେ ମାରି ବଞ୍ଚିବାକୁ ସଂକୋଚ ଆସୁଛି । ସେମାନେ ବଢ଼ିଛନ୍ତି ଝୋଟରୁ ଶ୍ରେଷ୍ଠ ଆଉ ପାଳରୁ ଲମ୍ବ ହୋଇ । Politics teach men to deceive their equals without being deceived themselves. ନିଜର ଅପଦାର୍ଥତା ପାଇଁ ସମସ୍ତଙ୍କ ଉପରେ କ୍ଷୋଭ । ବ୍ୟକ୍ତି ସ୍ୱାଧୀନତା ଓ ଅତିରିକ୍ତ ଅଧିକାର ସଚେତନତା ହୋଇଛି ଭୂଷଣ ।

କୌଣସି କର୍ମକୁ ଯୋଗ୍ୟ ନ ହୋଇ ଆତ୍ମଗ୍ଲାନି, ହତାଶା, ଅସହାୟତା ଓ ନୈରାଶ୍ୟ ମଧ୍ୟରେ କଅଁଳ ମନ ଓ କଞ୍ଚା ବୟସ ଯେବେ ପଡ଼ିଲା ବେଳକୁ ସେମାନଙ୍କ ଆଗରେ ଦଳାଙ୍ଗପୁଷ୍ଟ ରାଜନୀତି ପ୍ରସ୍ତୁତକମାନେ ନିରାପତ୍ତା, ବିଶ୍ୱାସ, ସାଫଲ୍ୟ ଓ ବନ୍ଧୁତ୍ୱର ନୂଆ ଭେଲକି ଲଗାଇ ପ୍ରତିକ୍ରିୟା ସୃଷ୍ଟି କରୁଛନ୍ତି, ସୃଷ୍ଟି କରୁଛନ୍ତି ବିସ୍ତର ବୁଦ୍ଧି ବିହୀନ କ୍ଷଣିକ ମସ୍ତିଷ୍କ ଉତ୍ତେଜନା—ଇମ୍ପ୍ୟାଲସ ! ଅତ୍ୟନ୍ତ ଇମପ୍ୟାଲସିଭ ସେମାନେ । ଶସ୍ତା ରାଜନୀତିକୁ ନେଇ ପିକେଟିଂ କରି, ଶୋଭାଯାତ୍ରା କରି, ପତାକା ଉଡ଼ାଇ, ଗରମାଗରମ ଭାଷଣ ଦେଇ ଅବାନ୍ତର, ଅପ୍ରାସଙ୍ଗିକ ଓ ଯୁକ୍ତିହୀନ କଟୂକ୍ତି ଦ୍ୱାରା ପରିସ୍ଥିତିକୁ ଜଟିଳ କରିବା ହେଲା ବୈପ୍ଳବିକ ଆଚରଣର ପ୍ରାଥମିକ ପ୍ରକ୍ରିୟା । ସେମାନଙ୍କ ସହିତ ଅନାୟାସରେ ମିଶି ବେକାରିଆ ଟୋକା ଦଳ ଗାଆଁରେ କେବଳ ଗୁଡି ଫୁଲାଇ, ନିଶ ସାଉଁଳାଇ, ଲମ୍ବପେଣ୍ଟ ପିନ୍ଧି ଅତିରୁକ୍ଷ ଆଚରଣରେ ଆକାଶଛୁଆଁ ଉତ୍ତେଜନା ଓ ସନ୍ତ୍ରାସ ସୃଷ୍ଟି କରୁନାହାନ୍ତି, ଅବସର ବିନୋଦନ କେନ୍ଦ୍ର ଆଡ଼ାର ଆସର, କ୍ରିକେଟ କ୍ଳବ୍, ଭୋଜିଭାତ ଆଦିର ବ୍ୟବସ୍ଥା କରି ସଂଗଠିତ ଭାବେ ବଳ୍ଗାହୀନ ଅଧିକାର ସାବ୍ୟସ୍ତ କରୁଛନ୍ତି । ଅଖଣ୍ଡ ବର୍ବରତା, ନିର୍ଦ୍ଦୟତା, କ୍ରୂରତା ଓ ନିର୍ଲଜ ଅହଂକାରରେ ଅନ୍ୟାୟାଚରଣକୁ ଜବରଦସ୍ତ ନ୍ୟାୟ ବୋଲି ପ୍ରତିପାଦିତ କରାଉଛନ୍ତି । ଅଦମ୍ୟ ଲାଳସାର ଚରିତାର୍ଥ, ନିଷ୍ଠୁର ବେପରୁଆ ଆନନ୍ଦର ପରିତୃପ୍ତି ହେଉଛି ଚୂଡ଼ାନ୍ତ ଉଦ୍ଦେଶ୍ୟ । ସମାଜର ସୁଦୃଢ଼ ସାଂକୁକୁ ଫଟାଇ ଫାଇଦା ହାସଲ କରିବା ପାଇଁ ସେମାନେ ଉନ୍ମତ୍ତ । ଝିଅ-ବୋହୂମାନଙ୍କୁ ଇତର ଆଚରଣ ଦ୍ୱାରା ବାଟ ଚାଲିବା ଦେଉନାହାନ୍ତି । କଦଳୀ, କଖାରୁ, ନଡ଼ିଆ, ପଣସ, ସପୁରୀଠାରୁ ଅନୁକୂଳ କରି ଗୁହାଳରୁ ଖାସି, ଛେଳି ଗଞ୍ଜା ମଧ୍ୟ ହରଣଚାଲ କରି ନେଉଛନ୍ତି । କଥାରେ କଥାରେ ଛୁରୀ ପେଲି ଦେବା ପାଇଁ ତିଆରି ହୋଇ ଯାଉଛନ୍ତି । କିଏ କରିବ ପ୍ରତିବାଦ ? କିଏ ଦେବ ସାକ୍ଷୀ ? କାହା ଜିଭରେ ହାଡ଼ ଅଛି ?

ବ୍ୟକ୍ତି ସଚେତନତା ବୃଦ୍ଧି ଓ ସହିଷ୍ଣୁତାବୋଧର ଅଭାବ ଯୋଗୁଁ ଗୁଣ୍ଡା, ଗୁଣ୍ଡା, ଦୁର୍ଦ୍ଦାନ୍ତ ଯୁବକ ଦଳ ସମସ୍ତ ଗାଆଁଟାକୁ ଉଠାଉଛନ୍ତି ପକାଉଛନ୍ତି । ମନରେ ସେମାନ-

ଙ୍କର ଛୁଆଁ ଲଗିଛି । ଦୟା ନାହିଁ, ମାୟା ନାହିଁ, ଅନୁତାପ ନାହିଁ, ସହାନୁଭୂତି ନାହିଁ । ସବୁ ଅନ୍ୟାୟ, ସବୁ ଅଘଟ, ଅଶଦ୍ଧର, ଉଚ୍ଛୃଙ୍ଖଳତା ସେମାନଙ୍କର ସୁବିଧାବାଦୀ ଦୃଷ୍ଟିରେ କିଛି ନୁହେଁ । ନିଜ ପ୍ରୟୋଜନର ଅଧିକାର ଦେଖାଇ କେଉଁଠି ଯଦି ବାସନ କୁସନ ଉଠିଗଲାଣି, କେଉଁଠି ଆଖି ରହିଲାଣି ଆୟ ଅଳଙ୍କାର ଉପରେ । ଅନତିଦୂରରେ ପାରଦ୍ୱୀପ ଅଞ୍ଚଳକୁ ଅନ୍ଧକାରରେ ପରସ୍ୱାପହରଣ କରି ଗ୍ରହଣ କରିଦେବା ହେଲା ସୁବିଧା ଜନକ ଓ ନିରାପଦ । ପୋଷାକ ପତ୍ର, ଘଣ୍ଟା, ଟ୍ରାଞ୍ଜିଷ୍ଟର, କ୍ରିକେଟ ଉପକରଣ ଆଦି ସେହିଠାରୁ ଆବଶ୍ୟକାନୁସାରେ ଆସୁଛି । ନଦୀ କୂଳରେ ଥିବା ଝାଉଁବଣ ପରିବେଷ୍ଟିତ ହାଇସ୍କୁଲର ବାରଣ୍ଡା ହିଁ ହୋଇଛି ସେମାନଙ୍କର ଆଡ୍ଡା, ଆଖଡ଼ା, ଷଡ଼ଯନ୍ତ୍ର, ଆଲୋଚନା ଓ ପରାମର୍ଶର ସ୍ଥଳୀ । ଯେଉଁମାନେ ଏହି ଗୁଣ୍ଡା-ଜିମ୍ ସହିତ ସହଯୋଗ କରିବାକୁ ଆଗ୍ରହୀ ନୁହଁନ୍ତି କିମ୍ବା ଅନିଚ୍ଛୁକ, ସେମାନଙ୍କୁ ନାନା ଉପାୟରେ ନାନା ଭୟବାଚକ ଅଭିବ୍ୟକ୍ତି ଦ୍ୱାରା ଧମକେଇ, ଧଡ଼କେଇ କାବୁ କରୁଛନ୍ତି । ଦଳର ପୁଷ୍ଟି ସାଧନ କରୁଛନ୍ତି, ଏକ ଅବାସ୍ତବ ସମାଜର ସ୍ୱପ୍ନ ଦେଖୁଛନ୍ତି ।

ଚନ୍ଦନ ଚୌଧୁରୀ ଲକ୍ଷ୍ୟ କରୁଛନ୍ତି ତରୁଣ ଓ ଯୁବକମାନଙ୍କର ଜଘନ୍ୟତମ ଆଚରଣରେ ସମଗ୍ର ଗ୍ରାମବାସୀ ଅତିଷ୍ଠ ହୋଇ ପଡ଼ିଲେ ସୁଦ୍ଧା ପ୍ରତିକାର ବିଧାନ କରି-ବାକୁ ସାହସୀ ନୁହନ୍ତି । ସମସ୍ତେ ଏକ ପ୍ରକାର ସ୍ଥାଣୁ । ଆଳାପ ଆଲୋଚନାରୁ ଜଣାପଡ଼ୁଛି ସତେ ଯିମିତି ଏକ ଅକ୍ଷମ ଭଦ୍ରତା ସେମାନଙ୍କ ଭିତରେ କୁହୁଳି କୁହୁଳି ଆପେ ଦବି ଯାଉଛି । ଦୁର୍ବଳତା ମଣିଷକୁ କରିଛି ଭୀରୁ, ନିର୍ବଳ, ବୁଦ୍ଧିହୀନ କାପୁରୁଷ । ଏହାର ପ୍ରଧାନ କାରଣ ହେଲା ଯେ ଏହି ଦଳରେ କାହାର ଭାଇ ଅଛି ତ, କାହାର ଭଣଜା । କାହାର ପୁଅ ଅଛି ତ କାହାର ପୁତୁରା । ସମଗ୍ର ସମାଜ ବ୍ୟବସ୍ଥାର ଏହି ଅଂଶଟି ହେଉଛି ସବୁଠାରୁ ଦୁର୍ବଳ, ଦୁର୍ବହ, ଦୁଷ୍ଟ, ଅକୃତ୍ରିମ, ଅସହ୍ୟ ଓ ଅପରାଧୀ । ନିଜର ସମ୍ପର୍କର ବନ୍ଧନ ଏପରି ଏକ ସଂକୀର୍ଣ୍ଣ ଓ ସ୍ୱାର୍ଥପର ଫାସ ହୋଇ ଗଳାରେ ପଡ଼ିଛି, ତାହାର ସାମାନ୍ୟତମ ପ୍ରତିରୋଧ ବା ପ୍ରତିକାର କରିବା ପାଇଁ କାହାର ସାହସ ନାହିଁ ।

ଚକ୍ଷୁଲଜ୍ଜାରେ କେହି ପୁଲିସର ସାହାଯ୍ୟ ନେବାକୁ ଆଗ୍ରହୀ ନୁହନ୍ତି । ଏଣେ ସେମାନଙ୍କୁ ଆପଣା ଆୟତ୍ତରେ ରଖିବାକୁ ବଳ ପାଉନାହିଁ । ନିର୍ବାଚନ ବେଳେ ଦଳୀୟ ପ୍ରଚାରକମାନେ ଯେଉଁ ମଞ୍ଜି ଅବହେଳା କ୍ରମେ ଗାଆଁରେ ବୁଣି ଦେଇଥିଲେ, ତାହା ଯଥା କାଳରେ ମହାବୃକ୍ଷରେ ରୂପାନ୍ତରିତ ହୋଇ ଫଳ ଦାନ କରୁଛି । ସେହି ଫଳ ଖାଇ ତାର ପ୍ରଭାବରେ ଉଗ୍ର ଯୁବକମାନେ ସେମାନଙ୍କ ଗୁରୁଜନମାନଙ୍କ ପରାମର୍ଶ ଗ୍ରହଣ କରିବାକୁ ଅନିଚ୍ଛୁକ । ଅଣ୍ଟାପୂରା ସାପ ହେଲେ ଯାହା ହୁଏ ସେହି ଅବସ୍ଥା ।

ହଠାତ୍ ଇଷ୍ଟଦେବଙ୍କ ପୂଜକ ଆସି ଅତି ଭୀତ କଣ୍ଠରେ ଜଣାଇଲା ଯେ ଦିଅଁଙ୍କ ଦେହର ଅଳଙ୍କାର ଚୋରି ଯାଇଛି । ଚନ୍ଦନ ଚୌଧୁରୀ ଚମକି ପଡ଼ିଲେ । ପ୍ରଚଣ୍ଡ ଅସ୍ଥିରତା

ଅନୁଭବ କଲେ । ତାଙ୍କ ଥିବା ଅବସ୍ଥାରେ ଏଭଳି ଅଘଟଣ ଘଟିଲା କପରି ? ମନ ମଧ୍ୟରେ ଯେଉଁ ମଧୁ ରସ ଝରୁଥିଲା, ତାହା ହଠାତ୍ ବନ୍ଦ ହୋଇଗଲା । ସାନ୍ଧ୍ୟଧୂପ ପରେ ବାଉଁଶ ପହଡ଼ ପକାଇ ପୂଜକ ସବୁଦିନ ପରି ନିଜର କର୍ତ୍ତବ୍ୟ ଶେଷ କରିଥିଲେ । ପର-ଦିନ ପ୍ରତ୍ୟୁଷରୁ ମଙ୍ଗଳ ଆଳତି ପାଇଁ ଆସି ଦେଖିଲେ ଯେ ଦାଅଣ ଶ୍ରୀଅଙ୍ଗ ଶୂନ୍ୟ ପଡ଼ିଛି ।

ପୂଜକର ମୁହଁକୁ ଚାହିଁଲେ ଚୌଧୁରୀ । ତାହା ଯେପରି ଦିନର କଠୋର ନିର୍ମମ ଆଲୋକରେ ବଗ ପକ୍ଷୀ ଭଳି ଶେତା ଦେଖାଯାଉଛି । ତାର ସମସ୍ତ ଅନୁଭୂତି, ସମସ୍ତ ସଚେତନତା ଯେପରି ହୋଇଛି ଭସ୍ମରେ ଅବଲୁପ୍ତ । ସମସ୍ତଙ୍କ ପାଇଁ ଥିବା ଶ୍ରଦ୍ଧାର ପ୍ରଦୀପ ଯେପରି କୁତ୍ସିତ ଭାବରେ ଖଣ୍ଡ ଖଣ୍ଡ ହୋଇ ଖସିପଡ଼ୁଛି । ତତ୍‌କ୍ଷଣାତ୍ ଚନ୍ଦନ ଚୌଧୁରୀ ଗାମର ବୟସ୍କ ଲୋକଙ୍କ ସହିତ ପରାମର୍ଶ କଲେ । ଏହି କୁତ୍ସିତ ଅଘଟଣ ସମସ୍ତଙ୍କୁ ବିଚଳିତ କରି ପକାଇଲା । ବର୍ଣ୍ଣହୀନ ମୁହଁ ଓ ଭାବହୀନ ଆଖିରେ ଚାହିଁ ରହିଲେ କେବଳ, ପ୍ରତିକାରର ଉପାୟ ଚିନ୍ତାକରି ପାରିଲେ ନାହିଁ । ବରଂ ନିଶ୍ଚୟ ଏ ସ୍ଥାନକୁ ବଜ୍ରପାତ ଯୋଗ ଅଛି ବୋଲି ପ୍ରତିକ୍ରିୟା ପ୍ରକାଶ କଲେ । ନୋହିଲେ ବାଉଁଶ ପହଡ଼ ସମସ୍ତରେ କେଉଁଲୋକ ଶ୍ରୀଅଙ୍ଗରେ ହାତ ଦିଅନ୍ତି ? କଳିକାଳ ଶେଷ ହେବାକୁ ବସିଲାଣି ।

ଚୌଧୁରୀଙ୍କ ଦୃଷ୍ଟି ଇସ୍‌ପାତ ଭଳି ଶାଣିତ, ହୃଦୟ ପଥର ଭଳି କଠିନ ଓ କାରା ପ୍ରାଚୀର ଭଳି ଛିଦ୍ରହୀନ । ସେ ତୀବ୍ର ଭାବରେ ଅନୁଭବ କଲେ ଯେ ଏହିପରି ମୂଲ୍ୟ-ହୀନ ଚର୍ଚ୍ଚା କୁଟାରେ କେବେହେଲେ ସମସ୍ୟାର ସମାଧାନ ହୁଏ ନାହିଁ, କମ୍ବା ତଳିଆ ପାଣି ମୁନ୍ଦାଏ ଫିଙ୍ଗିଦେଲେ ଗୃହ ପୋଡ଼ିଯାଏ ନାହିଁ । ସେହି ଉଦ୍ଦେଶ୍ୟରେ ଦ୍ରୁତ ଆକ୍ରୋଶକୁ ବହୁ କଷ୍ଟରେ ଗୁପ୍ତ ଭିତରେ ଚାପିରଖି ବାହାରି ଗଲେ ସେ ନଈ ଆରପାରିରେ ଥିବା ପୁଲିସ ଥାନାକୁ ।

ସହଜ-ସଳଖ ଭାବେ କଥା ନ କହିବାର ମାରାତ୍ମକ ଅହଂକାର ବଶୀଭୂତ ଓ ବଶମ୍ବଦ ଥାନାବାବୁ ମାନଙ୍କର ଚିରକାଳ ଏକଚାଟିଆ ଅଧିକାର । ଚକ୍‌ଚକ ଚେହେରା ଭିତରେ ସେମାନଙ୍କର ବନ୍ୟହିଂସ୍ର ମଣିଷଟି ସର୍ବଦା ଉଙ୍କି ମାରୁଥାଏ । ଯେଉଁପରି ସାପ ଭଳି କୁଟିଳ, ସେହିପରି ଶୃଗାଳ ଭଳି ଚତୁର ସେମାନେ । ବିନା ମେଘରେ ବଜ୍ରପାତ ଘଟାଇ-ବାର ଯୋଗ୍ୟତା ସେମାନଙ୍କର ଥାଏ ବୋଲି ପ୍ରବାଦ ଅଛି । ସେମାନେ ଯେପରି ତଣ୍ଡି ପାରନ୍ତି, ସେହିପରି ଭଣ୍ଡି ପାରନ୍ତି ମଧ୍ୟ । ସମଗ୍ର ଅଞ୍ଚଳଟା ତାଙ୍କ ଆୟତ୍ତାଧୀନ, ପ୍ରତ୍ୟେକ ବ୍ୟକ୍ତି ଯେପରି ତାଙ୍କର ଅଧସ୍ତନ । ଏହିଭଳି ଅଖଣ୍ଡ କ୍ଷମତା ସମ୍ପର୍କରେ ଆଶାବାଦୀ କେବେ-ହେଲେ ନଈ ପାରି ହୋଇ ଧୋସ୍ଥା-ମରୁଡ଼ିଆ ଗାମକୁ ଆସନ୍ତି ନାହିଁ । ଆସିବାକୁ ଆଗ୍ରହୀ ନୁହନ୍ତି । ସେଥିପାଇଁ ଯେତିକି ପରିଶ୍ରମ ପଡ଼ିବ, ସେହି ପରିମାଣରେ ଉପୁରି ଉଠିବ

ନାହିଁ । ଏଣୁ ଏ କ୍ଷେତ୍ରରେ ଯେ କଳନା କରିନେଲେ କ'ଣ କରିବାକୁ ହେବ । ଚନ୍ଦନ ଚୌଧୁରୀଙ୍କ ଭଳି ବିଦେଶାଗତ ଶିକ୍ଷିତ, ଅଭିଜ୍ଞ ରାଜକର୍ମଚାରୀଙ୍କ ଠାରୁ ପକେଟ ଗରମ କରିବାର କ୍ଷୀଣତମ ଆଶା ସୁଦ୍ଧା ନାହିଁ । ସେହି ଅନୁସାରେ ମୁହଁରେ ମୃଦୁ ହାସ୍ୟର ମୁଦ୍ରା ଅଙ୍କନ କରି ସରକାରଙ୍କ ଏକାନ୍ତ ବିଶ୍ୱସ୍ତ ଓ ଅନୁଗତ କର୍ମଚାରୀ ଭଳି ବୁଲାଇ ବଙ୍କାଇ କଥା ବାଢ଼ିଲେ—

'ଦେଅଁଙ୍କ ଅଳଙ୍କାରର ପ୍ରକୃତ ରୂପରେଖ ଓ ଓଜନ ଇତ୍ୟାଦି ସମ୍ବନ୍ଧରେ ପ୍ରତ୍ୟକ୍ଷ ଧାରଣା ଚୌଧୁରୀଙ୍କର କେବେ ନ ଥିଲା, ଏବେ ମଧ୍ୟ ନାହିଁ । ପୂର୍ବପୁରୁଷଙ୍କ ଦ୍ୱାରା ପ୍ରଦତ୍ତ ଦେଅଁଙ୍କର ସମ୍ପତ୍ତି ରକ୍ଷା କୌଣସି ଉପାୟରେ ବ୍ୟତିକ୍ରମ ହୋଇ ନ ପାରେ । ଚୋରିର ପ୍ରକରଣ ଓ ପଦ୍ଧତି ଯାହା, ସେଥିରେ ନିରପେକ୍ଷ ଭାବେ ଦେଖିବାକୁ ଗଲେ ନିଜେ ଚନ୍ଦନ ଚୌଧୁରୀ ତାହା ଆତ୍ମସାତ୍ କରି କିମ୍ବା ପୂଜକ ସାହାଯ୍ୟରେ କରାଇ ଅନ୍ୟ-ମାନଙ୍କ ଆଖିରେ ଧୂଳି ଦେବାକୁ କାହିଁକି ଚେଷ୍ଟା କରାଇ ନ ଥିବେ ? ଏଠାରେ ସନ୍ଦେହର ସଂପୂର୍ଣ୍ଣ ଅବକାଶ ରହୁଛି । ସୁତରାଂ ପୋଲିସର ପ୍ରଥମ କର୍ତ୍ତବ୍ୟ, ତାହାଙ୍କୁ ପହିଲେ କଡ଼ା କଟକଣା ଭିତରକୁ ଆଣି ହାଜତରେ ରଖିବା ପରେ ଯାଇଁ ନଈ ପାର ହୋଇ ଯିବାକୁ ହେବ ତଦନ୍ତ ପାଇଁ ସରଜମିନ୍ ଉପରକୁ ।

ଅନୁସନ୍ଧାନ ସମୟରେ ଯଦି କୌଣସି ଲୋକକୁ ଚୋରିର ନାମରେ ଥାନାକୁ ଅଣାଗଲା କିମ୍ବା ସନ୍ଦେହରେ ଗିରଫ କରାଗଲା, ତାହାହେଲେ କଥା ସରିଗଲା । ତାର ନିକଟତମ ଆତ୍ମୀୟ ଧାଇଁବେ ଉପରକୁ । ମାରାତ୍ମକ ଭାବେ ସୃଷ୍ଟି ହୋଇଯିବ ରାଜ-ନୈତିକ ସଂଘାତ, ଅବସ୍ଥା ହେବ ଅସମ୍ଭାଳ । ଉପରୁ ଫୋନ ପରେ ଫୋନ ଆସିବ ଦେଖି ବୁଝି କାମ କରିବା ପାଇଁ । ନ ହେଲେ କ୍ଷମତାର ନିରଙ୍କୁଶ ପ୍ରୟୋଗ ବା ଅପପ୍ରୟୋଗ କରାଯିବ । ରାଜନୀତିକ ଲୋକଙ୍କ ହାତରେ ପ୍ରମୋଶନ, ଡିମୋସନ, ଟ୍ରାନ୍ସଫର, ପୋଷ୍ଟିଂ ଇତ୍ୟାଦି ଇତ୍ୟାଦି । ଥାନାବାବୁଙ୍କ ହାଣ୍ଡି କଲା ପଡ଼ିବ ନାହିଁ । ଏ ତ ହେଲା ମାମୁଲି କଥା, ସ୍ଥଳ ବିଶେଷରେ କିଛି ଅଧିକ ବି ଘଟିପାରେ କେତେକ ସୁଯୋଗ ସନ୍ଧାନୀ ଏହା ମଧ୍ୟରେ ଯଦି କୌଣସିମତେ ମାରପେଞ୍ଚର ସନ୍ଧାନ ପାଇଲେ, ତେବେ ତାହାକୁ ବିରୋଧୀଦଳମାନଙ୍କୁ ଧରାଇ ରାଜନୈତିକ ରଙ୍ଗ ଦେବେ । ଅବ-ଶେଷରେ 'ପୁଲିସର ଅତ୍ୟଧିକ ବଳ ପ୍ରୟୋଗ' ବୋଲି ଖବର କାଗଜର ପୃଷ୍ଠା ଗର୍ଜି ଉଠିବ ।

ଆଜ୍ଞା ମଫସଲ ସାମ୍ବାଦିକଙ୍କ କଥା ଛାଡ଼ନ୍ତୁ । ସେମାନେ ନ୍ୟାୟ ଓ ସତ୍ୟର ଦୋହାଇ ଦେଇ ତିଳକୁ ତାଳ କରି ପାରନ୍ତି, ଜନମାନସକୁ ସହସା ଆନ୍ଦୋଳିତ କରନ୍ତି । ଘରେ ଦାନା ନ ଥିବ, ହାଣ୍ଡି ମାଙ୍କଡ଼ଚିତ୍ ମାରୁଥିବ, କିଏ ପରିବା ଦୋକାନ ଦେଇ-ଥିବ ତ କିଏ ଦେଇଥିବ ପାନଦୋକାନ । ଯାହା ତାହା ବନାଇ ଚୂନାଇ ଲେଖିଦେଇ

ସେମାନଙ୍କ ପକେଟରେ ପାଞ୍ଚ, ଦଶ ଟଙ୍କା ଗୁଞ୍ଜି ଦେଲେ ସେମାନଙ୍କଠାରୁ ସାମ୍ବାଦିକଙ୍କ-ଭାବେ ସମ୍ମାନ ମିଳିଯିବାଟା ବିଳମ୍ବ ହେବନାହିଁ । କୁଆଟାଏ ଉଡ଼ି ଯାଉଥିଲେ ଖବର-କାଗଜରେ ବଡ଼ ବଡ଼ ହରଫରେ ବାହାରି ପଡ଼ିବ କୁଆଟାଏ ଉଡ଼ିଯାଉଛି । ସତ୍ୟାନୁ-ସନ୍ଧାନ କରୁଛି କିଏ ? ସମ୍ବାଦପତ୍ର ଉତ୍କୃଷ୍ଟରୁ ହେଲାଣି ଏଣିକି ପରସ୍ପର ବହିର୍ଭୂତ ବିସମ୍ବାଦ ପ୍ରଚାରକରେ, ଆଦର୍ଶର ଅଦର୍ଶନରେ । ରାଜନୈତିକ ଚରିତ୍ର ସହାର ପାଇଁ ସମ୍ବାଦପତ୍ର ହୋଇଥାଏ ପ୍ରଧାନତମ ଅସ୍ତ୍ର । ଏବେ କିନ୍ତୁ ସେହି ଅସ୍ତ୍ର ଦ୍ୱାରା ଯେକୌଣସି ମହତ ବ୍ୟକ୍ତିଙ୍କ ଚରିତ୍ରକୁ ଅକ୍ଳେଶରେ କାଳିମାଲିପ୍ତ କରାଯାଉଛି । ଯାହା ଫଳରେ କଲେକ୍ଟର ଓ ଏସ୍.ପି. ଛୁଟିଆ ହୋଇ ଯାଉଛନ୍ତି । ଆମ ଭଳି ଛୋଟ ଛୋଟ କର୍ମଚାରୀଙ୍କ କଥା ପଚାରେ କିଏ ? ଆମକୁ ସର୍ବାନ୍ତଃକରଣରେ ଘୃଣା କରାଯାଏ । ନୀଚ, ହୀନ, ପ୍ରତି-କ୍ରିୟାଶୀଳ ବୋଲି ନେପଥ୍ୟରେ ବ୍ୟଙ୍ଗ କରାଯାଏ । ସେଥିପାଇଁ ମାପିଚୁପି ଚଳିବାକୁ ପଡ଼ୁଛି । ପ୍ରତି ଅଞ୍ଚଳରେ ବେଶ୍ୟା ଅଛି, ଖୁନି ଅଛି, ଜଖମ ଅଛି, ରହସ୍ୟ ଅଛି, ରୋମାଞ୍ଚ ଅଛି । ବର୍ତ୍ତମାନ ସମାଜର ପୀର ହେଉଛନ୍ତି ପୟଗମ୍ବର । ସୁତରାଂ ଉପରର ନିର୍ଦ୍ଦେଶ ରହିଛି ନିରୀହ ନିର୍ବୋଧ ଭାବେ ସ୍ଥିତାବସ୍ଥା ବଜାୟ ରଖି ଶାନ୍ତିରକ୍ଷା କରିବା ପାଇଁ । ଜନପ୍ରିୟ ସରକାରରେ ଚିତ୍ତରଞ୍ଜନ ହେଉଛି ପ୍ରଥମ କାର୍ଯ୍ୟ ।

ସୁସ୍ପଷ୍ଟ ଭାଷା, ଆନ୍ତରିକ କଥନଭଙ୍ଗୀ, ପରିଚ୍ଛନ୍ନ ବଚନ ବିନ୍ୟାସ, ଅଳଂକୃତ ସମ୍ଭାଷଣ ଭିତରେ ଅତି ଧୂର୍ତ୍ତ, ବିଚକ୍ଷଣ ପ୍ରଶାସନିକ ନିସ୍ପୃହତା ସମ୍ବନ୍ଧରେ ସୂଚନା ଦେବା ସଙ୍ଗେ ସଙ୍ଗେ ଚତୁର ଥାନାବାବୁ ସମସ୍ୟାଟିକୁ ସମ୍ମାନଜନକ କୈଫିୟତ୍ ଦ୍ୱାରା ସର୍ବାନ୍ତଃକରଣରେ ଏଡ଼ାଇ ଦେଲେ । ଏପରିକି ସାଧାରଣ ଉପହାରଟାଏ ସୁଦ୍ଧା ଗ୍ରହଣ କଲେନାହିଁ । ମାତ୍ର ଏତିକି ମନେହେଲା ଯେ ଥାନାବାବୁ ହେଉଛନ୍ତି ଗୋଟାଏ ଉଚ୍ଚଶକ୍ତି ସମ୍ପନ୍ନ ମାଗ୍ନିଫାଇଂ ଗ୍ଲାସ । ଅତି ଛୋଟ ଛୋଟ ସମସ୍ୟାକୁ ବଡ଼ କରି ଦେଖାଇ ଚିତ୍ତରୋଚକ କଥାରେ ତୁଣ୍ଡକୁ ବନ୍ଦ କରିଦେଲା ଭଳି କ୍ଷମତା ତାଙ୍କର ଅଛି ।

ଉପାସ୍ଥାନ ହୋଇ ଫେରି ଆସିଲେ ଚନ୍ଦନ ଚୌଧୁରୀ । ମୁହଁରେ ତାଙ୍କର ଝାଙ୍କି ହୋଇଗଲା ବିବର୍ଣ୍ଣତାର କଳାମେଘ । କୌଣସି ପ୍ରକାରର ବିଧିସଙ୍ଗତ ବ୍ୟବସ୍ଥା କରାଯାଇ ପାରିଲା ନାହିଁ । ବର୍ଷ ପରେ ବର୍ଷ ସହରୀ ଜୀବନ ଉପରେ ଯେଉଁ ଖ୍ୟାତି ଓ ପ୍ରତିପତ୍ତି ଜମାଇଥିଲେ, ପୂର୍ବ ପୁରୁଷର ଯେଉଁ ଖାନଦାନୀ ରହିଥିଲା, ମୁହୂର୍ତ୍ତକ ମଧ୍ୟରେ ତାହା ସବୁ ସିମିତ ଭୂଲୁଣ୍ଠିତ ପଡ଼ିଲା । ଗ୍ରାମାଞ୍ଚଳରେ ଅନନ୍ୟ ବୋଲାଇବାର ଅଭିଳାଷ ଚୂନା ହୋଇଗଲା । ସାରା ମନ ଧିକ୍କାରରେ ପୂର୍ଣ୍ଣ ହୋଇ ଉଠିଲା । ଲୁହାଚଣା ଚୋବାଇବା ଲୋକ କଂ କର୍ତ୍ତବ୍ୟ ବିମୂଢ଼ ଭଳି ବସି ରହିଲେ ବେଳ ଘଣ୍ଟା ନୁଆଁଇ ଦାଣ୍ଡ-ପିଣ୍ଡାରେ । ମୂକ, ମୌନ, ନୀରବ । ଚୁଲିରେ ମୁହାଁଇ ଦିଆଯାଇଥିବା ଓଦାକାଠ ଭଳି ହୃଦୟ ଭିତରଟା କେବଳ କୁହୁଳୁ ଥିଲା ଘୃଣା ଓ ବିରକ୍ତିରେ ।

ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ଉନ୍ନୟନ ସଙ୍ଗେ ସଙ୍ଗେ ସହରର ବଜାରଠାରୁ ଆରମ୍ଭ କରି ସୁଦୂର ମଫସଲ ଅଞ୍ଚଳରେ ଯେଉଁ ରୂପାନ୍ତର ଘଟୁଛି, ସେଥିରେ ସାଂବିଧାନିକ ପ୍ରତିଶ୍ରୁତି ସହିତ ଦଣ୍ଡ ନୀତି ଓ ବିଚାର ପଦ୍ଧତି ବିପନ୍ନ । ବର୍ତ୍ତମାନ ପରିସ୍ଥିତିରେ ହାକିମ ହୁକୁମା କିମ୍ବା ଆଇନ କାନୁନ କେହି ହେଲେ ସାମାଜକୁ ନିୟନ୍ତ୍ରଣ କରି ପାରିଲା ଭଳି ହୃଦ୍‌ବୋଧ ହେଉନାହିଁ । ନିଷ୍ଠୁର, ଅବିବେକ, ଅପରାଧ ମନୋବୃତ୍ତି ଦିନକୁଦିନ ପ୍ରବଳରୁ ପ୍ରବଳତର ହେଉଛି । ଖରାପ ଅପରାଧୀମାନେ ଏପରି ବେପରୁଆ ହୋଇଗଲେଣି ଯେ ସେମାନଙ୍କର ଧାରଣା ବିଧିକୁ ବିଧା ମାରି ସ୍ୱମତାନୁକୂଳ ଭାବେ ଚଳାଇ ନିଆଯାଇ ପାରିବ । ଫଳରେ ପୂର୍ବକାଳରେ ଯେଉଁମାନଙ୍କର କାନ ଧରିଲେ ବଚନ ବାହାରୁ ନ ଥିଲା, ସେମାନେ ଏବେ କଥା କଥାକେ ଛୁରୀ ଚଳାଇ ଦେବାକୁ ତିଆର ।

ମାସେ ଖଣ୍ଡେ ଗାଆଁରେ କଟାଇ, ସୁବିଧା ସୁଯୋଗ ଦେଖି ଗ୍ରାମାଞ୍ଚଳର କଳ୍ପିତ ଉନ୍ନତି ବିଧାନ ପାଇଁ ଚନ୍ଦନ ଚୌଧୁରୀ ହୋଇଥିଲେ ଗ୍ରାମାଭିମୁଖୀ । ଫଳରେ ଗାଆଁ ଲୋକଙ୍କ ମଧ୍ୟରେ କଳ୍ପିତ ପରିଆରି ସୃଷ୍ଟି ହୋଇଥାନ୍ତା ଓ ନିଜେ କିଛି ଆତ୍ମପ୍ରସାଦ ଅନୁଭବ କରିଥାନ୍ତେ । କିନ୍ତୁ ତାହା ଆଉ ସମ୍ଭବ ହେଲାନାହିଁ । ତରବର ହୋଇ ସେ ଫେରିଯିବାକୁ ନିଷ୍ପତ୍ତି କଲେ । ବାଳକ ସୁଲଭ ଉତ୍ସାହ, କୌତୂହଳ ଓ ଅପରିମିତ ଆଗ୍ରହ ଯେଉଁ ଜନ୍ମମାଟିର ସେବା ପାଇଁ ସେଉଁ ବହୁ ପୋଷିତ ଅଭିଲାଷ ଥିଲା, ସେଥିରେ ହଠାତ୍ ପୂର୍ଣ୍ଣଚ୍ଛେଦ ପଡ଼ିଲା । ସଂସାରର ଗ୍ରନ୍ଥି ମନେହେଲା ଜଟିଳରୁ ଜଟିଳତର । ପିଲାମାନଙ୍କ ପାଇଁ ମୁଗଡ଼ାଲି, ଉଆରୁଉଳ, ସରୁଚୁଡ଼ା, ନଡ଼ିଆ, ଛେନା, ଘିଅ ଯୋଗାଡ଼ କରି ସେ ସତକୁ ସତ ବାହାରି ପଡ଼ିଲେ ସବୁଜ ଘାସ-ଲତା, ଗୁଳ୍ମଭରା ଗାଆଁ ଦାଣ୍ଡରେ । ଖମାରିଆକୁ ଆବଶ୍ୟକୀୟ ଉପଦେଶ ଦେଇ ଘରର ଭାର ଧରାଇଦେଲେ । ତାଙ୍କର ଆସିବା ବାଟକୁ ଯେପରି କେହି ଉତ୍କଣ୍ଠିତ ହୋଇଁ ରହିଁ ବସି ନ ଥିଲେ, ସେହିପରି ଗଲା ବେଳେ ମଧ୍ୟ କାହାରି ଦୈନନ୍ଦିନ କର୍ମରେ ବାଧା ପଡ଼ିଲା ନାହିଁ । ବରଂ ପୋଲ-ଫାଙ୍କିଆ ଟୋକାଟାକଲିଆମାନଙ୍କ ଉପହାସର ରୂପା ଲଙ୍ଗିତ ଓ ନମ୍ର କଣ୍ଠର ତୀକ୍ଷ୍ଣ ବିଦ୍ରୂପ, ନିର୍ଦ୍ଦୟ-ତାଳିଲୀ କିଛି ବାଟ ଯାଏ ଗୋଡ଼ାଇ ଗଲା ପବନରେ ।

ବିଦେଶରେ ଥାଇ ଚୌଧୁରୀ ଖବର ପାଇଲେ ଯେ ଗ୍ରାମର ଦୁଇଜଣ ନିଷ୍ଠାଗାମୀ ଗଜା ଟୋକା ବଳ ପ୍ରୟୋଗ କରି ତାଙ୍କର ଇଷ୍ଟ ଦେବତାଙ୍କୁ ପଞ୍ଚାମୃତ କରାଇଛନ୍ତି । ସେଥିପାଇଁ ପୂଜକଙ୍କ ସହିତ ଗ୍ରାମ୍ୟ ସେମାନଙ୍କର ଉନ୍ମୂଳ ବାକ୍‌ଯୁଦ୍ଧ ହୋଇ ଯାଇଛି । ଶୁଣିବାର କଥା ଯେତେ ଜଘନ୍ୟ, ଯେତେ କଟୁ ହେଲେ ମଧ୍ୟ ପୂଜକ ନିଜ ମତରେ ଅଟଳ ରହି ଅନେକ ସମୟ ପର୍ଯ୍ୟନ୍ତ କଟାଇ କରିଥିଲେ । କିନ୍ତୁ ଗ୍ରାମର ପ୍ରତିପତ୍ତିଶାଳୀ ବ୍ୟକ୍ତିମାନେ ଯୁବକ ଦ୍ୱୟଙ୍କ ପକ୍ଷ ଧରି ପୂଜକଙ୍କୁ ଏକ ପ୍ରକାର ପ୍ରତାରିତ କରି କାର୍ଯ୍ୟ କରାଇନେଲେ ।

ଏହି ଖବର ପାଇବା ପରେ ସେହି ଯୁବକ ଦ୍ୱୟଙ୍କୁ ଚିହ୍ନିବା ପାଇଁ ଅଧିକ ସମୟ ଲାଗି ନ ଥିଲା । ସେମାନେ ଥିଲେ ଗ୍ରାମର ଅମିତ କ୍ଷମତାଶାଳୀ ଧୂର୍ତ୍ତ ସରପଞ୍ଚଙ୍କର ଝିଅ ଓ ପୁରୁଷ । ବିଦ୍ୟା ବର୍ଜିତ ଡେଣ୍ଡିଆ । ଦେବତାଙ୍କ ଶ୍ରୀଅଙ୍ଗରୁ ଅଳଙ୍କାର ଚୋରି ହୋଇଥିବା ଯୋଗୁଁ ଦେବତାଙ୍କର ପବିତ୍ରତା ନଷ୍ଟ ହୋଇଥିବା ଆଶଙ୍କାରେ ପଞ୍ଚାମୃତ ଦ୍ୱାରା ପୁନଃ ପବିତ୍ର କରଣ ପାଇଁ ଯୁବକମାନଙ୍କ ପକ୍ଷରୁ ଚରମ ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା ।

ଇଷ୍ଟ ଦେବତା ହେଉଛନ୍ତି ଚନ୍ଦନ ଚୌଧୁରୀଙ୍କର । ବିଜେସ୍ଥଳୀ ତାଙ୍କ ଘରର ଚୌହଦୀ ମଧ୍ୟରେ । ପଞ୍ଚାମୃତ ଭଳି ପବିତ୍ର କାର୍ଯ୍ୟ କରି ଆସିବାକୁ ପ୍ରକୃତରେ ଚୌଧୁରୀ ଭୁଲିଯାଇଥିଲେ । ସମସ୍ତ ପ୍ରକାର ନିଷ୍ଠା ଓ ଧର୍ମ ପ୍ରବଣତା ସତ୍ତ୍ୱେ ତାହା ସମ୍ପନ୍ନ କରି ଆସିବା ଭଳି ମାନସିକ ଅବସ୍ଥା ତାଙ୍କର ନ ଥିଲା ।

ମୂଳରୁ ଚୂଳଯାଏ ସବୁ ଚକ୍ରାନ୍ତ ଏବେ ଆଖି ଆଗରେ ଜଣା ପଡ଼ିଗଲା । ଯିଏ ଯେତେ ଆଧୁନିକ, ଯେତେ ବୈପ୍ଳବିକ ଚିନ୍ତାଧାରାର ବାହକ, ଧାରକ ଓ ପ୍ରୋତ୍ସାହକ ହେଲେ ମଧ୍ୟ ପ୍ରଥମ ଓ ପ୍ରଧାନ ନିଶାଣ ହିଁ ହେଉଛି ଭାରତୀୟ । ଭାରତୀୟ ମାନେ ଧର୍ମ-ଭୀରୁ । ସେଥିପାଇଁ ସବୁ ସ୍ଥାନରେ ତାଳି ପକାଇ ମନକୁ ମଜବୁତ କରାଯାଇ ପାରେ । ବାହୁଷ୍ଫୋଟ ମାରି ବାହାର ଦୁନିଆଁକୁ ଚମକାଇ ଦିଆଯାଇ ପାରେ । କିନ୍ତୁ ଧର୍ମ କ୍ଷେତ୍ରରେ ମନର ଛିଦ୍ରକୁ ଲୁଚାଇବା ସମ୍ଭବ ନୁହେଁ । ଏ କ୍ଷେତ୍ରରେ ତାହା ପ୍ରମାଣିତ ହୋଇଗଲା ।

ରୁଦ୍ଧ କକ୍ଷରେ ଶବ୍ଦ ଯେପରି ବହୁକ୍ଷଣ ପର୍ଯ୍ୟନ୍ତ ଚାରିକାନ୍ଥରେ ଧ୍ୱନିତ ଓ ପ୍ରତି-ଧ୍ୱନିତ ହେଉଥାଏ, ସେହିପରି ଖବରଟି ଚନ୍ଦନ ଚୌଧୁରୀଙ୍କ ହୃଦୟ ମଧ୍ୟରେ ଧ୍ୱନିତ ଓ ପ୍ରତିଧ୍ୱନିତ ହେବାକୁ ଲାଗିଲା । ଦେହ ପିଞ୍ଜରାର କଠିନ ବନ୍ଧନ ମଧ୍ୟରେ ଅପମାନିତ ହୃଦୟ ଯେପରି ମୁଣ୍ଡ ବାଡ଼େଇବାକୁ ଆରମ୍ଭ କଲା । ଏହି ନିବିଡ଼ତମ ବେଦନାର ମର୍ମସ୍ପର୍ଶୀ ଖବର ତାଙ୍କ ଗ୍ରାମ ପର୍ଯ୍ୟନ୍ତ ପହଞ୍ଚି ପାରିଲା କି ନାହିଁ ଜଣା ପଡ଼ିଲା ନାହିଁ ।

('ନବ ପତ୍ର'ର ୧୭ଶ ବର୍ଷ ୪ର୍ଥ ସଂଖ୍ୟାରେ ପ୍ରକାଶିତ)



# କୁମାରୀ ମଞ୍ଜୁଶ୍ରୀ

ସାମାଜିକ ତଥା ରାଜନୈତିକ ଆବହାଓ୍ୱାର ଗତିବେଗ ବର୍ତ୍ତମାନ ପାଇଁ ଯାହା ହେଉ ନା କାହିଁକି, ଏହା ନିଶ୍ଚିତ ଯେ ଭାରତୀୟ ଜୀବନର ମୂଳଧାରାଠାରୁ ବିଚ୍ଛିନ୍ନ ହୋଇ ତାହା ତିଷ୍ଠିବା କଷ୍ଟକର ।

କୃଷ୍ଣକାନ୍ତ କଲେଜର ପୋର୍ଟିକୋ ତଳେ ଅଧା ମଇଳା ତାରପୋଲିନ୍ ଖଣ୍ଡେ ବିଛାଇ ବସି ରହିଛନ୍ତି ଆଠ ଜଣ ଛାତ୍ର ଓ ଜଣେ ଛାତ୍ରୀ । ଏହିପରି ନବରତ୍ନ । ଏମାନେ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଚଳାଇ ଯାଇଛନ୍ତି ଅନଶନ ଧର୍ମଘଟ । ଅନଶନ ମହାମନ୍ତ୍ରର ଆଦିଗୁରୁ ମହାତ୍ମା ଗାନ୍ଧୀଙ୍କର ବଡ଼ ଧରଣର ଫଟୋ ଖଣ୍ଡେ ପଟା ଉପରେ ମଡ଼ା ହେଇ ପରେ ଦୁଇ ଖଣ୍ଡ ଭଙ୍ଗା ଇଟା ପଛ ପଟରୁ ଡିଗ୍‌ ଦିଆହୋଇ ଥୁଆ ହୋଇଛି ସତ୍ୟ ଅହିଂସା ସଂଗ୍ରାମର ପ୍ରତୀକ ଭଳି । ଆଗରେ ମିଞ୍ଜି ମିଞ୍ଜି ହୋଇ ଜଳୁଛି ଗୋଟାଏ ମୋଟା ମହମବତୀର କ୍ଷୀଣଶିଖା ଓ ଫାଳେ କଟା ଆଳୁ ଦେହରେ ପୋତା ହୋଇଥିବା ଧୂପକାଠି କେତୋଟି ।

ବୈପ୍ଳବିକ ଚିନ୍ତା କ୍ଷେତ୍ରରେ ନୂଆ ନୂଆ ଧାରାର ପ୍ରବର୍ତ୍ତକ ଓ ସଂଯୋଜକ ଥିଲେ ଗାନ୍ଧିଜୀ । ଦେଶ ବିଦେଶର ଜନସାଧାରଣ ସେହି ନୂତନ ପଥ ଓ ଚିନ୍ତାର ସନ୍ଧାନ ପାଇ ଆନନ୍ଦ ଓ ଉତ୍ତେଜନାରେ ଦିଗହରା ହୋଇ ପଡ଼ୁଥିଲେ । ଛାତ୍ରସଂସଦ ମଧ୍ୟ ସେହି ଆଦର୍ଶର ଅନୁକରଣରେ ଅକଳ୍ପନୀୟ ଅଗ୍ନି ପରୀକ୍ଷାକୁ ଓହ୍ଲାଇ ଆସି ବୁଦ୍ଧିର ପ୍ରସାରଣ ଘଟାଇଛି ବୋଲି ବୁଝାଯାଇଛି ।

ପୋର୍ଟିକୋର ଖୁଣ୍ଟ ଓ କାନ୍ଥ ଦେହରେ ବଡ଼ ବଡ଼ ଅକ୍ଷରରେ ମଡ଼ା ହୋଇଛି ପ୍ରାଚୀର ପତ୍ର ଓ ଆକର୍ଷଣୀୟ କାର୍ଟୁନ ଚିତ୍ର କେତେ ଖଣ୍ଡ—'ଆମେ ଏ ଧର୍ମଘଟ କଲୁ କାହିଁକି ? କର୍ତ୍ତୃପକ୍ଷ ଜବାବ ଦିଅ ! ଛାତ୍ର ବିରୋଧି ଅଧ୍ୟକ୍ଷ ଇସ୍ତଫା ଦିଅ' ଇତ୍ୟାଦିକୁ ଏପରି ଭାବରେ ସଜାଇ ଲେଖାଯାଇଛି, ଯେପରି ବାହାରର ଲୋକ କେହି ଆସିଲେ ପ୍ରଥମେ ଏହି ଗୁଡ଼ାକ ଜଳଜଳ ହୋଇ ତାର ଆଖିରେ ପଡ଼ିବ ଆଉ ସେ ମନେ-କରିବ, 'ପ୍ରକୃତରେ ଏହି କଲେଜର ଅଧ୍ୟକ୍ଷ ଅତ୍ୟାଚାରୀ, ଦୁର୍ନୀତିଗ୍ରସ୍ତ, ଅର୍ଥ ଲୋଲୁପୀ ଓ

ଶୋଷକ। ଦପ୍ତରର ଧୂଆଁ। କିଛି ଜାଣିଲେ କଥା ସୁନ୍ଦର। ସୁନ୍ଦର ଭାବରେ ଯେପରି ବୁଝାଯାଇ ପାରିବ, ଆଖିରେ ଆଙ୍ଗୁଠି ଗେଞ୍ଜି ଯେପରି ଦେଖାଇ ଦିଆଯାଇ ପାରିବ, ସେ ଦିଗରେ ଯତ୍ନପରିଶ୍ରମାପ୍ତି ପରିବେଶ ଭିତ୍ତିକ ବ୍ୟବସ୍ଥା ଗ୍ରହଣ କରାଯାଇଛି। ପବନରେ ଏକ ପ୍ରକାର ଅଭବ୍ୟ, ଅବ୍ୟକ୍ତ ଭାର ବାଣୀ ଦୃଷ୍ଟ ବୁଲୁଛି।

ରାସ୍ତା ଉପର ବିଜୁଳି ବତୀର ଆଲୋକ ପୋର୍ଟିକୋ ତଳର ସାମାନ୍ୟ ଅଂଶକୁ ଉଦ୍‌ଭାସିତ କଲେ ସୁଦ୍ଧା ଅନ୍ୟ ଅଂଶରେ ନିପଟ ଅନ୍ଧକାର। ଅନଶନରେ ବସିଥିବା ପିଲ-ମାନଙ୍କର ସେବାକାରୀ ରୂପେ ଯେଉଁ ଛାତ୍ର-ଛାତ୍ରୀମାନେ ସନ୍ଧ୍ୟା ସମୟରେ ନିସରପସର ହେଉଥିଲେ, ପ୍ରଭୂତ ପରିମାଣରେ ଉତ୍ସାହ ଉନ୍ମତ୍ତ ହେଉଥିଲେ, ସମବେତ କଣ୍ଠରେ ରାମଧୂନ ଗାଉଥିଲେ କିମ୍ବା ଖବର କାଗଜକୁ ଦେବା ଭଳି ସମ୍ବାଦକୁ ଗୋଲ ଗୋଲ ଅକ୍ଷରରେ ନକଲ କରୁଥିଲେ, ସେମାନେ ନିଜ ନିଜର କର୍ତ୍ତବ୍ୟ ଶେଷକରି କେତେ-ବେଳରୁ ଫେରିଗଲେଣି। ସେମାନଙ୍କ ଦ୍ୱାରା ବ୍ୟବହୃତ କାଗଜ ପତ୍ରର ଛିନ୍ନାଂଶ ଇତସ୍ତତ ବିକ୍ଷିପ୍ତ ହୋଇ ପଡ଼ିଛି। ଯେଉଁ ଅଧ୍ୟାପକମାନେ ନିଜର ସ୍ୱାର୍ଥ ସାଧନ ପାଇଁ ନିରୀହ ପିଲ ମାନଙ୍କୁ ଶିଖାଇ ମତାଇ ପ୍ରହେଳିକା ଭିତରକୁ ଠେଲିଦେଇ ଏହି ଦୁଃସାହସିକ ଧର୍ମଘଟର ସୂତ୍ରପାତ କରାଇଛନ୍ତି, ସେମାନେ ଗୋପନ ମନ୍ତ୍ରଣାଦାନ, ଶକ୍ତି ସଂହତି ଓ ଆଗାମୀ ଦିନର କାର୍ଯ୍ୟ ସୂଚୀର ସୁଚିନ୍ତିତ ଯୋଜନା ଇତ୍ୟାଦି ଶେଷ କରି ନିଶ୍ଚିନ୍ତରେ ନିଦ୍ରା ଗଲେଣି। ବାତାବରଣ ଅପେକ୍ଷାକୃତ ଭାବେ ଅଚଞ୍ଚଳ, ଶାନ୍ତ, କୋଳାହଳ ବିହୀନ।

ରାସ୍ତାର ବିଜୁଳିଖୁଣ୍ଟି ସିଧାରେ କଲେଜର ଫାଟକକୁ ଲାଗି ଅନଶନକାରୀମାନଙ୍କ ଗତିବିଧିକୁ ସତର୍କତାର ସହିତ ଲକ୍ଷ୍ୟ କରିବା ପାଇଁ ଯେଉଁ ଲାଠିଧାରୀ କନେଷ୍ଟବଲ ଦୁଇଜଣ ପହରା ଦେଉଥିଲେ, ସେମାନଙ୍କର ସତର୍କତାର ଗଣ୍ଠି ଧୀରେ ଧୀରେ ଶିଥିଳ ହୋଇ ପଡ଼ିଲଣି। ତାହା ସହିତ ଶିଥିଳ ହୋଇଗଲଣି ପଦମର୍ଯ୍ୟାଦା ଓ କର୍ତ୍ତବ୍ୟ ବୋଧ। ସେମାନେ ଢୁଳାଇ ପଡ଼ିଲେଣି କଲେଜର ଫାଟକ ଦେହକୁ ଲାଗି। ଜଣକର ଆଲସ୍ୟ ବିଜଡ଼ିତ ଘୁଂଘୁଡ଼ି ପ୍ରାୟ ଖଣ୍ଡେ ଦୂର ପର୍ଯ୍ୟନ୍ତ ଶୁଭୁଛି। ପଥଜନ ବିରଳ। ରାତି ଗମ୍ଭୀରରୁ ଗମ୍ଭୀରତର ହେଉଛି। ନିଃଶବ୍ଦ ପରିବେଶ ମଧ୍ୟରେ ପତ୍ରଟିଏ ପଡ଼ିଲେ ପଥର-ଟିଏ ପଡ଼ିଲା ଭଳି ଶୁଣା ଯାଉଛି।

ଛାତ୍ର ଆନ୍ଦୋଳନ ପୂର୍ବଠାରୁ ଅଧିକ ସୁଦୃଢ଼ ଓ ଏକତାବଦ୍ଧ। ପ୍ରମାଣ ସ୍ୱରୂପ ଅନଶନ ଆସି ପହଞ୍ଚିଛି ପଞ୍ଚମ ଦିନରେ। ପ୍ରଥମେ ଦିନେ ଦୁଇଦିନ ପର୍ଯ୍ୟନ୍ତ ବେଶ୍ ଉତ୍ତେ-ଜନା ସୃଷ୍ଟି ହୋଇ ପାରିଥିଲା। ବାରମାଆର ତେର ପିଲ ଦାନାପାନି ନଗଣ୍ୟ ଭଳି ଲୋକ ଉପାସରେ କଟାଇ କରି ବସି ରହିଥିବାରୁ କୌତୂହଳି ଜନସାଧାରଣଙ୍କର ସହାନୁଭୂତି ଲାଭକରି ପାରିଥିଲେ। ସରକାରୀ ଅଫିସରମାନଙ୍କ କର୍ତ୍ତବ୍ୟ ପରାୟଣତା ମଧ୍ୟ ବଢ଼ିଥିଲା।

କଲେକ୍ଟର, ଏସ୍.ପି, ବିଧାୟକ, ସରପଞ୍ଚ ପ୍ରଭୃତିଙ୍କର ଔତ୍ସୁକ୍ୟ ଓ କଳ୍ପନା ଜଳ୍ପନା ବଢ଼ି ଯାଇଥିଲା । ସୁସଙ୍ଗତ, ସୁପରିମିତ, ସୁସମଞ୍ଜସ ବକ୍ତୃତା ମାଧ୍ୟମରେ ପିଲ୍ଲ ମାନଙ୍କର ଦାବୀ ପୂରଣ ହୋଇ ପାରିବ, ଯେପରି ତାହା ସେମାନେ ଚିନ୍ତା କରୁଥିଲେ । କପରି ଅନଶନ ଭଙ୍ଗ କରାଇ ଶାନ୍ତି, ସୁସ୍ଥତା ଓ ସ୍ୱାଭାବିକତା ଫେରାଇ ଆଣିବେ, ସେଥିପାଇଁ ବାରମ୍ବାର ଆଲୋଚନା କରୁଥିଲେ । ସେ ସମ୍ବନ୍ଧୀୟ ଟିକା, ଟିପ୍‌ପଣୀ, ବ୍ୟାଖ୍ୟା, ବିବରଣୀ, ବିଶ୍ଳେଷଣ ଇତ୍ୟାଦିର ଅନ୍ତ ନ ଥିଲା ।

ଯେଉଁ ଦିନ ସନ୍ଧ୍ୟା ସମୟରେ କେତେକ ରାଜନୀତି ବେପାରୀଙ୍କ ପ୍ରରୋଚନାରେ ଅଧ୍ୟକ୍ଷଙ୍କୁ ଡକାଇ ଆଣି ଛାତ୍ରମାନେ ଏଠାରେ ଘେରାଉ କରି ରାତି ଦୁଇଟାଯାଏ ଅଟ-କାଇ ରଖିଲେ, ଅତି ଅଯୌକ୍ତିକ ବାକ୍‌ବିତଣ୍ଡା ଚଳାଇ ପରିସ୍ଥିତିକୁ ଉତ୍ତପ୍ତରୁ ଉତ୍ତପ୍ତତର କରି ପକାଇଲେ, ସେହି ଦିନଠାରୁ ଭିନ୍ନ ମୋଡ଼ ନେଲା କଥାଟା । ଛାତ୍ର ଓ ଜନ ସାଧା-ରଣଙ୍କ ଘେର ମଧ୍ୟରୁ ଅଧ୍ୟକ୍ଷଙ୍କୁ ମୁକୁଳାଇ ଆଣିବା ପାଇଁ ପୋଲିସ କର୍ତ୍ତୃପକ୍ଷ କହ୍ଣିତ ବଳ ପ୍ରୟୋଗ କରିବାକୁ ବାଧ୍ୟ ହେଲେ । ଏହା ପରେ ସରକାର ଅନୁଭବ କଲେ ଯେ ପିଲ୍ଲ ମାନଙ୍କର ଦାବୀର ଯଥାର୍ଥତା ଓ ଯୌକ୍ତିକତା କିଛି ନାହିଁ କିମ୍ବା ସେମାନଙ୍କ କାର୍ଯ୍ୟରେ ସୁମାର୍ଜିତ ନୀତି ଓ ସ୍ୱଚ୍ଛ ଚିନ୍ତାର ସ୍ପନ୍ଦ ନାହିଁ । ଅଥଚ ଭିତରେ ଭିତରେ ଘାଘାଟିକ ପରି କଳ୍ପନା ଚାଲିଛି । ଅନ୍ୟ ମାନଙ୍କ ଦ୍ୱାରା ପ୍ରରୋଚିତ ହୋଇ, ପ୍ରତାରିତ ହୋଇ, ପ୍ରତିଶ୍ରୁତ ହୋଇ ସେମାନଙ୍କର ଅନୁଗତ କିମ୍ବା ବଶମ୍ବଦ ଭଳି ସନ୍ତ୍ରାସ ସୃଷ୍ଟି କରୁଛନ୍ତି । ବୁଝି ପାରୁନାହାନ୍ତି ଯେ ସେମାନଙ୍କର କାର୍ଯ୍ୟକଳାପ, ବିଚ୍ୟୁତି, ବିଭ୍ରମ ବହୁବିଧ ଅପରାଧରେ କଳୁଷିତ ବୋଲି ।

କୋଡ଼ିଏ କି ପଚିଶ ବର୍ଷ ପୂର୍ବେ ଦେଶ ପାଇଁ, ସମାଜ ପାଇଁ ଏହି ଛାତ୍ର ଆନ୍ଦୋ-ଳନର ପୃଷ୍ଠଭୂମିରେ ଛାତ୍ରୀମାନେ ଲାଠିମାଡ଼ ଓ କାରାବରଣରେ ସୌଭାଗ୍ୟ ଅର୍ଜନ କରୁ-ଥିଲେ ଓ ରାଜନୀତିରେ କେଉଁଠି କପରି ପ୍ରମୁଖ ଅଂଶ ଗ୍ରହଣ କରୁଥିଲେ । କିନ୍ତୁ ତଥା-କଥିତ ଅଖଣ୍ଡ ଅନଶନରେ ଯୋଗଦେଇ ଛାତ୍ରମାନଙ୍କ ସହିତ ଏକାଠି ରାସ୍ତାକଡ଼ରେ ଏକାଠି ରାତ୍ରି-ଯାପନ କରିବା ହୁଏତ ସମ୍ଭବ ନ ଥିଲା । ପ୍ରଥମରୁ ପ୍ରବୀଣ ଛାତ୍ର ନେତା ଓ ରାଜ-ନୈତିକ ଦଲାଲ ମାନେ ଆନ୍ଦୋଳନ ଲାଗି ଛାତ୍ରମାନଙ୍କୁ ଅନୁପ୍ରାଣିତ କରିବା ପାଇଁ, ଉସୁକାଇବା ପାଇଁ ସେମାନଙ୍କ ସହିତ ମିଶି ଏଭଳି ଆଡ୍‌ଡା ମାରିବାକୁ ଆରମ୍ଭ କରି-ଦିଅନ୍ତି, ଯାହାର ପରିମାଣ ଓ ବିଷୟବୈଚିତ୍ର୍ୟର ସୀମା ନ ଥାଏ । ସେଥିରେ ସେମାନେ ମୋହିତ ହୋଇ ଯାଆନ୍ତି । ଏହି କ୍ଷେତ୍ର ପ୍ରସ୍ତୁତି ବେଳେ କୌଣସି ଛାତ୍ରୀ ନିଜକୁ ଲଜ୍ଜା ବଶତଃ ସେ ସବୁ ଜୈବ ଆଦି ବ୍ୟାପାରର ପାଖ ମାଡ଼ିବାକୁ ଉଚିତ୍ ମନେ କରେ ନାହିଁ । କିନ୍ତୁ ସାଂପ୍ରତିକ କାଳରେ ଏହି ଧାରଣା ବହୁ ପରିମାଣରେ ବଦଳି ଗଲାଣି । ଅନେକ ମନେକଲେଣି, ଏହା ଥିଲା କେତେକ ପରିମାଣରେ ସାହସର ଅଭାବ, ଆଉ କେତେକ

ପରମାଣରେ ନବୁ ଧିତା । ବଦଳି ଗଲଣି ସବୁ କଥା । କଲେଜରେ ଓ ବିଶ୍ୱବିଦ୍ୟାଳୟରେ ଛାତ୍ରୀମାନଙ୍କର କ୍ରମବର୍ଦ୍ଧମାନ ସଂଖ୍ୟାକୁ ଆଖି ଆଗରେ ରଖି ସହଶିକ୍ଷା ସହିତ ଅବାଧ ମିଳାମିଶାର ପ୍ରଚୁର ପ୍ରଚଳନ ଫଳରେ ଦୁଃସାହସୀ ଇନ୍‌ଟେଲେକ୍‌ଚୁଆଲ ଛାତ୍ରୀମାନେ ସବୁ ସମୟରେ ସବୁ କ୍ଷେତ୍ରରେ ସହଯୋଗୀ ଭାବେ ଅଂଶଗ୍ରହଣ କରିବାକୁ ଆଦୌ ପଶ୍ଚାତ୍‌ପଦ ନୁହନ୍ତି । ସେଥିପାଇଁ କୌଣସି ପ୍ରକାର ବାଧା-ନିଷେଧ ନାହିଁ । ତାହା ବରଂ ଗର୍ବ ଓ ଗୌରବର ବିଷୟ ହୋଇଛି ।

ଏଠାରେ ବନ୍ଧୁମାନଙ୍କର ସତର୍କବାଣୀକୁ ଅଗ୍ରାହ୍ୟ କରି ବିଭିନ୍ନ ଶ୍ରେଣୀର ଆଠ ଜଣ ଛାତ୍ରଙ୍କ ସହିତ କୁମାରୀ ମଞ୍ଜୁଶ୍ରୀ ସ୍ୱତଃସ୍ଫୂର୍ତ୍ତି ଭାବେ ନିର୍ଯ୍ୟାତନା ବିରୋଧ ସଂଗ୍ରାମରେ ଅଂଶ ଗ୍ରହଣ କରିବା ଦ୍ୱାରା ଦୁର୍ବାର ଆନ୍ଦୋଳନର ପ୍ରାଣ ସ୍ପନ୍ଦିତ ହୋଇ ଯାଉଛି, ଅପରିସୀମ ସମ୍ଭାବନା ବୃଦ୍ଧି ପାଇଛି । ଗୋଟିଏ ଶବ୍ଦରେ ପ୍ରକାଶ କରିଲେ ସେ ହେଉଛି ଅନଶନକାରୀ ଦଳର ଚୂଡ଼ାମଣି—ପ୍ରାଣସ୍ୱରୂପା । ଅନ୍ୟମାନେ ଯିମିତି ତାହାର ପଛେ ପଛେ ଜୀବନ ମରଣକୁ ପାଦ ତଳର ଗୁଳି ମନେକରି ଚାଲିଛନ୍ତି ।

କୁମାରୀ ମଞ୍ଜୁଶ୍ରୀ ହେଉଛନ୍ତି ଜନୈକ ଚତୁର୍ଥ ଶ୍ରେଣୀ କର୍ମଚାରୀର କନ୍ୟା । ବାପା ତାର କୌଣସି ଏକ ସରକାରୀ ଅନୁଷ୍ଠାନର ପିଅନ । ସେ ଯେଉଁ ଦିନ ଝିଅକୁ ଆଣି ଏହି କଲେଜରେ ନାମ ଲେଖାଇବା ପାଇଁ ଅଧ୍ୟକ୍ଷଙ୍କ ଦ୍ୱାରସ୍ଥ ହୋଇଥିଲେ, ସେଦିନ ଅଧ୍ୟକ୍ଷ ମହାଶୟଙ୍କର ଆଖି ଦୁଇଟି ବିସ୍ମୟରେ ବିସ୍ଫାରିତ ହୋଇ ଯାଇଥିଲା ଏହି ଦୁଇ ଅନାଦୃତ ବ୍ୟକ୍ତିଙ୍କୁ ଦେଖି । ଶରୀର ଯେଉଁପରି ନିରୀହ, ମୁହଁ-ଆଖି, ବେଶ ପୋଷାକ ଥିଲା ତାହା ଠାରୁ ଅଧିକ ନିରୀହ । ଉପରକୁ ଉଠିବା ପାଇଁ ଥିଲା ପ୍ରବଳ ଆଗ୍ରହ । କାଙ୍କ୍ଷିତ ଦୟା, କାଙ୍କ୍ଷିତ ଅନୁକମ୍ପା, କାଙ୍କ୍ଷିତ ଆଶ୍ରୟ ପ୍ରାର୍ଥୀ ହୋଇ ଆସିଥିଲେ ସେମାନେ । ଅଧ୍ୟକ୍ଷ ମଧ୍ୟ ଅବିଳମ୍ବେ କାଗଜପତ୍ର ପରୀକ୍ଷା କରି ଝିଅଟିର ନାମ ଲେଖାଇ ଦେଇଥିଲେ । ଅନୁକମ୍ପା ପ୍ରଦର୍ଶନ କରି ଦରିଦ୍ର ଛାତ୍ର-ବୃତ୍ତି ମଞ୍ଜୁରି ଦେଇଥିଲେ । ଆଉ ମଧ୍ୟ ମହିଳା ଛାତ୍ରାବାସରେ ତାକୁ ଅକୁଣ୍ଠିତ ଚିତ୍ତରେ ଆଶ୍ରୟ ଦେଇଥିଲେ । ଦରିଦ୍ର ମଞ୍ଜୁଶ୍ରୀର ସେଦିନ କେତେ ଉଚ୍ଚ ଆଶା ଥିଲା—ଜୀବନରେ କିଛି କାମ କରି ଦେଖାଇ ଦେବ, ନାମକରା ମଣିଷଟାଏ ହେବ, ବାପା-ମାଆର ଛାତି ଗର୍ବରେ ଫୁଲି ଉଠିବ । ପଙ୍କ ଭିତରୁ ସେ ପଙ୍କଜ ହୋଇ ଫୁଟି ଉଠିବ ଅଧ୍ୟକ୍ଷଙ୍କର ଅଭୟ ଛତ୍ର-ଛାୟା ତଳେ ।

ଦେଖୁ ଦେଖୁ ଅଳ୍ପ କେତୋଟି ମାସ ମଧ୍ୟରେ ମଞ୍ଜୁଶ୍ରୀର ଅକଳ୍ପିତ ମଞ୍ଜୁଳତା ଅନ୍ୟ ସମବୟସୀ ମାନଙ୍କଠାରୁ ଅଧିକ ପ୍ରକଟିତ ହୋଇଥିଲା । ତଳ ଉପର ସବୁ ଶ୍ରେଣୀର ଛାତ୍ରମାନଙ୍କ ନୟନରେ ଅବଲୀଳା କ୍ରମେ ମାୟାର ଅଞ୍ଜନ ସେ ଲିଭାଇ ଦେଇଥିଲା ଓ ସେମାନଙ୍କର ମାନସିକ ପରିବେଶକୁ କରି ପକାଇଥିଲା ଏପଟ ସେପଟ । ରେଖାଙ୍କିତ ନିଟୋଳ ସ୍ୱାସ୍ଥ୍ୟ, ସୁଶ୍ରୀ ଚଞ୍ଚଳ ଦେହ, ପାଚିଲା କାଗଜି ଲେମ୍ବୁ ଭଳି ଉଜ୍ଜ୍ୱଳ ତ୍ୱକ ଓ

ଆବେଗ ପ୍ରବଣ କଣ୍ଠସ୍ୱର ଯୋଗୁଁ ତାହା ଆଡ଼କୁ ଆକର୍ଷିତ ହୋଇ ଆସୁଥିଲା ସମଗ୍ର ଛାତ୍ର ସମାଜ । ପ୍ରଥମ ସାକ୍ଷାତ ଆଳାପରେ ଲଜ୍ଜା କିମ୍ବା ଜଡ଼ତାର ଚିହ୍ନ ବର୍ତ୍ତ ନ ଥିବାରୁ ସମସ୍ତେ ମୋହିତ ହୋଇ ପାରୁଥିଲେ । ସେ ଏଭଳି ନିର୍ମୋହ ଓ ନିର୍ଲିପ୍ତ ଥିଲା ଯେ, କୌଣସି କ୍ଷେତ୍ରରେ ଲଜ୍ଜାରେ ଅଧୋବଦନ ହେଉ ନ ଥିଲା । ବରଂ କହିବାକୁ ଗଲେ ମଞ୍ଜୁଶ୍ରୀର ଆଖି, ନାକ ଓ ଚିବୁକରେ ସବୁବେଳେ ମିଶିଥ ବିଜୟିନୀର ଗର୍ବ ଲାଗି ରହିଥାଏ । ପ୍ରତ୍ୟେକ ଭଙ୍ଗୀ ତାର ଅନନ୍ୟ, ଅସାଧାରଣ । ଅକୁଳୀନ ଘରର ଝିଅ ରୂପେ ପିଲାଟି-ଦିନରୁ ଅନ୍ୟର ମର୍ଯ୍ୟାଦା ପ୍ରତି ସଜାଗ ରହି ନିଜରଙ୍ଗ ଜୀବନ ଯାତ୍ରାର ଛନ୍ଦ ସହିତ ସମ୍ପୂର୍ଣ୍ଣ ଅଭ୍ୟସ୍ତ ହୋଇ ପଡ଼ିଥିଲା । ସେଥିପ୍ରତି ତାର ଯେଉଁ ନିମବର୍ଦ୍ଧମାନ ବିତୃଷ୍ଣା ଗର୍ଜ୍ଜିତ ଥିଲା, ତାହା ଯେପରି ହଠାତ୍ ଛିନ୍ନଭିନ୍ନ ହୋଇଗଲା ଆସି କଲେଜର ଛାତ୍ରୀ ନିବାସରେ । ନୂତନ ପରିବେଶ, ନୂତନ ବାତାବରଣ, ନୂତନ ବନ୍ଧୁମାନଙ୍କ ମେଳରେ ଅଦ୍ଭୁତ ଅନୁଭୂତି ଓ ଅଦ୍ଭୁତ ଚିନ୍ତାଧାରାର ଅଙ୍କୁର ମୁଣ୍ଡ ଟେକି ଉଠିଲା । ପରିବାର ବର୍ଗଙ୍କ-ଠାରୁ ଦୂରରେ ରହୁଥିବାରୁ ସେମାନେ ମଧ୍ୟ ମଞ୍ଜୁଶ୍ରୀର ଗ୍ଭଲି-ଚଳନ, ଗତିବିଧି, ଆଗ୍ଭର-ବ୍ୟବହାର ପ୍ରତି ଲକ୍ଷ୍ୟ ରଖିବା ସମ୍ଭବ ନ ଥିଲା । ଏଣୁ ରହିଗଲା ଗ୍ଭଲି; ଆଉ ବାତ୍ୟା-ବାହିତ ଶୁଖିଲା ପତ୍ର ପରି ଉଡ଼ିଗଲା ଚଳନର ଖୋଳ । ଦୁର୍ନିବାର ଖୋସାର ବନ୍ଧନ କାଟି ହଠାତ୍ ପ୍ରଜାପତି ହୋଇ ଯୌବନର ଉପବନରେ ଉଡ଼ି ବୁଲିଲା ହାସ୍ୟୋଜ୍ଜ୍ୱଳ ମଞ୍ଜୁଶ୍ରୀର ରଙ୍ଗିନ ଚଞ୍ଚଳ ଡେଣା ଦୁଇଟି । ଜନ୍ମିଲା କଥିତ ଆତ୍ମତୃପ୍ତି ବୋଧ ।

ଛାତ୍ର ସଂସଦର ସଭାପତି ବାଛି ବାଛି ଯେଉଁ ଆର୍ ମାର୍କା ଅଷ୍ଟମୂର୍ତ୍ତି ହିରୋଙ୍କୁ ଅନଶନକାରୀ ଛାତ୍ର ରୂପେ ସମ୍ମାନ ଓ ସ୍ୱୀକୃତି ଦେଇଥିଲେ, ଯେଉଁମାନଙ୍କ ଗଳାରେ ଦୈନିକ ସଦ୍ୟ ସୁବାସିତ ପୁଷ୍ପ ମାଳ୍ୟ ଲମ୍ବାଇ ଦିଆଯାଉଥିଲା, ସେମାନେ ପ୍ରତ୍ୟେକ ଥିଲେ ଅଧ୍ୟୟନ ବ୍ୟତୀତ ଅନ୍ୟ ସମସ୍ତ ବିଦ୍ୟାରେ ନିପୁଣ, ପ୍ରାଣ ଗୃହଣରେ ଭରପୁର, ଉଦ୍ରେକିତ ଭାବେ କଥାବାର୍ତ୍ତା କରିବାରେ ଓସ୍ତାଦ ! ପରୀକ୍ଷା ରୂପକ ଅର୍ଗଳକୁ ଅତିକ୍ରମ କରି ନ ପାରିଲେ ସୁଦ୍ଧା ଜୀବନ ସ୍ରୋତର ପ୍ରତିକୂଳରେ ପହଁରିବା ପାଇଁ ଯଥାସମ୍ଭବ ଦକ୍ଷତା ଓ ମନୋବଳ ଅର୍ଜନ କରିଛନ୍ତି । କଲେଜରେ ଓ କଲେଜର ବାହାରେ ଅରେ ଅଧେ ଫୁଟେନ୍ତି, ଲୁଟେନ୍ତି, ଦୁର୍ଦ୍ଦମନୀୟ ଦାଦାଗିରି ଦେଖାଇ କୀର୍ତ୍ତି ଅର୍ଜନ କରି ନାହାନ୍ତି ବୋଲି କୁହାଯାଇ ପାରିବ ନାହିଁ । ହିପି ବାଳ, ନୂଆଳିଆ ନିଶ, ଚଉଡ଼ା କମରପଟି, ଜିନ୍ ପ୍ୟାଣ୍ଟ୍ ସାଙ୍ଗକୁ ଗାଢ଼ ନାଲି କିମ୍ବା ହଳଦି ରଙ୍ଗର ଟିସାର୍ଟ, ବେକରେ ମାଦୁଲି, ମୁଣ୍ଡରେ ଛିଟ ରୁମାଲ ବନ୍ଧା, ହାତରେ କଡ଼ା, ଉଚ୍ଚା କଠୋଉ ଗୋଡ଼ ଯୋତା ପିନ୍ଧି ଦେଖାଯାନ୍ତି ଅବିକଳ ସଇତାନର ସହୋଦର, ଛାତ୍ରମାନଙ୍କର ଦଣ୍ଡମୁଣ୍ଡର କର୍ତ୍ତା । ସରପଞ୍ଚଙ୍କଠାରୁ ଆରମ୍ଭ କରି ବିଧାୟକଙ୍କ ପର୍ଯ୍ୟନ୍ତ ସେମାନଙ୍କ ଦର୍ପିତ ଚେହେରାକୁ ସାଲ୍ୟୁଟ ଦେଇଥାନ୍ତି । ପୁଲିସ ବିଭାଗର ମଦମତ୍ତ କର୍ତ୍ତାମାନେ ହାତ ଯୋଡ଼ନ୍ତି, ମନ୍ତ୍ରୀ ମହୋଦୟଙ୍କ କଥା ପଗ୍ଭରେ କିଏ ? ସୁଚ, କାମାର, ସିନ୍ କାକୋ, ଶେଷ, କନସ୍ଟାକ

ଅଷ୍ଟ୍ରିୟାନ ସ୍ନ୍ୟାପସ, ଇଂଲିସ ଡ୍ରାମ୍ବୁଇ ପ୍ରଭୃତିର ଗୁଣାଗୁଣ ପରୀକ୍ଷାରେ ପାରଦର୍ଶୀ ସେମାନେ । ଏଣୁ ପ୍ରଥମରୁ ଗ୍ରନ୍ଥ ସଂସଦର ସଭାପତିଙ୍କୁ ଜଣାଇ ଦେଇଥିଲେ ଯେ ଅନ୍ୟାୟ, ଅବିଚାର, ଅତ୍ୟାଚାର, ଶୋଷଣ, ପେଷଣର ବିରୁଦ୍ଧରେ ଲଢ଼ାଇ କରିବାକୁ ହେଲେ, ଜଳୀୟ ପଦାର୍ଥ ରୂପେ କିଛି ଗଙ୍ଗାଜଳ ବା ସଞ୍ଜିବନୀ ସୁଧାର ଆବଶ୍ୟକତା ରହିଛି । ତାହା ମିଳିଗଲେ ଅସାଧ୍ୟ ସାଧନା କରି ହୁଏ ନାହିଁ । ବୃହଦ୍‌ଆକାର ମହାତ୍ମା ଗାନ୍ଧୀଙ୍କ ଫଟୋ ଅନ୍ତରାଳରେ ଏଥିପାଇଁ ଏଭଳି ସୁବନ୍ଦୋବସ୍ତ କରାଯାଇଥିବ, ଯାହାଫଳରେ ଯେ କୌଣସି ଅନଶନକାରୀ ଯେକୌଣସି ମୁହୂର୍ତ୍ତରେ ତୃଷା ନିବାରଣ କରି ପାରିବ ।

ଯେତେବେଳେ ଦୁଇପକ୍ଷ ମଧ୍ୟରେ ଲଢ଼ାଇ ଲାଗେ, ସେତେବେଳେ ଜିତାପଟ ନେବା ପାଇଁ ସବୁ ଉପାୟ ପ୍ରୟୋଗ କରିବାକୁ ମନୀଷୀ ପରାମର୍ଶ ଦିଅନ୍ତି । କହିବାକୁ ଗଲେ ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ଅନ୍ଧ, ମୂକ ଓ ବଧୀର ହେବାକୁ ବାଧ୍ୟ ହୁଏ । ଏଣୁ ଚୁକ୍ତି ଅନୁଯାୟୀ ସବଦା ଫେମ୍ ଲାଇମ୍ ସୋଡ଼ା ଉଇଥ ସଲ୍ଟ ଯୋଗାଇ ଦିଆ ଯାଉଛି ସରକାରୀ କର୍ତ୍ତୃପକ୍ଷଙ୍କ ତରଫରୁ । ଶିଥିଳତା ଦେଖା ଦେବା ପରେ ବେଳ-କାଳ ଉଣ୍ଡି କେତେବେଳେ କମିତି ଗୋଟାଏ ଦୁଇଟା ପେଗ ରମ କିମ୍ବା ହୁଇସ୍କି କିମ୍ବା ବୋତଲେ ଚଲଡ଼୍‌ବସ୍ଙ୍କ ଅଣାଯାଇଛି ସ୍ୱର୍ଗୀୟ ସୁଖ ଅନୁଭବ ପାଇଁ । ଟର୍ଚ୍ଚ ଭିତରେ ଯଥାସମ୍ଭବ ଗୋପନୀୟତା ରକ୍ଷା କରି ସିଙ୍ଗାଡ଼ା କିମ୍ବା ରସଗୋଲା ଆଦି ଭର୍ତ୍ତି କରି ରାତିରେ ଯୋଗାଇ ଦିଆଯାଇଛି ପାଇଖାନାକୁ ଯିବା ବାଟରେ । ପୂର୍ବର ଭାବମୂର୍ତ୍ତିକୁ ଅକ୍ଷୁନ୍ନ ରଖିବା ପାଇଁ ଏ ସବୁର ହିସାବ ମଧ୍ୟରେ ସେହିପରି ସାନ୍ଧ୍ୟ ଉପାରେ ଲେଖା-ହୋଇଛି ଗ୍ରନ୍ଥସଂସଦର ହିସାବ ଖାତାରେ ।

ମାନସିକ ତଥା ସାମାଜିକ ଜ୍ଞାନ, ବୁଦ୍ଧି, ଚେତନା, ବିଚାର ପ୍ରଭୃତିର ସାମ-ୟିକ ଅବଲୁପ୍ତି ନ ଘଟିଲେ ଏହି ଅନଶନ କାର୍ଯ୍ୟକୁ ଦୀର୍ଘଦିନ ସ୍ଥାୟୀ କରାଯାଇ ପାରିବ ନାହିଁ । ଏହା ସ୍ଥାବର ନୁହେଁ, ଜଙ୍ଗମ—ଚଳମାନ ମନେ ରଖିବାକୁ ହେବ ଅନ୍ୟଥା ଜୀବନ ଭଳି ଆନ୍ଦୋଳନର ଚେହେରା ଓ ଚରିତ୍ର ବଦଳି ଯାଇପାରେ ସର୍ବଗ୍ରାସୀ ଲୋଭଟାର ପଡ଼ି । ଏଥିପାଇଁ ଗ୍ରନ୍ଥ ସଂସଦର କର୍ମକର୍ତ୍ତାଗଣ ଯେତିକି ସଚେତନ, ତାହାଠାରୁ ଅଧିକ ସଚେତନ ସ୍ୱାର୍ଥାନ୍ଧ ଅଧ୍ୟାପକ ଗଣ । ସେମାନଙ୍କର ପ୍ରତ୍ୟେକ ଆଚରଣରେ ସ୍ୱାର୍ଥ ସଂଶ୍ଳିଷ୍ଟ । ଶ୍ରେଷ୍ଠ ଶ୍ରେଷ୍ଠ ଭଡ଼ାଘରର ଘରକାନ୍ଥ ମଧ୍ୟରେ ପରିବାର ଯେକି ବାସ କରିବା ଫଳରେ ସଂସାରଟା ସେମାନଙ୍କ ନିକଟରେ ଅତ୍ୟନ୍ତ ଶ୍ରେଷ୍ଠ ହୋଇ ଯାଇଛି । ତେଲଲୁଣର ଚିନ୍ତାରେ ଦୈନିକ ବ୍ୟସ୍ତ ରହି ଶିକ୍ଷକର ଉଦାରତା, ମାନବିକତା ଓ ମର୍ଯ୍ୟାଦାବୋଧ ସେମାନେ ହରାଇ ସାରିଲେଣି । ଦୈନନ୍ଦିନ ସୁଖ, ସ୍ୱାଚ୍ଛନ୍ଦ୍ୟ, କାମଦାମ, ଶୃଙ୍ଖଳା ଓ ମୂଲ୍ୟବୋଧଠାରୁ କେତେକ ଗ୍ରନ୍ଥଙ୍କୁ ଦୂରେଇ ଆଣି ନିଜର ସ୍ୱାର୍ଥ ସାଧନ ପାଇଁ ଯନ୍ତ୍ରତନ୍ତ୍ର ପ୍ରୟୋଗ କରାଇ ଆଧିପତ୍ୟ ବିସ୍ତାର କରିବାର ପ୍ରଥମ ଓ ପ୍ରଧାନ ଗ୍ରନ୍ଥକାଠି

ହେଉଛି—ସେମାନଙ୍କ ନୈତିକତାକୁ ନିଜ ହାତମୁଠାକୁ ନେଇ ଆସିବା । ସେମାନଙ୍କ ଦୁର୍ବଳତା ଗୁଡ଼ିକୁ କୂଟବୁଦ୍ଧି ଦ୍ୱାରା ଗୋଟି ଗୋଟି କରତଳଗତ ଆମଳକ ଭଳି ନ ରଖିଲେ କେତେବେଳେ କେଉଁ କଥା ଘଟିବ, ତାର ଠିକ୍ ଠିକଣା ନାହିଁ । ଆଜି ଯିଏ ସେମାନଙ୍କ କଥାରେ ଉଠବସ ହେଉଛି କାଲି ସିଏ କାହିଁକି ଅନ୍ୟମାନଙ୍କ କଥାରେ ସେପରି ନ ହେବ ? ଏ ଯେ ଚଞ୍ଚଳତାର ଖେଳ । ଏହାକୁ ନିଜେ ସର୍ବଶକ୍ତିମାନ ଈଶ୍ୱର ବି କଳନା କରି ପାରିବେ ନାହିଁ । ମାନସିକ ଦ୍ୱନ୍ଦ୍ୱ, ହୀନମନ୍ୟତା, ଗ୍ଲାନି, ଦୁଶ୍ଚିନ୍ତା ଓ ହତାଶା ମଧ୍ୟରେ ଯେତେ ବୁଡ଼ିବାକୁ ଆରମ୍ଭ କରିବେ ସେତେ, ଯୋରରେ ସେମାନଙ୍କର ସ୍ନେହ, ମମତା, ପରିକଳନା ଓ ପରାମର୍ଶ ପ୍ରତି ଆକୃଷ୍ଟ ହେବେ । ଚେଲା ଓ ଗୁମସ୍ତାମାନେ ବୋଲି ମାନି ନିର୍ବିକାର ଚିତ୍ତରେ ହାଡବାଣିସି ଭଳି କାମ କରିବେ । ଛାତ୍ର ସଂସଦ ରହିବ ସେହି ଦ୍ୱନ୍ଦ୍ୱ ଭେଦବାଦୀମାନଙ୍କର ହାତ ମୁଠାରେ । ଯାହା ଇଚ୍ଛା କରିବେ ତାହାକୁ ଉଦ୍ଦେଶ୍ୟମୂଳକ ଭାବରେ କଲେଜରେ ଚଳାଇ ନେଇ ପାରିବେ । ଅଧ୍ୟକ୍ଷଙ୍କଠାରୁ ଆରମ୍ଭ କରି ପରିଚାଳନା ସମିତି ପର୍ଯ୍ୟନ୍ତ କେହିହେଲେ ଏମାନଙ୍କର କ୍ଷେତ୍ରନ୍‌ଲେସ ସୁପର କୋମଶକ୍ତି ଓ ପରିକଳନାକୁ ଅତିକ୍ରମ କରି ପାରିବେ ନାହିଁ ।

ଏଣୁ ଅବକାଶ ସାମଗ୍ରୀ ଯୋଗାଇ ଦେବାପାଇଁ ଛାତ୍ରସଂସଦ ପକ୍ଷରୁ ଯେତିକି ଅର୍ଥବ୍ୟୟ କରାଯାଉଛି ତାହାଠାରୁ ବହୁ ପରିମାଣରେ ଅଧିକ ଅର୍ଥ ମିଳିଯାଉଛି ଉପରୋକ୍ତ ଅଧ୍ୟାପକ ମାନଙ୍କଠାରୁ ଓ ଅନଶନକାରୀ ମାନଙ୍କର ସାହାଯ୍ୟ କଲେ ଭିକ୍ଷାବୃତ୍ତି ଅବଲମ୍ବନ କରି । ଘରକୁ ଘର ବୁଲି ଖୁବ୍ ଦୁଃଖପୂର୍ଣ୍ଣ କଣ୍ଠରେ ଗୀତ ଗାଇ, ମାଟିରେ ଗଡ଼ି, ପ୍ରଚୁର କରୁଣ ରସ ବୁହାଇ, ଧୂଳି ଧୂସରିତ ହୋଇ ଯେଉଁମାନେ ଗୃହା ସଂଗ୍ରହରେ ପଟୁ, ସେମାନେ ଏଥିପାଇଁ ନିୟୋଜିତ । ପରମ ତପର୍ଯ୍ୟସ୍ତ ସମନ୍ୱରେ ପ୍ରତି ଛାତ୍ର ଛାତ୍ରୀଙ୍କର ଶକ୍ତି, ସମୟ ଓ ପ୍ରଚେଷ୍ଟା ଏକାନ୍ତ ଆବଶ୍ୟକ ବୋଲି କୁହାଗଲେ ମଧ୍ୟ ଏହି କଳାଧନର ସିଂହଭାଗରେ ସଂସଦର ସଭାପତି ଓ ଦଲାଲମାନଙ୍କର ହାତ ଚିକ୍‌କଣ ହୋଇ ପାରୁଛି । ଗଲା କେତେ, ଆସିଲା କେତେ, ରହିଲା କେତେର ହିସାବ ନାହିଁ । କିଏ କେଉଁଠୁ କେତେ କମାଇ ଆଣିଲା, ସେଥିରୁ କେତେ ପୁଣି ବାଟ ମାରଣା ହେଲା, ସେ ବିଷୟରେ ଟିକିନିଖି ଆୟବ୍ୟୟ ସମୀକ୍ଷା କରିବା ପାଇଁ ସମୟ ନାହିଁ । ପ୍ରାଥମିକ ପରିବେଶର ପରିବର୍ତ୍ତନ ଘଟାଇ ନୂତନ ପରିବେଶ ସୃଷ୍ଟି କରିବା ପାଇଁ ଉଦ୍ଦୀପନା ନାହିଁ । ଆୟୋଜନ ଆସିବ କୁଆଡ଼ୁ ?

ଛାତ୍ର ଶକ୍ତିକୁ ଉଦ୍‌ବେଗ୍ନ କରାଇ, ଯୁବଗୋଷ୍ଠୀକୁ ଶୂନ୍ୟଗର୍ଭ କରାଇ, ନିଜର ଉଦ୍ଦେଶ୍ୟ ସାଧନ ପାଇଁ ଦଲାଲମାନଙ୍କୁ ବିନିଯୋଗ କରିବା ଭଳି ଉପାୟର ବିକଳ୍ପ କିଛି ନାହିଁ । ନିରୀହ, ଶାନ୍ତିପ୍ରିୟ ଗତାନୁଗତିକ ଶୁଭଚିନ୍ତାକୁ ହେରୋଇନ୍, କୋକେନ, ଚରସ, ଗଞ୍ଜାଇ ଦ୍ୱାରା ଉନ୍ମତ୍ତ, ଉତ୍‌କ୍ଷିପ୍ତ ଓ ବିଭ୍ରାନ୍ତ କରାଇ ଯେଉଁ ସୁବିଧା ହାସଲ କରାଯାଏ, ତାହା ସବୁବେଳେ ହୋଇଥାଏ ନଗଦ ନାରାୟଣ କାରବାରରେ । ଏଥିରେ

ବନ୍ଦ, ମାଗ ଧାର ଉଧାରର ପ୍ରଶ୍ନ ନାହିଁ । କେତେବେଳେ କେଉଁ ମୁହୂର୍ତ୍ତରେ କାଭଳି ପରସ୍ଥିତିରେ ସେମାନେ ସମ୍ମତି ଚୁକ୍ତିପତ୍ରରେ ସ୍ୱାକ୍ଷର କରିବେ ତାହା ଠିକ୍ ନାହିଁ । ଏଣୁ ଅନିଶ୍ଚିତତା ଜନିତ ଆଶଙ୍କା ମଧ୍ୟରେ ପ୍ରତ୍ୟେକେ ନିଜ ନିଜର ସ୍ୱାର୍ଥ ସାଧନରେ ଲିପ୍ତ । ଯେତେ ଚଞ୍ଚଳ ଯେତେ ଲାଭ ଉଠାଇ ନିଆଯାଇ ପାରିଲା, ତାହାହିଁ ହେଲା ପାରିବାର ପଣିଆ । ତାହାହିଁ ହେଲା ବାହାଦୁରି ।

ପରିସ୍ଥିତି ଓ ପରିବେଶ ପ୍ରତି ପଚକର୍ଦୃଷ୍ଟି ରଖି ଅନଶନକାରୀମାନଙ୍କ ମଧ୍ୟରୁ କେଶବ କିଛିତ ଯୋଗାଣ ହୋଇଗଲା ମହାତ୍ମାଗାନ୍ଧିଙ୍କ ଫଟୋଚିତ୍ର ଆଡ଼କୁ । ସାଧାରଣ ଭାବରେ କେଶବର ପ୍ରକୃତି ଗମ୍ଭୀର । ମଝିରେ ମଝିରେ ଚଞ୍ଚଳ ଆଖିରେ ପଛକୁ ଚାହିଁବାର ଅଭ୍ୟାସ ଅଛି । କାନ୍ଥରେ ପକାଇଥିବା ନାମାବଳୀର ଚାଦରକୁ ସଜାଡ଼ି ନେଇ ଗାନ୍ଧୀ-ଫଟୋ ଦେହରେ ଝୁଲୁଥିବା ଗଜରାମାଳକୁ ତନ୍ନ ତନ୍ନ କରି ନିରୀକ୍ଷଣ କରିବାକୁ ଲାଗିଲା । ମୁଖବର୍ଣ୍ଣ । ଏହି ମାଳ ଦେହରେ ଅତି ସାବଧାନତାର ସହିତ ପୁଡ଼ିଆ ଗୁନ୍ଥି ଦିଆଯାଇ-ଥାଏ । ବେଳ କାଳ ଉଣ୍ଡି ସେମାନେ ତାହା କାର୍ଯ୍ୟରେ ଲଗାନ୍ତି । ଦୈନିକ ଯେଉଁ ସଦ୍ୟ ଗଜରାମାଳ ପ୍ରସ୍ତୁତ ହୁଏ ଓ ଗାନ୍ଧିଫଟୋ ସମେତ ପ୍ରତ୍ୟେକ ଅନଶନକାରୀଙ୍କ ବେକରେ ଲମ୍ବାଇ ଦିଆଯାଏ, ପ୍ରତ୍ୟେକ ମାଳରେ ଏହି ମହାର୍ଘ୍ୟ ପୁଡ଼ିଆକୁ କେଉଁଠି କିମିତି ସୁବିଧା ଦେଖି ଖଞ୍ଜି ଦିଆଯାଇଥାଏ । ମିଜାଜକୁ ଠିକ୍ ରଖିବା ପାଇଁ ଶରୀରର ପ୍ରତ୍ୟେକ ଅଂଶକୁ ଉତ୍ତେଜିତ କରିବା ନିମନ୍ତେ ସର୍ବ ସମକ୍ଷରେ ଅତି ଅଳ୍ପ ପରିମାଣର ପାନ, ସିଗାରେଟ୍ ଓ ଦିଆସିଲି ଯାହା ଯୋଗାଇ ଦିଆଯାଇଥାଏ ଗ୍ରାମ ସଂସଦ ତରଫରୁ । କହିବାକୁ ଗଲେ ତାହା ହେଉଛି ସମୁଦ୍ରକୁ ଶଙ୍ଖେ ପାଣି ପରି ।

ହଠାତ୍ ଇପ୍‌ସିତ ବସ୍ତୁ ପାଇଲା ଭଳି ତାର ମୁହଁ ଓ ଆଖି ଚୋପା ହୋଇ ଉଠିଲା । ସେ ଅଦ୍ଭୁତ ଆନନ୍ଦ ଓ ରୋମାଞ୍ଚ ବୋଧ କଲା । ମନ ଉଚ୍ଛନ୍ନ ହେଲା । ଛଣ୍ଡାଇ ଆଣିଲା ଗୋଲାପ ପାଖୁଡ଼ା ଅନ୍ତରାଳରେ ଲୁଚି ରହିଥିବା ବ୍ରାଉନ ସୁଗାରର ପୁଡ଼ିଆଟାଏ । ତାହାପରେ ପ୍ୟାଣ୍ଟ ପକେଟରୁ ବାହାର କଲା ଖଣ୍ଡେ ସିଗାରେଟ । ଝଣ୍ଟିଏ ସରୁ ତାର ସାହାଯ୍ୟରେ ସିଗାରେଟର ଜର୍ଦ୍ଦା ସବୁ ଅତି ନିପୁଣତାର ସହିତ ବାହାରକୁ ଆଣି ନାମା-ବଳୀର ଚାଦର ଉପରେ ଯତ୍ନର ସହିତ ରଖିଲା । ଏହି ପୁଡ଼ିଆରେ ଥିବା ଅମୂଲ୍ୟ ଦ୍ରବ୍ୟକୁ ସେଥିରେ ଠିକ୍ ଭାବେ ମିଶାଇଲା । ଅତି କୌଶଳୀ ଆଙ୍ଗୁଠି ସଞ୍ଚାଳନ କରି ମିଶ୍ରିତ ଜର୍ଦ୍ଦାକୁ ଫାଙ୍କା ସିଗାରେଟ କାଗଜ ଭିତରେ ଭର୍ତ୍ତି କରି ଲକ୍ଷ୍ୟକଲା ଯେ ପୂର୍ବ ଭଳି ତାହା ସୁଡ଼ୌଲ ହୋଇ ଯାଇଛି । ଏତିକି ବେଳକୁ କୁମାରୀ ମଞ୍ଜୁଶ୍ରୀ କାଙ୍‌କ୍ଷିତ ସୁଖ, ବାଞ୍ଛିତ ଆନନ୍ଦ ଲାଭ ଆଶାରେ ତା ଦେହକୁ ଘସିହୋଇ ଏକାନ୍ତ ଅନୁଗତ ଭଳି ବସି ପଡ଼ିଲା । ଗୁଡ଼ହାଣ୍ଡି ଦେହରେ ମାଛି ବସିଲେ ଯିମିତି ଉଠି ଆସି ପାରେନାହିଁ, ସେହିପରି ଅବସ୍ଥା ମଞ୍ଜୁଶ୍ରୀର । ଯଦି ବ ତା'ର ଅକଳନୀୟ ଦୁସାହସୀ ମିଜାଜ ଯୋଗୁଁ ସେ ଏହି ଆତଙ୍କ

ଜନତ ଘଟଣାରେ ଏକମାତ୍ର ସ୍ତ୍ରୀ ରୂପେ ଅଂଶ ଗ୍ରହଣ ପାଇଁ କୌତୂହଳୀ ହୋଇ ଉଠି-ଥିଲା, ତଥାପି ପୁଅପିଲାଙ୍କ ଭଳି ଧୂଆଁ ପିଇବାର ଦୁର୍ଦ୍ଦମ ଦାନବିକ ଅଭ୍ୟାସ ତାର ଆଦୌ ନ ଥିଲା । ସାଙ୍ଗସାଥି ମେଳରେ ମଜା ସୃଷ୍ଟି ପାଇଁ ଖଣ୍ଡେ ଅଧେ ସିଗାରେଟରେ ନିଆଁ ଧରାଇ ଆଖି ବାଟେ ଧୂଆଁ ଛାଡ଼ିବାର ବାହାଦୁରି ପ୍ରଦର୍ଶନ କରିଛି କେବେ କମିତ, କିନ୍ତୁ ତାହା କିଛି ନୁହେଁ । ଏହି ଅନଶନ ସମୟରେ ହିଁ ସମସ୍ତଙ୍କ ସହିତ ଧୂଆଁ ପିଇ ସେ ସଦ୍ୟ ଫାନ୍ଦରେ ପଡ଼ିଗଲାଣି । ଦି'କଲ ଧୂଆଁ ପିଇଦେଲା ପରେ ସେ ଅନୁଭବ କରିପାରିଛି ନାହିଁ ନ ଥିବା ପ୍ରାଣଚଞ୍ଚଳ ଉଦାମତା ।

ମଂଜୁଶ୍ରୀ ପ୍ରତି କେଶବର ଦୁର୍ବଳତା ଓ ଉଚ୍ଛୁଳତା ବେଳେ ବେଳେ ଲକ୍ଷ୍ୟ କରିଯାଏ । ଯେ ଯେ ସାହସ ବାନ୍ଧ ମଂଜୁଶ୍ରୀର ପ୍ରେମରେ ପଡ଼ିଛି ତାହା ମଧ୍ୟ ଠିକ୍ କୁହାଯାଇ ପାରୁନାହିଁ । ଏ ଦୁର୍ବଳତା କେବଳ ଗୋଟିଏ ବୁଡ଼ି ଯାଉଥିବା ଜାହାଜର ସହଯାତ୍ରୀ ଯୋଗୁଁ । ଯେଉଁ ମୁହୂର୍ତ୍ତରେ ଅଧା ମଇଳା ଛିଣ୍ଡା ତାର୍ପୋଲିନ୍ ଉପରେ ଅନଶନକାରୀମାନେ ବସିଲେ, ସେତେବେଳଠାରୁ ସେମାନେ ଗୋଟିଏ ଜାହାଜରେ ଚଢ଼ିଲେ । ଜାହାଜଟି କୂଳରେ ଲାଗିଲେ ସମସ୍ତେ କୂଳରେ ଲାଗିବେ । ମଝି ଦରିଆରେ ବୁଡ଼ିଲେ ସମସ୍ତେ ବୁଡ଼ିବେ ଧରାଧରି ହୋଇ । ଏପରି କ୍ଷେତ୍ରରେ କିଏ ଆପଣ ପର, କିଏ ବା ନିଜର, ତାହା ମୂଲ୍ୟାୟନ ଅସମ୍ଭବ । ଯେତେବେଳେ ନିଦ୍ରା ଯାଇଥାନ୍ତି, ସେଣ୍ଟାଟି ଯାକ ଧରାଧରି ଛନ୍ଦାଛନ୍ଦି ହୋଇ ଚେଲୁଣି ପୋକ ଛୁଆ ଭଳି ପଡ଼ି ରହିଥାନ୍ତି । ପ୍ରତ୍ୟେକେ ପ୍ରତ୍ୟେକର ଉପକାରୀ, ହିତୈଷୀ । ସେତେବେଳେ ମଞ୍ଜୁଶ୍ରୀ ନିଦ୍ରାରେ ଅଚେତନ ଥାଏ ପ୍ରାୟତଃ ସବୁରି ମଧ୍ୟ ଭାଗରେ, କେନ୍ଦ୍ରସ୍ଥଳରେ । ଅନ୍ୟ ଆଠଜଣ ଅନଶନକାରୀଙ୍କ ଶରୀରର କୌଣସି ନା କୌଣସି ଅଙ୍ଗ ସ୍ପର୍ଶ କରିଥାଏ ତାର ଦେହକୁ । ସେ ଧୈର୍ଯ୍ୟ ହରାଏ ନାହିଁ, ମାନ ଅପମାନ ମୁଣ୍ଡରେ ପୂରାଏ ନାହିଁ । ପ୍ରତ୍ୟେକ ବନ୍ଧୁଙ୍କୁ ସେ ନିଜର ସଙ୍ଗସୁଖ ନିର୍ବିକାର ଭାବରେ ଦାନ କରିବାକୁ ଟିକେମାତ୍ର କୁଣ୍ଠିତା ନୁହେଁ । ଅଖିଆ ଅପିଆ କଷ୍ଟରେ ପଡ଼ିଥିବା ବେଳେ ପୁରୁଷ ଚରିତ୍ରର ଏହି ବିକଳ ପଣିଆକୁ ସେ ଉପଭୋଗ କରେ । ସେମାନଙ୍କ ମଧ୍ୟରେ ଠିକ୍ ପ୍ରଣୟୀ-ପ୍ରଣୟିନୀର ଭାବ ନ ଥାଏ । କେବଳ ଥାଏ ସ୍ୱଳ୍ପକାଳୀନ ବନ୍ଧୁତ୍ୱ ମଧ୍ୟରେ କଳ୍ପିତ ସାଂସ୍କୃତିକ ରୁଚିର ସମତା, ସାମାଜିକ ମୂଲ୍ୟବୋଧର ସମତା, ଆଉ ବ୍ୟଥା, ଆବେଗ ଓ ଅନୁଭୂତିର ସମତା । ଏ କ୍ଷେତ୍ରରେ ସେ କେଶବକୁ ସେପରି କିଛି ବିଶେଷ ସୁବିଧା ସୁଯୋଗ ଦେବାର ପ୍ରଶ୍ନ ଉଠେନାହିଁ । ତଥାପି ମଂଜୁଶ୍ରୀର ତାହା ଦେହକୁ ଲାଗି ବସିବାଟାକୁ କେଶବ ଅଗ୍ରାହ୍ୟ କରିପାରିଲା ନାହିଁ । ଯୌବନ ବଡ଼ ପ୍ରଲୋଭନର ସମୟ । କେତୋଟି ମୁହୂର୍ତ୍ତ ତାହା ଆଡ଼କୁ ନିସ୍ପଲକ ଆଖିରେ ରହି ହାତକୁ ସିଗାରେଟ୍ ବଢ଼ାଇ ଦେଇ କହିଲା—"ମହିଳା ମାନେ ପ୍ରଥମେ ପ୍ରସାଦର ଅଧିକାରିଣୀ ।" ତାହାପରେ ଜଳାଇଲା ଦିଆସିଲି କାଠି ।

କାଲି ବଳମ୍ବ ନ କରି ମଞ୍ଜୁଶ୍ରୀ ସିଗାରେଟଟି ଓଠରେ ଯୁଷି ଧରି କହିଲା—"ଏଥର ମୋର ମୁଖାଗ୍ନି ଦେଇ ଦେ ଭାଇ—"

ସିଗାରେଟରେ ଅଗ୍ନି ସଯୋଗ କରୁ କରୁ ଫେଁ କରି ହସି ପକାଇଲା କେଶବ । ଆଉ ଟିପପଣୀ କାଟିଲା—"ମଣିଷ ହେଉଛି ଏକମାତ୍ର ଜୀବ, ଯିଏ ଦୁର୍ଦ୍ଦିନରେ ମୁଦ୍ଧା ହସିପାରେ, ହସାଇପାରେ, ଦୁର୍ବିପାକର ପରିମଣ୍ଡଳ ମଧ୍ୟରେ ନିର୍ଦ୍ଦିନ୍ତରେ ଧୂଆଁ ପିଇପାରେ, ପିଆଇପାରେ ମଧ୍ୟ ।"

ମୁହଁରେ କ୍ଷୀଣ ହାସ୍ୟରେଖା ଉକୁଟାଇ ସିଗାରେଟ୍ ଟାଣିଲା ମଂଜୁଶ୍ରୀ । ଏହି ପାଞ୍ଚଦିନ ଭିତରେ ଚେହେରା ତାର କଣ୍ଟା ହୋଇଗଲାଣି । ମୁଣ୍ଡବାଳ ଉଡ଼ୁଛି ଫୁରୁଫୁରୁ । ଖେଁ ଖେଁ କରି କାଶ ଉଠୁଥିଲେ ମୁଦ୍ଧା ଧୂଆଁ ଗିଳିବାରେ କାର୍ପଣ୍ୟ ନ ଥିଲା । ଧୂଆଁର ପ୍ରତିକ୍ରିୟା ମୁହଁ ଓ ଆଖିରେ ଉକୁଟି ଉଠିଲାଣି । ନିଚ୍ଛକ ମଜା ଲୁଟି ନେବାର ଲୋଭରେ ଏକ ପ୍ରକାର ନିଷିଦ୍ଧ ଆନନ୍ଦ ଉପଭୋଗର ଆଗ୍ରହରେ କେତେ ଯୋଡ଼ିକା ଶୋଷି ନେଲା ପରେ ଜଳନ୍ତା ସିଗାରେଟ୍‌କୁ ଗୁଞ୍ଜିଦେଲା କେଶବର ପ୍ରସାରିତ ଅଧର ଫାଙ୍କରେ । ସେ ଟାଣିଲା ଦୁଇଟାନ କଲା । ତାହାପରେ ସିଗାରେଟ୍‌ଟି ଗ୍ଲୁଲିଲା ଜଣକ ପାଖରୁ ଅନ୍ୟ ଜଣକ ପାଏ । ଧୂଆଁର ଉତ୍କଟ ଗନ୍ଧ ଖେଳି ବୁଲିଲା ବାୟୁ ମଣ୍ଡଳରେ ।...

ଏହା ମଧ୍ୟରେ ଦୁଇ ହାତରେ ଭରି ଦେଇ ଧୀରେ ଧୀରେ ମଂଜୁଶ୍ରୀ ଉଠିଠିଆ ହେଲା ତାର୍‌ପୋଲିନ୍ ଉପରେ । ଡବ ଡବ ଆଖିରେ ଗ୍ଲୁରିଆଡ଼କୁ ଗ୍ଲୁହିଁଲା, ଯିମିତି ଜଣେ ପ୍ରଚଣ୍ଡ ଶକ୍ତିମନ୍ତୀ ମହିଳା । ପୋର୍ଟିକୋ ଖୁଣ୍ଟକୁ ଆଉଜି କିଛି ସମୟ କିଛି ନ ଜାଣିଲା ଭଳି ଠିଆ ହେଲା । ପ୍ରାୟ ଟଳ ଟଳ ଅବସ୍ଥା, ମୁଣ୍ଡ ଭିତରଟା ଫାଙ୍କା ଫାଙ୍କା ମନେ ହେଉଛି । ସମଗ୍ର ଶରୀରଟା ଯେପରି ଶିମୁଳି ତୁଳା ଭଳି ହାଲୁକା ହାଲୁକା ଲାଗୁଛି । ଧୀରେ ଧୀରେ ଶକ୍ତି ସଂଚୟ କରି ପୋର୍ଟିକୋର ତଳକୁ ଓହ୍ଲାଇ ଉଦାସ ଭାବେ ପିଚୁ ରାସ୍ତାରେ ଗ୍ଲୁଲିବାକୁ ଆରମ୍ଭ କରିଦେଲା । ଘନୀଭୂତ ଅନ୍ଧକାର, କଷଟି ପଥର ଠାରୁ ଅଧିକ କଳା, ଅଧିକ ଗମ୍ଭୀର । ଗ୍ଲୁରିଆଡ଼ ନୀରବ, ନିର୍ଜନ । କୋଳାହଳହୀନ ପରିବେଶ ମଧ୍ୟରେ ମଂଜୁଶ୍ରୀକୁ ଦେଖି ଗୋଟାଏ ଦୁଇଟା ବୁଲାକୁକୁର ତା ପଛେ ପଛେ ଗୋଡ଼ାଇ ଅସ୍ୱାଭାବିକ ଚିତ୍କାର କରିବାକୁ ଲାଗିଲେ । ସେ ବିକଟରଡ଼ି ପ୍ରତି ତା'ର ଭ୍ରୂକ୍ଷେପ ନାହିଁ । ଚମକି ଗ୍ଲୁହିଁବାର ଅବକାଶ ନାହିଁ, ଥମକି ଠିଆ ହେବାର ଆଗ୍ରହ ନାହିଁ । ସେ କାହାକୁ କେୟାର କରେ ନାହିଁ, ତ୍ୟାଗ, ତିତିକ୍ଷା, କ୍ଷମା, ପ୍ରେମ, କର୍ମ, ବିଶ୍ୱାସ, ବିଭେଦ, ବିଦ୍ୱେଷ କୌଣସି ବିଷୟ ପ୍ରତି ଆଗ୍ରହ ନାହିଁ । ଏତିକି କେବଳ ତାର ମନେ ହେଉଛି ସେ ଜଣେ ନାରୀ ଓ ନାରୀତ୍ୱର ଅସଂପୂର୍ଣ୍ଣତା, ଅସହାୟତା, ବ୍ୟର୍ଥତା ଆଉ ବରଦାସ୍ତ କରି ପାରିବ ନାହିଁ । ଏକ ପ୍ରକାର ଅଲଭ୍ୟ ସୁଖର ମର୍ମାନ୍ତିକ ଜ୍ୱାଳା ତାର ଟିକି ପ୍ରତିଟିରେ ଯିମିତି ଘୋଡ଼ା ଛୁଟାଇ ଦେଇଛି ।

ଜୀବନକୁ ପରିପୂର୍ଣ୍ଣ ଭାବେ ଉପଭୋଗ ପାଇଁ, ତାର ସରସତା ବୁଝିବା ପାଇଁ, ସେ ଗ୍ରହଣ କରିଛି ଚରମ ଶପଥ । ତାର ରକ୍ତ ପ୍ରବାହରେ ଦହନର ସ୍ପର୍ଶ । ସବୁ ପ୍ରକାର ସମସ୍ୟା ମୁହଁରେ ଝାଡ଼ୁ ଚଳାଇ ଅଣନିଶ୍ୱାସୀ ହୋଇ ଆଗକୁ ମାଡ଼ି ଚାଲିଛି । ପରିଚିତ ପୃଥିବୀକୁ ଛାଡ଼ି ଝିମିତ ବୁଦ୍‌ବୁଦ୍‌ର ଆବରଣ ଭିତରେ ନିଜ ଅସ୍ତିତ୍ୱକୁ ରକ୍ଷା କରି ଏକ ଅନିର୍ଦ୍ଦିଷ୍ଟ ପୃଥିବୀ ଉପରେ ପାଦ ପକାଇଛି ।

କୁମାରୀ ମଞ୍ଜୁଶ୍ରୀର ବାପା ଯେ ତାହାକୁ ପ୍ରଥମଥର ପାଇଁ ଆଣି କଲେଜ ପରିବେଶ ସହିତ ପରିଚିତ କରାଇ ଦେଇ ଯାଇଥିଲେ ସେତିକି । ଆଉ କେବେହେଲେ ସେ ଏ ସ୍ଥାନ ମାଡ଼ି ନାହିଁ । ପ୍ରତି ବଡ଼ ଛୁଟିରେ ଝିଅ ତାର ନିୟମିତ ଘରକୁ ଯାଏ ଓ ଫେରି ଆସେ କଲେଜକୁ । ବିଗତ ତିନି ବର୍ଷ ମଧ୍ୟରେ ଏହାର କୌଣସି ବ୍ୟତିକ୍ରମ ଲକ୍ଷ୍ୟ କରାଯାଇ ନାହିଁ । ଯେତେବେଳେ କଲେଜର ଛାତ୍ରମାନେ ଶୃଙ୍ଖଳା ଭାଙ୍ଗିବାକୁ ଉପକ୍ରମ କଲେ, ଛାତ୍ର ସଂସଦର ସଭାପତି ଅନଶନ ଧର୍ମଘଟର ନୋଟିସ ଥାନା ଅଫିସର, ସ୍ଥାନୀୟ ଡାକ୍ତର, କଲେକ୍‌ଟର, ଡିରେକ୍ଟର ଅଧ୍ୟକ୍ଷଙ୍କୁ ଦେଲେ, ସେତେବେଳେ ପ୍ରତ୍ୟେକ ନିଜ ନିଜର ପ୍ରଶାସନିକ କର୍ତ୍ତବ୍ୟ ଦୃଷ୍ଟିରୁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ତତ୍‌କ୍ଷଣିକ ତତ୍‌ପରତା ଦେଖାଇଲେ । ଯେଉଁ ଛାତ୍ର ଛାତ୍ରୀମାନେ ଆମରଣ ଅନଶନରେ ଅଂଶ ଗ୍ରହଣ କରିଛନ୍ତି, ସେମାନଙ୍କର ନାମ ତାଲିକା ହାତରେ ପାଇବା ସଙ୍ଗେ ସଙ୍ଗେ ତାଙ୍କ ଅଭିଭାବକମାନଙ୍କୁ ରେଜେଷ୍ଟ୍ରି ଡାକ ଯୋଗେ ଅଧ୍ୟକ୍ଷଙ୍କ ପକ୍ଷରୁ ଜଣାଇ ଦିଆଯାଇଥିଲା, ନିଜ ନିଜ ପିଲାର ତତ୍ତ୍ୱ ନେବା ପାଇଁ । ମଂଜୁଶ୍ରୀର ବାପା ସେହି ଚିଠିର ଏକ କପି ପାଇଥିଲେ ସୁଦ୍ଧା ଆର୍ଥିକ ଅସ୍ୱଚ୍ଛଳତା ବଶତଃ ଉଚିତ ପଦକ୍ଷେପ ଗ୍ରହଣ କରିପାରି ନ ଥିଲେ । ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ କେବଳ ଯାହା ଝିଅ ନିକଟକୁ ବୁଝାଇ ସୁଝାଇ ଚିଠିଟିଏ ଦେଇଥିଲେ । ତାଙ୍କର ଅଲଣା ଉପଦେଶ ସୁଅ ମୁହଁରେ ପଥର ଟଣ୍ଡେ ଭଳି ଭାସି ଯାଇଥିଲା । ସେ ମଧ୍ୟ ମନେ ମନେ ସ୍ଥିର କରି ନେଇଥିଲା— 'ଆନ୍ଦୋଳନଟା ଅଧିକ ଦୂର ମାଡ଼ିବ ନାହିଁ, ଅନଶନ ଆରମ୍ଭ ପୂର୍ବରୁ ହୁଏତ ପିଲ୍‌ମାନଙ୍କର ଦାବୀ ପୂରଣ ପାଇଁ କିଛି ଗୋଟାଏ ବ୍ୟବସ୍ଥା ହୋଇ ସବୁ କଥାର ସମୟୋପଯୋଗୀ ସମାଧାନ ହୋଇଯିବ ।'

ଘଟଣାଚକ୍ରରେ ତାହା ହୋଇ ପାରି ନ ଥିଲା । ସ୍ୱାଧୀନ, ମର୍ଯ୍ୟାଦାବାନ ରାଜନୈତିକ କର୍ମୀମାନଙ୍କର ଗୂଢ଼ ମତଲବ ଓ ଭିତରେ ଭିତରେ ଷଡ ଘଟାଉଥିବା ପ୍ରଭାବଶାଳି ଅଧ୍ୟାପକ ଗଣଙ୍କର ସମ୍ମୋହନକାରୀ କୂଟବୁଦ୍ଧିର ପ୍ରଭାବରେ ନୂଆ ନୂଆ କର୍ମସୂଚୀ ଉପସ୍ଥାପନ କରି ଛାତ୍ର ସଂସଦର କର୍ମକର୍ତ୍ତାମାନେ ପାଞ୍ଚଦଫା ଦାବୀକୁ ଅତି ଦୃଢ଼ଭାବରେ ନେଇ ପହଞ୍ଚାଇ ଦେଇଥିଲେ ପଇଁତିରିଶ ଦଫାରେ । ସବୁ ପ୍ରକାର ଆଲୋଚନା ଓ ମିଳାମିଶା ପ୍ରସ୍ତାବ ଚାଲୁଥିବା ସତ୍ତ୍ୱେ ଉତ୍ତେଜନାପୂର୍ଣ୍ଣ ବାତାବରଣରେ କ୍ରମଶଃ ଆସ୍‌ଫାଳନ ମଧ୍ୟରେ ଅନଶନ ଆରମ୍ଭ ହୋଇ ଯାଇଥିଲା ଦମ୍ଭର ସହିତ । ସମ୍ବାଦପତ୍ର

ଗୁଡ଼ିକରେ ଅନଶନକାରୀ ମାନଙ୍କର ଫଟୋ ଓ ସଂକ୍ଷିପ୍ତ ପରିଚୟ ପର୍ଯ୍ୟନ୍ତ ପ୍ରକାଶ ପାଇ-ଥିଲା । ତାହାକୁ ଦେଖି ମଞ୍ଜୁଶ୍ରୀ ବାପାର ବ୍ୟାକୁଳତା ଓ ଉତ୍କଣ୍ଠା ବଢ଼ିଯାଇଥିଲା । ଟଙ୍କା କେତେଟା ଯୋଗାଡ଼ କରି ବସିଲା ସ୍ଥାନରୁ ସେ ଛୁଟି ଆସିଲା ଝିଅକୁ ବୋଧ ଶୋଧ କରି ଫେରାଇ ନେବାକୁ । ସେହି ଅନୁସାରେ ରାତି ଟ୍ରେନରୁ ଓହ୍ଲାଇ, ଷ୍ଟେସନର କୋଳାହଳପୂର୍ଣ୍ଣ ପରିବେଶକୁ ଅତିକ୍ରମ କରି ଏକମୁହାଁ ହୋଇ ଚାଲି ଚାଲି ଆସୁଥିଲା କଲେଜ ଆଡ଼କୁ । ହଠାତ୍ ଏକ ଅପ୍ରତ୍ୟାଶିତ ଘଟଣା ଘଟିଗଲା । ତାହା ଦେହ ସହିତ ଧକ୍କା ହୋଇଗଲା ଏକ ବ୍ରତଚାରିଣୀ ଭଳି ଦେଖାଯାଉଥିବା ନାରୀର ଶରୀର । ନିରନ୍ଧ୍ର ଅନ୍ଧକାର ଭିତରେବେଶ ପୋଷାକ, ଚାଲିଚଳନ, ଆଖିର ତାରକା ଓ ମୁହଁର ଅଭିବ୍ୟକ୍ତି ଯଥେଷ୍ଟ ଥିଲା ତାହା ପକ୍ଷରେ ବୁଝିବା ପାଇଁ ଯେ ସେ ଶରୀରଟି ଆଉ କେହି ନୁହେଁ, ମଞ୍ଜୁଶ୍ରୀ ବ୍ୟତୀତ । ଅସହାୟ କଣ୍ଠରେ ଚିତ୍କାର କରି ଉଠିଲା—"ମା' ମଞ୍ଜୁ, ........ରୁ ଏପରି···"

ରାତିର ସୀମାହୀନ ନୀରବତା ମଧ୍ୟରେ ଏହି ଆକୁଳ କଣ୍ଠସ୍ୱର ପ୍ରତିଧ୍ୱନି ସୃଷ୍ଟି କରି ପୁଣି ନୀରବ ହୋଇଗଲା । ଯେଉଁ ଅକଳ୍ପନୀୟ ଦୁର୍ଗତି ମଧ୍ୟରେ ଝିଅ ପଡ଼ିଛି, ସେଥିରୁ ଉଠାଇ ଆଣିବା ହିଁ ପ୍ରଥମ କର୍ତ୍ତବ୍ୟ । ତାହାପରେ ଯାଇଁ ବହିତ ପ୍ରତିବିଧାନ ସମ୍ବନ୍ଧରେ ଯଥାସମ୍ଭବ ଚିନ୍ତା କରାଯାଇପାରେ । ନିଜ ବାପାର ଚିନ୍ତାକ୍ଲିଷ୍ଟ-ବିପନ୍ନ ମୁହଁ ଉପରେ ଆଖି ପଡ଼ୁ ପଡ଼ୁ ମଞ୍ଜୁଶ୍ରୀକୁ ଲାଗିଲା; ସେ କୁଆଡ଼େ ଯାଉଛି ଓ କାହିଁକି ଯାଉଛି ବୋଲି । ଦମ୍ଭ ଭାଙ୍ଗିଗଲା, ଅନ୍ତର ଭିତରଟା ମନ୍ଥି ହୋଇଗଲା, ତାହା ଭିତରେ ପରିବର୍ତ୍ତନ ଘଟିଗଲା । ସେ ତତ୍‌କ୍ଷଣାତ୍ ଭାରସାମ୍ୟ ହରାଇବା ପୂର୍ବରୁ ତାର ବାପାକୁ କୁଣ୍ଢାଇ ପକାଇଲା । କହିଁ କହିଁ କାନ୍ଦି ଭିଜାଇ ଦେଲା ବାପାର ଛାତି । ଏକ ପ୍ରକାର ରହସ୍ୟଭେଦ କରିବାର ପ୍ରଚ୍ଛନ୍ନ ଅସ୍ଥିରତା ଓ ଦୁର୍ବାର ଆକାଙ୍‌କ୍ଷା ମଧ୍ୟରୁ ସେ ହଠାତ୍ ଆସି ପହଞ୍ଚିଲା ଏପରି କ୍ଷେତ୍ରରେ, ଯେଉଁଠାରେ କୌଣସି ପ୍ରକାର ଆବେଗ, ଅନୁଭୂତି ଓ ତୀବ୍ର ଇଚ୍ଛାର ସ୍ଥାନ ନାହିଁ । ସାମାଜିକ ଦାୟିତ୍ୱ ଓ କର୍ତ୍ତବ୍ୟ ପାଳନ କେତେ ଦୂର ବାଧ୍ୟବାଧିତ ହୋଇଛି, ତାର କଳନା କଲାବେଳକୁ ଛାତି ଭିତରଟା ଥରି ଉଠିଲା ଆତଙ୍କରେ । ଏହି ଅସହାୟତାକୁ ହିଁ କୁହାଯାଇପାରେ ସମୁଚିତ ପରିସ୍ଥିତିରେ ପିତା ଓ ପୁତ୍ରୀ ପାଇଁ ମଣିକାଞ୍ଚନ ଯୋଗ ।

ମଞ୍ଜୁଶ୍ରୀର ବାପା ପରିସ୍ଥିତିର ଅଲଙ୍ଘନୀୟ ପରିଣତିର ସ୍ୱରୂପ ସମ୍ବନ୍ଧରେ କଳନା କରି ଅନୁଶୋଚନାରେ ଦଗ୍‌ଧ ହେବାକୁ ଲାଗିଲା । ସାଙ୍ଗରେ ଝିଅକୁ ଧରି ସେଠା-ଠାରୁ ଫେରିଗଲା ଷ୍ଟେସନକୁ । କଲେଜକୁ ଆସି ଅଧକ୍ଷଙ୍କୁ ମୁହଁ ଦେଖାଇଲା ଭଳି ମନୋ-ଭାବ ନ ଥିଲା ତାହାର । ସଙ୍ଗେ ସଙ୍ଗେ ଯେଉଁ ଗାଡ଼ି ପାଇଲା ସେଥିରେ ବାହୁଡ଼ିଗଲା ଘରକୁ ।

ଘଡ ପାହିଲା ବେଳକୁ ବିସ୍ଫୋରଣ । ଚହଲ ପଡ଼ିଗଲା ମଞ୍ଜୁଶ୍ରୀର ଅନ୍ତର୍ଦ୍ଧାନ ନେଇ । ଏହା ସଙ୍ଗେ ସଙ୍ଗେ ସୃଷ୍ଟି ହେଲା ଏକ ପ୍ରକାର ଜଟିଳ, ଦୁର୍ଭାଗ୍ୟଜନକ ପରିସ୍ଥିତି ।

ନାମାବଳୀ ଗୁଡ଼ାଥିବା ଗୈରିକ କପଡ଼ାରୁ ମୁଣ୍ଡରେ ଗୁଡ଼ାଇ ଗୁଡ଼ାଇ ଘଣ୍ଟାଘଣ୍ଟା ଲୁଚିଥିବା କେଶକ ଯେ ଫେରାଇ ଦେଲେ ଯେ ମଧ୍ୟରାତ୍ରିରେ ମଞ୍ଜୁଶ୍ରୀ ପ୍ରାକୃତିକ ତାଡ଼ନାରେ ବାହାରକୁ ଯାଇଥିଲା, ହୁଏତ ଆଉ ଫେରିନାହିଁ । ଛାତ୍ର ସଂସଦ ପକ୍ଷରୁ ଦାବୀ ହେଲା, ଗୁଣ୍ଡା ଲଗାଇ ଅଧ୍ୟକ୍ଷ ତାହାକୁ ହରଣଚାଲ କରାଇଛନ୍ତି । ସରକାରଙ୍କ ତରଫରୁ ଚାପ ପଡ଼ିଲା, ଛାତ୍ର ସଂସଦର ସଭାପତି ଏହି ଅଘଟଣ ପାଇଁ ଦାୟୀ । ବିନା ମନ୍ତ୍ର ନ ଜାଣି ସାପ ଗାତରେ ହାତ ପୂରାଇ ଦେବା ତାଙ୍କର ଉଚିତ ହୋଇନାହିଁ । ପୁଲିସ ବିଭାଗର ଉଚ୍ଚକର୍ତ୍ତା ସମୂହ ଫଟକ ନିରାକରଣ ପାଇଁ ପ୍ରଥମେ ଡିଉଟିରେ ଥିବା ଲାଠିଧାରୀ କନେଷ୍ଟବଳ ଦୁଇଜଣଙ୍କୁ ନିର୍ମମ ଭାବେ ସସ୍‌ପେଣ୍ଡ କରି ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଅନୁସନ୍ଧାନ କାର୍ଯ୍ୟର ନିର୍ଦ୍ଦିଷ୍ଟ ଗୋପନୀୟତା ରକ୍ଷା କଲେ । ବିରୋଧୀ ଦଳର ନେତା ଖବର କାଗଜ ପୃଷ୍ଠାରେ ବିବୃତ୍ତି ଦେଇ କହିଲେ, "ଏହା ଅପାରଗ ସରକାରଙ୍କର ଗୁରୁତର ତ୍ରୁଟିର ଦୃଷ୍ଟାନ୍ତ । ନାରୀହନ୍ତା ସରକାର ତୁରନ୍ତ ଇସ୍ତଫା ଦିଅନ୍ତୁ ।"

ଯେଉଁ ଅନଶନର ପ୍ରତ୍ୟାହାର ପାଇଁ ସମସ୍ତେ ଉଦ୍‌ବେଗ ପ୍ରକାଶ କରୁଥିଲେ, ଉଦ୍‌ଗ୍ରୀବ ହୋଇ ଅନାଇ ରହିଥିଲେ; ସେହି ଘଡ଼ି ସନ୍ଧି କାଳରେ କୁମାରୀ ମଞ୍ଜୁଶ୍ରୀର ଗୃହାନ୍ତକର ଅନୁପସ୍ଥିତିରେ ବୃହତ୍ତର ସମସ୍ୟାର ମେରୁଦଣ୍ଡ ଦୋହଲିଗଲା । ଛାତ୍ର ସଂସଦର ସଭାପତି ପରିବର୍ତ୍ତିତ ପରିସ୍ଥିତିରେ ଛାତ୍ରମାନଙ୍କ ମନରେ ଅଧିକ ଆସ୍ଥା ଓ ନିରାପଦ ଭାବ ସୃଷ୍ଟି କରିବା ପାଇଁ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ଅନଶନକୁ ବିନାସର୍ତ୍ତରେ ସ୍ଥଗିତ ରଖିଲେ । ଛାତ୍ରସମାଜକୁ ଏକଜୁଟ କରି ରଖିବାର ପ୍ରସ୍ତାବ କଷ୍ଟକର ମନେ ହେଲା । ବରଂ ପରିସ୍ଥିତି କ୍ରୋଧ ଓ ପ୍ରତିବେଦନାର ଅଭାବ ହିଁ ବିଦ୍ୱେଷ ବୃଦ୍ଧିର ସୂଚନା ଦେଲା । ଛାତ୍ର ଆନ୍ଦୋଳନ ସେତେ ଦୂର ବିକୃତ ଓ ବ୍ୟର୍ଥ ହେବା କଥା, ତାହା ଅବଲୀଳା କ୍ରମେ ଘଟିଗଲା । ସୁଅ ମୁହଁରେ ପଡ଼ିଲ ଖଣ୍ଡେ ଭଳି ଭାସିଯିବାକୁ ଲାଗିଲା ଅହଂକାର ଓ ଆସ୍ଫାଳନର ଆୟୋଜନ ।

ଯେତେବେଳେ କୃଷ୍ଣକାନ୍ତ କଲେଜ ଠିକଣାରେ ମଞ୍ଜୁଶ୍ରୀର ପରୀକ୍ଷାଫିସ୍ ଆଦି ନିଜ ଘରଠାରୁ ଟେଲିଗ୍ରାମ ମନିଅର୍ଡ଼ର ଯୋଗେ ଆସି ପହଞ୍ଚିଲା, ସେତେବେଳେ ଅଧ୍ୟକ୍ଷ ମହାଶୟ ବିରାଟ ସ୍ୱସ୍ତିରେ ନିଃଶ୍ୱାସ ଛାଡ଼ିଲେ । ସମସ୍ତେ ଆଶ୍ୱସ୍ତ ହେଲେ ଯେ ସଦ୍‌ଭାବ ଓ ଶାନ୍ତିର ବାତାବରଣ ଅନୁକୂଳ ବୋଲି । ମଞ୍ଜୁଶ୍ରୀ ନିଜ ଘରେ ନିରାପଦରେ ପହଞ୍ଚି ପାରିଛି ବୋଲି କେବଳ ହୃଦ୍‌ବୋଧ ହେଉନାହିଁ, ଯେହି ଅନୁସାରେ ସରକାରୀ କାଗଜ-ପତ୍ରକୁ ମଧ୍ୟ ଦୋରସ୍ତ କରାଗଲା । ଉଦ୍ଭାସିତ ଅଜ୍ଞତା ପ୍ରସୂତ ସମସ୍ୟାବଳୀର ଆଶୁ ସମାଧାନ କେଉଁ ଛଟକରେ ଘଟିଗଲା, କେହି ଜାଣି ପାରଲେ ନାହିଁ ।

('ସମାବେଶ' ଜୁଲାଇ, ୧୯୯୦ ସଂଖ୍ୟାରେ ପ୍ରକାଶ ପାଇଛି)

●